# ଅଗ୍ନିପରୀକ୍ଷା

## ଆଶାପୂର୍ଣ୍ଣା ଦେବୀ



ଭାଷାନ୍ତର: ରଘୁନାଥ ମହାପାତ୍ର

# ଅଗ୍ନିପରୀକ୍ଷା

ମୂଳ ବଙ୍ଗଳା:

ଆଶାପୂର୍ଣ୍ଣା ଦେବୀ



ଓଡ଼ିଆ ରୂପାୟନ:

ରଘୁନାଥ ମହାପାତ୍ର



# ଅଗ୍ନିପରୀକ୍ଷା

□ ଉପନ୍ୟାସ □

ପ୍ରକାଶକ :
କାହାଣୀ ପ୍ରକାଶନୀ
କଲ୍ୟାଣୀନଗର □ କଟକ - ୧୩

❁

ପ୍ରଥମ ପ୍ରକାଶ :
ଶ୍ରୀପଞ୍ଚମୀ □ ୧୯୯୫

❁

ପ୍ରଚ୍ଛଦପଟ :
ଅସିତ ମୁଖାର୍ଜୀ

❁

ମୁଦ୍ରଣ :



କଲ୍ୟାଣୀ ନଗର □ କଟକ - ୧୩

❁

ମୂଲ୍ୟ :
ଟ ୫୦.୦୦
[ପଚାଶ ଟଙ୍କା ମାତ୍ର]

**AGNIPARIKSHA**
By
**Ashapurna Devi**
Translated by
**Raghunath Mohapatra**

❁

Published by :
**Kahani Prakashani**
Kalyani Nagar,
Cuttack - 753013

❁

**First Edition : 1995**

❁

Price : **Rs 50/-**
[Rupees Fifty only]



ଭାରତୀୟ ସାହିତ୍ୟର ଅନବଦ୍ୟ ଆଶାବରୀ: ଆଶାପୂର୍ଣ୍ଣା ଦେବୀ



ଅବିଶ୍ୱାସ୍ୟ ଏବଂ ଅଦ୍ଭୁତ ହେଲେ ମଧ ଘଟଣାଟା ଘଟିଗଲା ।

ହେମପ୍ରଭା ମଧ ଏତେଟା କଳ୍ପନା କରି ନଥିଲେ । କିନ୍ତୁ ଘଟିଲା, ସାହୀର ଗୃହିଣୀମାନେ  କହିବାକୁ ଲାଗିଲେ– 'ଭଗବାନଙ୍କ ଖେଳ', ଭବିତବ୍ୟ । ଭଟ୍ଟାଚାର୍ଯ୍ୟ ମହାଶୟ ଭିତ ଓ ଚକିତ ହେମପ୍ରଭାକୁ ଆଶ୍ୱସନା ଓ ଅଭୟ ଦେଇ କହିଲେ– ବିଧାତାର ନିର୍ଦ୍ଦିଷ୍ଟ ବିଧାନ ! ଆମେ ସବୁତ ନିମିତ୍ତ ମାତ୍ର ମା' !

କିନ୍ତୁ ଏତେ ସବୁ ସରଳ ତତ୍ତ୍ୱ-କଥାର ଭରସା ସତ୍ତ୍ୱେ ମଧ ହେମପ୍ରଭା କୌଣସି ଭରସା ଖୋଜି ପାଉନଥିଲେ । କୋଉ ମୁହଁରେ ପୁଅକୁ ଯାଇ ମୁହଁ ଦେଖାଇବେ । କେବଳ କ'ଣ ପୁଅ ? ତାର ଉପରବାଲା । ମନୀନ୍ଦ୍ର ଯଦିବା ମା'କୁ କେବେ କ୍ଷମା କରିପାରେ କିନ୍ତୁ ଚିତ୍ରଲେଖାତ ଶାଶୁକୁ କେବେ କ୍ଷମା ଦେବନାହିଁ ।

ମୂଳକଥାଟା ଏହିପରି–

ପୁଅ ବୋହୂ ନାତିନାତୁଣୀଙ୍କୁ ସାଙ୍ଗରେ ଧରି ଥରେ ଗାଆଁର ଜମିଦାରୀକୁ ଯିବାକୁ ହେମପ୍ରଭାଙ୍କର ବହୁଦିନର ଇଚ୍ଛା । ସାହେବ ପୁଅର କେବେବା ଯଦି ଇଚ୍ଛା ହୁଏ– ଫୁରୁସତ କିନ୍ତୁ ହୁଏନାହିଁ । ସାହେବ ସ୍ୱାମୀର ଯୋଗ୍ୟା ସହଧର୍ମିଣୀ ଚିତ୍ରଲେଖାର ଇଚ୍ଛା-ଫୁରୁସତ କେଉଁଟା ବି କେବେ ହୁଏନାହିଁ । ବର୍ଷପରେ ବର୍ଷ ଅତିକ୍ରାନ୍ତ ହୁଏ । ମନୀନ୍ଦ୍ର ପୂଜାଛୁଟିରେ ପଶ୍ଚିମକୁ, ଗ୍ରୀଷ୍ମଛୁଟିରେ ଉତ୍ତରକୁ ବୁଲିବାକୁ ଚାଲିଯାଏ । ହେମପ୍ରଭାଙ୍କ ପ୍ରସ୍ତାବଟା ମୁଲତବୀ ରହିଯାଏ ।

ଅସଲ କଥା ହେଲା– ବିଷୟ ସଂପତ୍ତି ବା ଜମିଦାରୀ ନାମକ ବସ୍ତୁଟା ଉପରେ କେମିତି ଏକ ବିଦ୍ୱେଷ ଭାବଥିଲା ମନୀନ୍ଦ୍ରର । ଦେଖାଶୁଣା କରିବାତ ଦୂରରକଥା ମା'ର ଖାତିରରେ ଅନ୍ତତଃ ଥରୁଟିଏ ବୁଲି ଆସିବାକୁ ରୁଚି ହୁଏନାହିଁ । ଗୁରୁଜନମାନଙ୍କ ସମ୍ବନ୍ଧରେ ଏତିକି କୁହାଯାଇପାରେ ମନୀନ୍ଦ୍ରର ସ୍ତ୍ରୈଣପିତା ଯେ କି ସମସ୍ତ ସମ୍ପତ୍ତିବାଡି ସ୍ତ୍ରୀ ନାମରେ ଉତ୍ସର୍ଗ କରିଦେଇ, ମନୀନ୍ଦ୍ରକୁ ମା'ର ମୁଖାପେକ୍ଷୀ କରିଦେଇ ଯାଇଛନ୍ତି । ଏହି ଅନ୍ୟାୟ

କଥାଟାକୁ ମନୀନ୍ଦ୍ର କୌଣସି ପ୍ରକାରେ ବରଦାସ୍ତ କରିପାରେ ନାହିଁ । ନିଜର ସମସ୍ତ ଆୟଟା ଘର ଚଳେଇବାରେ ଖର୍ଚ୍ଚହୋଇ ଯାଉଥିଲେ ମଧ ଜମିଦାରୀରୁ ଆଣିବାକୁ ସେ ଇଛା କରେନାହିଁ ।

ବାପାଙ୍କ ଜମିଦାରୀରୁ ଟଙ୍କା ଆଣିବାକୁ ଗଲେ ମା'ଙ୍କର ଦସ୍ତଖତ ନେବାଛଡ଼ା ଉପାୟ ନାହିଁ । ଏକଥାଟା କେବଳ ବୀରକ୍ତିକର ନୁହେଁ ଅପମାନ ଜନକ ମଧ ।

ଅବଶ୍ୟ ବାପାଙ୍କର ସମ୍ପତ୍ତିବାଡ଼ି ନଥିଲେ ଯେ ମନୀନ୍ଦ୍ରର ଚଳିବା ଅସୁବିଧା ହୁଅନ୍ତା ଏକଥା ନୁହେଁ, ନିଜ ଉପାର୍ଜନରେ ବେଶ୍ ଉଦ୍ରଭାବରେ ଚଳିଯାଏ; କିନ୍ତୁ ହେମପ୍ରଭାଙ୍କର ସଂସାରରେ ଅଛି ଆଉ କିଏ ? 'ମା'ର ଟଙ୍କା ଆଣିବି ନାହିଁ' ଏକଥାଟା କହିଲେ ଖୁବ୍ ଝଗଡାଝାଣ୍ଟି ହେବ । ସେହି କାରଣରୁ ଜୀବନ ଯାତ୍ରାର ମାନଦଣ୍ଡ କେବଳ ଭଦ୍ରଭାବେ ନହୋଇ ଅନେକ ଉର୍ଦ୍ଧ୍ୱକୁ ଉଠିଯାଇଛି ।

ବିଳାସ କରିବାର ତ କୌଣସି ସୀମାରେଖା ନାହିଁ । ତାଛଡ଼ା ଚିତ୍ରଲେଖା ଯାହା କହେ ସେଟା ତ ମିଛ ନୁହେଁ । ଜମିଦାରୀଟା ମନୀନ୍ଦ୍ର ବାପାଙ୍କର, ସେଥିରେ କୌଣସି ଭୁଲ୍‌ଭ୍ରାନ୍ତି ନାହିଁ । ଟଙ୍କା ଖର୍ଚ୍ଚ କରିବାକୁ ବିବେକକୁ ବାଧିବ କାହିଁକି ? କିନ୍ତୁ ଜମିଦାରୀର ତଦାରକ-ତଲ୍ଲାସ କରିବାକୁ ରୁଚିକୁ ବାଧେ ।

ବର୍ଷରେ ତିନିଥର ହେମପ୍ରଭା ଜମିଦାରୀକୁ ଦୌଡନ୍ତି । ସବୁବେଳ ପାଇଁ ସେ ଗାଆଁଘରେ ରହିପାରନ୍ତି ନାହିଁ । ସେଟା କେବଳ ନାତିନାତୁଣୀଙ୍କ ମମତା ଯୋଗୁ ନୁହେଁ, ମ୍ୟାଲେରିଆ ଦେବୀଙ୍କ ନିର୍ମମତା ପାଇଁ । ଯାଇ ହେଉ ଏଥର ଗ୍ରୀଷ୍ମଛୁଟିରେ ଅନେକ ଦିନର ଆଶ ମେଣ୍ଟିଲା ହେମପ୍ରଭାଙ୍କର । ଚିତ୍ରଲେଖାର ପୁଅ ଝିଅମାନେ ଜିଦ୍ ଧରିଲେ ।

ଗ୍ରୀଷ୍ମଛୁଟି ହେବା ପୂର୍ବରୁ ସେମାନେ ଉଚ୍ଚକଣ୍ଠରେ କହିବୁଲିଲେ ଆମେ ଏଥର ଗାଆଁକୁ ଯିବୁ । ଚିତ୍ରଲେଖା ବୀରକ୍ତ ହୋଇ କହେ ସେ କଥା ହୋଇ ପାରିବ ନାହିଁ । ଏଇ ଯେଉଁ ପ୍ରଚଣ୍ଡ ଗରମ ହେଉଛି ସେଥିରେ ଗାଁ କୁ ଯାଇ ମରିବ ନା କ'ଣ ?

ଯଦିଓ ଝିଅ ତାପସୀ ବଡ଼ କିନ୍ତୁ ଯୁକ୍ତି କରିବାର ଧୁରନ୍ଧର ପୁଅ ଅମିତାଭ । ସେ ବୟସ୍କ ଲୋକଙ୍କ ପରି ବିଜ୍ଞଭାବ ଦେଖେଇ ପ୍ରଶ୍ନକରେ ଗାଆଁକୁ ଗଲେ ମରିବୁ ଏହାର ମାନେ କ'ଣ ? ନାନୀ ଯେ ପ୍ରତିବର୍ଷ ଯାଆନ୍ତି ସେ ତ କାହିଁ ମରନ୍ତି ନାହିଁ ?

ଠାକୁମା' ଶବ୍ଦଟା ନିହାତି ପୁରୁଣାକାଳିଆ ବୋଲି ଚିତ୍ରଲେଖା ନାନୀ ଶବ୍ଦଟା ଆବିଷ୍କାର କରିଥିଲା । ପୁଅର ଏହି ଡମ୍ଫାମିକଥାରେ ଜଳି ଉଠି ଚିତ୍ରଲେଖା କହେ ତାଙ୍କ ଦେହରେ ଯା ସହିବ ତୁମ ଦେହରେ ତା ସହିବ ? ସେ ଯେ ଏ ଗରମରେ ଯାଇ କେତେ ଆମ୍ବ ପଣସ ଖାଇ ହଜମ କରିବେ ତୁମେ ହଜମ କରି ପାରିବ ?

'କରିପାରିବୁ' - ବୋଲି ଉତ୍ସାହ ସହକାରେ କହେ ଅମିତାଭ ତଳ ଭାଇ ସିଦ୍ଧାର୍ଥ । ଆମ୍ବ ଖାଇବାକୁ ତ ଆମେ ଯିବୁ । ନାନୀ କହୁଥିଲେ ଆମର ବଗିଚା ଅଛି, ସେଠି ଅନେକ ଗଛ । ଜେଜେ ମାନେ ବାପାଙ୍କର ବାପା ନିଜହାତରେ ଗାତ ଖୋଳି ଆମ୍ବଗଛ ପୋତିଥିଲେ ତାକୁ ଦେଖିବୁ ନାହିଁ । ବାଃ !

ଚିତ୍ରଲେଖାର ବୁଝିବାକୁ ବାକି ରହିଲା ନାହିଁ ଯେ ହେମପ୍ରଭା ଏଥର ଚାଲାଖି କରିଛନ୍ତି । ଏଇସବୁ ସରଳମତି ବାଳକ ବାଳିକା ଯେ ଜେଜେମାର କୁ–ମନ୍ତ୍ରଣାରେ ବିପଥଗାମୀ ହେବାକୁ ବସିଛନ୍ତି ଏକଥାରେ ତିଳେ ମାତ୍ର ସନ୍ଦେହ ନାହିଁ ।

ରାଗରେ ସର୍ବାଙ୍ଗ ଜ୍ୱାଳା କଲା ଚିତ୍ରଲେଖାର । ସେ ଚଢ଼ାଗଳାରେ କହିଲା ମୁଁ କହିଦେଉଛି ଏବେ ସେଠାକୁ ଯିବା ହେବନାହିଁ । କୌଣସି ପ୍ରକାରେ ନୁହେଁ । ବାସ୍- ଏ ବିଷୟରେ ଆଉ କୌଣସି ଦିନ ଯେପରି ଆଲୋଚନା ନ ହୁଏ ।

ଏଥର ତାପସୀ କାନ୍ଦଣାର ରାହାଧରେ କହେ ବାଃହାରେ ଆମେ ଯିବା ପାଇଁ ସବୁ ଠିକ୍ ଠାକ୍ କରି ସାରିଛୁ । ସବୁ ଠିକ୍ ଠାକ୍ ସାରିଛ ? ଚମତ୍କାର ? କିନ୍ତୁ ମୁଁ ଜାଣିବାକୁ ଚାହେଁ ଏ ଘରର ମୁରବୀ କିଏ ? ତୁମେ ସବୁ ନାଁ ମୁଁ ?

ତାପସୀ ଭୟପାଇ ଚୁପ୍ ହୋଇଯାଏ କିନ୍ତୁ ଅମିତାଭ ଚଟାପଟ୍ ଉତ୍ତର ଦିଏ- ତାହେଲେ ବୋଧହୁଏ ଆମ ଇଚ୍ଛାରେ ଆମେ କିଛି କରିପାରିବୁ ନାହିଁ । ଗାଁ ଗଣ୍ଡା ଆମେ ଦେଖିବୁ ନାହିଁ ଜାଣିବୁ ନାହିଁ ?

କାହିଁକି କ'ଣ ଗାଁ ଗଣ୍ଡା ଚିହ୍ନିଲେ ଏମିତି ସ୍ୱର୍ଗକୁ ସିଢ଼ି ଲାଗିବ ଶୁଣେ ?

ସ୍ୱର୍ଗକୁ ସିଢ଼ି ପୁଣି କ'ଣ ? ନାନୀତ ବୁଢ଼ୀ ହେଲେଣି ଯାଉ ନାହାନ୍ତି ? ଆମକୁ ତ ପୁଣି ଖଜଣା ଫଜଣା ଆଦାୟ କରିବାକୁ ପଡ଼ିବ ? ପ୍ରଜାମାନେ ଆମକୁ ବାବୁ ମହାଶୟ ବୋଲିତ ଡାକିବେ ସେତେବେଳେ କ'ଣ ହେବ ।

ରାଗରେ ଚିତ୍ରଲେଖା ପାଟିରୁ ଆଉ କଥା ବାହାରେ ନାହିଁ । ଶାଶୁଙ୍କର କୁଟୀଳ ଚାଲବାଜି ଦେଖି ସ୍ତବ୍ଧ ହୋଇଯାଏ ବିଚରା । ଏମିତି ତା'ର ସନ୍ଦେହ ସବୁବେଳେ ଯେ ଶାଶୁ ତା'ର ଛୁଆମାନଙ୍କୁ ପର କରି ଦେଉଛନ୍ତି । ଆଧୁନିକ ରଙ୍ଗୀନ ଖୋଳପା ଖୋଲିଯାଇ ଈର୍ଷାର ଚେହେରାଟା ଅନେକ ସମୟରେ ଧରାପଡ଼େ । କିନ୍ତୁ ଏଥର ହେମପ୍ରଭା ଚିତ୍ରଲେଖାର କଳ୍ପନାର ଉର୍ଦ୍ଧ୍ୱକୁ ଉଠିଯାଇଛନ୍ତି । ପିଲାମାନଙ୍କର ମନ ଭୁଲେଇବା ପାଇଁ ଆଉରି କ'ଣ କ'ଣ ଲୋଭନୀୟ ଦୃଶ୍ୟର ଅବତାରଣା କରିଛନ୍ତି ସେ କଥା ଶୁଣିବାକୁ ଧୈର୍ଯ୍ୟ ତାର ନାହିଁ ।

ସ୍ୱାମୀନାମକ ପୋଷାପ୍ରାଣୀଟି ଉଦ୍ଦେଶ୍ୟରେ ବୀରଦର୍ପରେ ଧାବିତ ହୁଏ ଚିତ୍ରଲେଖା । ଯଦିଓ ମନୀନ୍ଦ୍ର ସବୁ ବିଷୟରେ ଚିତ୍ରଲେଖାର ଅନୁଗତ । ଧଳାକୁ କଳା କଳାକୁ ଧଳା କହିଲେ ମଧ ସେଥିରେ ମନୀନ୍ଦ୍ର ଆପତ୍ତି କରେ ନାହିଁ, ଚିତ୍ରଲେଖା

ସେଥିରେ ସନ୍ତୁଷ୍ଟ ରହିଲେ ହେଲା । କିନ୍ତୁ ଏ କ୍ଷେତ୍ରରେ ଏପରି ଗୋଟେ କଥା କହିବସିଲା ଯେଉଁଟା ସଂପୂର୍ଣ୍ଣ ବେସୁରା । କହିଲା ପିଲାମାନଙ୍କର ଯିବା ପାଇଁ ଯେବେ ଏତେ ଇଚ୍ଛା ହୋଇଛି ଯାଆନ୍ତୁ । ତିନିଟା ଯାକ ପୁଅଝିଅ ଯେ ଏଇ ଅଳ୍ପ ସମୟ ଆଗରୁ ତାକୁ ତୋଷାମଦକରି ସନ୍ତୁଷ୍ଟ କରିଛନ୍ତି ସେ କଥା ମନୀନ୍ଦ୍ର ଆଉ ପ୍ରକାଶ କଲାନାହିଁ ।

ଚିତ୍ରଲେଖା ଆଶ୍ଚର୍ଯ୍ୟ ହୋଇ କହିଲା— କ'ଣ କହିଲ ପିଲାମାନେ ଯାଆନ୍ତୁ ! ମୁଁ ଦେଖୁଛି ତୁମ ମୁଣ୍ଡ ଖରାପ ହୋଇଗଲାଣି ଚିକିତ୍ସା ହେବା ନିହାତି ଦରକାର । ଏଇ ଗରମରେ ସେମାନେ ଯିବେ ଗାଆଁରେ ସେହି ପଚା ପୋଖରୀ ପାଣିରେ ବୁଡ଼ିବା ପାଇଁ ।

ମନୀନ୍ଦ୍ର ହସିପକେଇ କହିଲା ପଚାପୋଖରୀରେ ସେମାନେ କାହିଁକି ଗାଧୋଇବେ ? ମା' ସେ କଥା କରିବାକୁ ଦେବେ କାହିଁକି ? ଗରମ ବୋଲି ଯାହା କହୁଛ ବଙ୍ଗଳା ଦେଶରେ ବହୁତ ପଲ୍ଲି ଗାଆଁ ପୁଣି ଅଛିତ !

ରୁହ ଖୁବହୋଇଛି ପଲ୍ଲିଗାଆଁର ସୌନ୍ଦର୍ଯ୍ୟ ବିଷୟରେ ତୁମେ ଆଉ ଓକିଲାତି କରିବା ଦରକାର ନାହିଁ । କିନ୍ତୁ ହଠାତ୍ ତମ ପୁଅ ଝିଅଙ୍କର ଏତେ ଗାଆଁ-ପ୍ରେମ ଯେ ଉଚ୍ଛୁଳି ଉଠିଲା କାହିଁକି ସେ ଖବର ରଖିଛ ?

ମନୀନ୍ଦ୍ର କଥାଟାକୁ ହାଲୁକା କରିଦେବା ଭଙ୍ଗୀରେ କହିଲା ପିଲାମାନେ କାରଣ ଅକାରଣରେ ମାଆ ଠାରୁ ନାନା ଗଳ୍ପ ଗାଆଁ ବିଷୟରେ ଶୁଣୁଛନ୍ତି ତ !

— ଥାଉ ଯଥେଷ୍ଟ ହୋଇଛି, ତୁମେ ଆଉ ଛୋଟ ପିଲା ହୁଅନାହିଁ । କିନ୍ତୁ ମୁଁ କହି ରଖୁଛି ମୋ ପୁଅ ଝିଅଙ୍କ କାନପାଖରେ ଦିନରାତି ଏହିସବୁ ବିଷ ମନ୍ତ୍ର ଫୁଙ୍କିବାକୁ ଦେବି ନାହିଁ । ପୁଅମାନେ ଆଜିକାଲି ମୋତେ ଯେ ଆଉ ମାନୁ ନାହାନ୍ତି ସେ କଥା ଜାଣତ !

— ଏଇଟା ଏଇ ବଂଶର ଧାରା, ବୁଝିଲ ? କହିଦେଇ ମନୀନ୍ଦ୍ର ହସିବାକୁ ଲାଗିଲା ।

ଏପରି ଇଙ୍ଗିତପୂର୍ଣ୍ଣ କଥାରେ କାହାରବା ଦେହ ନ ଜଳିବ !

ଚିତ୍ରଲେଖା ବୀରକ୍ତ ହୋଇ କହିଲା ତୁମ ବଂଶର ଧାରା ଶୁଣିବାକୁ ମତେ ସମୟ ନାହିଁ କିନ୍ତୁ ଜାଣିଥାଅ ପୁଅ ଝିଅଙ୍କର ଦେହ ପା କିଛି ହେଲେ ସେ ଦାୟିତ୍ୱ ତୁମର ଆଉ ତୁମ ଅପରିଣାମଦର୍ଶୀ ।

ମା'ର କିଛି ଦେହ ଖରାପ ହେବ କାହିଁକି ?

ନାଁ ଦେହ କାହିଁକି ଖରାପ ହେବ ? ଚିତ୍ରଲେଖା ମୁହଁରେ ବିଦ୍ରୁପ ହସ ଫୁଟେଇ କହିଲା- ତୋଟାର ଆମ୍ବ ଖାଇ ମୋଟା ସୋଟା ହୋଇ ଆସିବେ । ମନୀନ୍ଦ୍ର ହସି ହସି କହିଲା-ଛୁଆଦିନେ ମୁଁ ଖୁବ୍ ଆମ୍ବ ଖାଉଥିଲି, ତୁମେ ବୋଧହୁଏ ଏ ସବୁ ଗାଉଁଲି କଥାକୁ ପସନ୍ଦ କରନା, କିନ୍ତୁ ସତରେ ମୁଁ ସେତେବେଳେ ଖୁବ୍ ମୋଟା ହୋଇଯାଇଥିଲି ।

– ବେଶ୍ ତ ତୁମେ କାହିଁକି ବାକି ରହିବ ଏଭଳି ସୁବିଧା ସୁଯୋଗ ଯେଉଁଠି ରହିଛି ତୁମେ ବି ଚାଲିଯାଅ । ମୋତେ ମସୌରୀରେ ମୋ କକାଙ୍କ ପାଖକୁ ପଠେଇ ଦିଅ । ଟନିକ୍ ବଦଳରେ ଆମ୍ବ ଆଉ ପଣସ ମନ୍ଦ କ'ଣ ?

ମନୀନ୍ଦ୍ର ନିରୁତ୍ତାପ କଣ୍ଠରେ କହିଲା ଏଟା ତୁମର ରାଗର କଥା । କିନ୍ତୁ ସମସ୍ତେ ମିଶିକରି ଗାଆଁକୁ ଗଲେ କ'ଣ ମନ୍ଦ ହୁଅନ୍ତା ଚିତ୍ରା ?

ସତ କହିବାକୁ ଗଲେ ପୁଅ ଝିଅମାନଙ୍କର ଉତ୍ସାହର ଯେଉଁ ବତାସ ବୋହୁଥିଲା ସେହି ବତାସର ଗୋଟାଏ ମଧୁର ସ୍ୱର ମନର କେଉଁ କୋଣରେ ବାଜି ଉଠୁଥିଲା । ମାଆଙ୍କ ପାଇଁ ଟିକିଏ ସହାନୁଭୂତି । କିନ୍ତୁ ଚିତ୍ରଲେଖା କ'ଣ ଧାର୍ ଧାରେ ଏ ସୁରର ?

– ସମସ୍ତେ ମିଶି ମେଣ୍ଟାଲ ହସ୍‌ପିଟାଲ୍‌କୁ ଗଲେ ମନ୍ଦ ହୁଅନ୍ତା ନାହିଁ ? ଏତକ କହି ଚିତ୍ରଲେଖା ବିଦ୍ରୂପ ହସରେ ମୁହଁଟା ବୁଲେଇନେଇ ଉଠିଗଲା ।

ମନୀନ୍ଦ୍ର ନିଃସନ୍ଦେହ ହେଲେ । ମସୌରୀ ତାକୁ ଯିବାକୁ ପଡ଼ିବ । ଚିତ୍ରଲେଖାର ପୂଜନୀୟ କକାଙ୍କ ଆଶ୍ରୟ ନିକଟକୁ । କାରଣ ଚିତ୍ରଲେଖାର ବାପଘରେ ଏଇ କକାଙ୍କ ପାଖରେ ସମସ୍ତେ ନିଷ୍ପ୍ରଭ । ଜ୍ୟୋତି ଯଦି ବିକିରଣ କରିବାକୁ ହୁଏ ତାହେଲେ ଖୁଡ଼ୀଙ୍କ ଆଖିକୁ ଚାହିଁ ଏ ଜ୍ୟୋତି ବିକିରଣ ହେଲେ ତାହା ଚିତ୍ରଲେଖା ପାଇଁ ପରମ ସୁଖପ୍ରଦ ।

ପୁଅଝିଅମାନଙ୍କ ପାଇଁ ମନୀନ୍ଦ୍ରର ମନଟା କେମିତି କେମିତି ଲାଗେ । ପିଲାମାନେ ଯେ ଏତେ ଉତ୍ସାହରେ ଆଗେଇ ଯାଉଛନ୍ତି ସେଥିରେ କ'ଣ ସେ ପାଣି ଢ଼ାଳିଦେବ ? ତା ଛଡ଼ା ଛୁଟିରେ ବୁଲିବାକୁ ଯାଇ ସାନ କକାଙ୍କ ଘରେ ବନ୍ଦୀ ହୋଇ ରହିବାରେ କି ସୁଖ ?

ସେଥର ଦାର୍ଜିଲିଂ ଯାଇଥିଲେ, ଉଠିଲେ, ବସିଲେ, ଖାଇଲେ ସବୁ କଥାରେ ସାନକକା ଖୁଣ୍ଟା ଦେଉଥାନ୍ତି କାହିଁକିନା ପିଲାମାନେ ଘରର ଆଦର୍ଶ ଢଗି ଚଳୁ ନାହାନ୍ତି । ଖାଇ ଖାଇ ପିଲାଗୁଡ଼ା ଅଧାରୋଗା ହୋଇଗଲେଣି । ମାଆର ସେହି ଖୁଡୁତା ପୁଅଝିଅ ମାନଙ୍କ ପରି 'ସଭ୍ୟ' ହେବାର ଯୋଗ୍ୟତା ଏ ପିଲାମାନଙ୍କର କାହିଁ ? ଉପରର ଖୋଳପାଟା ଖୋଲିଦେଲେ ଅସଲ ଚେହେରାଟା ବାହାରି ପଡ଼େ । ସାନକକାଙ୍କ ଠାରୁ ହେମପ୍ରଭା ସଙ୍ଗେ ତାଙ୍କର ଅଧିକ ମେଳ ।

ଶାଶୁ ଉପରେ ଚିତ୍ରଲେଖାର ଏତେଟା ବିଷଦୃଷ୍ଟି ଭଲନୁହେଁ ।

ପୁଅ ଝିଅମାନଙ୍କୁ ମନ ମୁତାବକ ମଣିଷ କରିବାର ଯେଉଁ ଉଦ୍ଦେଶ୍ୟ ସେଟା ମେଣ୍ଟିଲା ନାହିଁ । କେବଳ ଏଇ ହେମପ୍ରଭାଙ୍କ ପାଇଁ । କୁ-ସଂସ୍କାର କୁଦୃଷ୍ଟାନ୍ତର ପାହାଡ଼ ହୋଇ ବସି ରହିଛନ୍ତି ଚିତ୍ରଲେଖାର ସ୍ୱଚ୍ଛନ୍ଦ ଜୀବନ ଯାତ୍ରାର ପଥ ଅବରୋଧ କରି । ହେମପ୍ରଭାଙ୍କର ସ୍ୱାସ୍ଥ୍ୟ ଏପରି ଅତୁଟ ଯେ ଦୂର ଭବିଷ୍ୟତରେ କୌଣସି ଅସୁବିଧା

ହେବ ବୋଲି ଜଣାପଡୁନାହିଁ ବରଂ ଚିତ୍ରଲେଖା ନିଜେ ମାସସାରା ଦୁଇବେଳା ଟନିକ୍ ନ ଖାଇଲେ ଚଳୁନାହିଁ ।

ଟଙ୍କା ପଇସା ଅଭାବର କାରଣଟା ନଥିଲେ ଜଣେ ବିଧବା ସ୍ତ୍ରୀ ପକ୍ଷରେ କାଶୀଠାରୁ ଆଉ ଉତ୍କୃଷ୍ଟ ସ୍ଥାନ କାହିଁ ? ଏ ସବୁ କଥା ମନେପଡ଼ିଲେ ସ୍ୱେଣ ଶଶୁର ଉପରେ ହିଁ ଚିତ୍ରଲେଖା ବିରକ୍ତ ହୁଏ ।

ଶେଷପର୍ଯ୍ୟନ୍ତ କିନ୍ତୁ ପୁଅ ଝିଅମାନଙ୍କର ଜିଦ୍ ବଜାୟ ରହିଲା । ଚିତ୍ରଲେଖା ମସୌରୀ ଚାଲିଗଲା, ବାଧ୍ୟହୋଇ ମନୀନ୍ଦ୍ରଙ୍କୁ ମଧ୍ୟ ସେଠାକୁ ଯିବାକୁ ପଡ଼ିଲା । ନ ଯାଇଥିଲେ ଯେ କ'ଣ ହୋଇଥା'ନ୍ତା ସେ କଥା ଭାବିବାର ସାହାସ ମଧ୍ୟ ମନୀନ୍ଦ୍ରର ନାହିଁ । କିନ୍ତୁ ମାଆ ଓ ପିଲାମାନଙ୍କୁ ପଠେଇବା ପାଇଁ ସେ ଦୁଇ ତିନିଦିନ ଅଟକିଗଲା ।

ଚିତ୍ରଲେଏଖାର ପୁଅ ଝିଅମାନେ ମାଆକୁ କେତେ ଭୟ କରନ୍ତି ଆଉ କେତେ ଭକ୍ତି କରନ୍ତି ସେକଥାଟା ବିଚାର କରିବା ସହଜ ନୁହେଁ, ତେବେ ଆପାତତଃ ଦେଖାଗଲା ଯେ ମାଆର ଅନୁପସ୍ଥିତିଟା ତାଙ୍କ ପକ୍ଷରେ ଉତ୍ସବ ପରି ।

ନିଜ ନିଜର ଟ୍ରଙ୍କ୍ ସୁଟ୍‌କେଶ ସଜାଡ଼ିବାରେଯେ ଏତେ ଆନନ୍ଦ ଅଛି ଏତେ ଆମୋଦ ଅଛି ଏକଥା କ'ଣ ତାଙ୍କୁ ଆଗରୁ ଜଣାଥିଲା ? ଚିତ୍ରଲେଖା ଏତେ ରାଗିନଥିଲେ ହୁଏତ ଏ ଦିଗଟା ସେ ତଦାରଖ କରି ଯାଇଥା'ନ୍ତା । କିନ୍ତୁ ରାଗ ଅଭିମାନର ନିଆଁ ଜଳିଲାପରି ଗୋଟାଏ ବାହ୍ୟ ପ୍ରକାଶ ପୁଣି ଅଛି ତ !

ତାପସୀ ବଡ଼ । ତେଣୁ ମ୍ୟାନେଜମେଣ୍ଟର ଦାୟିତ୍ୱଟା ତା'ର । ସେ ଭାଇମାନଙ୍କ ପୋଷାକ ପରିଚ୍ଛଦର ବହୁବିଧ ବ୍ୟବସ୍ଥା ଏବଂ ଅନେକ ଉପଦେଶ ବର୍ଷଣ କରିବା ପରେ ବାପାଙ୍କ ନିକଟକୁ ଆସି ଗୋଟାଏ ଅଦ୍ଭୁତ ନିବେଦନ କରିବସିଲା ।

ମନୀନ୍ଦ୍ରଙ୍କ ବାପାଙ୍କ ଅମଳରେ ଗୋଟାଏ ସିନ୍ଦୁକ - ଯେଉଁଟା ଜାତିଚ୍ୟୁତ ହୋଇ ଭଣ୍ଡାର ଘରେ ପଡ଼ିଛି । ସେହି ସିନ୍ଦୁକର ଚାବିଟା ଦରକାର ତାପସୀର ।

ମନୀନ୍ଦ୍ର ଅବାକ୍ ହୋଇ କହିଲେ କାହିଁକି ସେ ସିନ୍ଦୁକ ଚାବି ନେଇ କ'ଣ କରିବୁ ? ଚାଉଳ, ଡାଲି ସେଠି ଲୁଚେଇ ରଖିବୁନା କ'ଣ ? ଦେଖୁଛି ତୁ ପକ୍କା ଘରଣୀ ପାଲଟି ଗଲୁଣି । ତାପସୀ ହସିଦେଇ ବାପାଙ୍କ ପିଠିରେ ମୁହଁ ଗୁଞ୍ଜି ଦେଇ କହିଲା ହେଲା ଖରାପ କ'ଣ ହେଲା ?

ବାଃ ଶାଢ଼ୀ ନେବି ।

— ଶାଢ଼ୀ !

— ହଁ ବାପା ତା ଭିତରେ ମା'ର ପିଲାଦିନର ଅନେକ ସୁନ୍ଦର ସୁନ୍ଦର ଶାଢ଼ୀ ଅଛି । ଲାଲ ସବୁଜ କେତେ କ'ଣ ?

— ଥାଇପାରେ କିନ୍ତୁ ତୁ ନେଇ କ'ଣ କରିବୁ ? କାହାକୁ ଦେବୁ ନା କ'ଣ ?

— ଇସ୍ କାହାକୁ ଦେବି କାହିଁକି ମୁଁ ପିନ୍ଧିବି ।

— ତୁ ଶାଢ଼ୀ ପିନ୍ଧିବୁ ? ବିସ୍ମୟରେ ହତବାକ୍ ମନୀନ୍ଦ୍ରଙ୍କ ପାଟିରୁ କେବଳ ଏଇ ପଦଟି ବାହାରିପଡ଼ିଲା ।

— ପିନ୍ଧିଲେ କ'ଣ ହେବ । ଗାଆଁରେ ତ ମୋ ବୟସର ଝିଅମାନେ ସବୁ ଶାଢ଼ୀ ପିନ୍ଧନ୍ତି । ପିନ୍ଧନ୍ତି ନାହିଁ ?

ନାନୀ କହୁଥିଲେ ଏତେ ବଡ଼ଝିଅ ଶାଢ଼ୀ ପିନ୍ଧିଲେ ମନେଇବ ।

ବାରବର୍ଷର ଝିଅ ମୁହଁରେ ଗୋଟାଏ ବୟସ୍କା ସ୍ତ୍ରୀ ଲୋକର କଥାଶୁଣି ମନୀନ୍ଦ୍ରଙ୍କୁ ଭାରି ବୀରକ୍ତ ଲାଗିଲା ଗମ୍ଭୀର ସ୍ୱରରେ କହିଲେ-ତାପସୀ ! ତାପସୀ ଭୟପାଇ ଚୁପ୍‌ହୋଇଗଲା ।

ଶୁଣ୍ ଏସବୁ ଫାଜିଲାମି ଛାଡ଼ିଦେ । ଖବରଦାର ମୁଁ ଏସବୁ କଥା ଯେପରି ଶୁଣିବାକୁ ନ ପାଏ । ତୁମେ ସବୁ ଜାଣ ତୁମର ମା' ତୁମ ଉପରେ ରାଗ କରି ଚାଲିଗଲେ । ତୁମେ ସବୁ ଏପରି କାମ କରିବାକୁ ଚାହଁ ଯାହାକୁ ସେ ମୋଟେ ପସନ୍ଦ କରନ୍ତି ନାହିଁ ।

ବାସ୍ ଆଉ କିଛି କହିବାକୁ ପଡ଼ିଲା ନାହିଁ । ତାପସୀର ଦୁଇଟି ବଡ଼ ବଡ଼ ଆଖିରୁ ଯେଉଁ ଲୁହ ବୁନ୍ଦା ସବୁ ଝରିବାକୁ ଲାଗିଲା ତାହା ନିହାତି ଛୋଟ ନୁହେଁ । ସବୁଦିନେ ତାପସୀଟା ଭାରି ଅଭିମାନୀ । ଏଇଥି ପାଇଁ ଚିତ୍ରଲେଖା ଝିଅକୁ ଦେଖିପାରେନାହିଁ ।ଗୋଟିଏ ବୋଲି ଝିଅ ନହେଲେ ଝିଅଟା ଚାଲାଖ, ଚତୁର ସ୍ମାର୍ଟ ହୋଇ ଦୌଡ଼ା ଦୌଡ଼ି କରିବା କଥା ସେପରି ସ୍ଥଳେ, ଝିଅଟା ଖେଳା ଖେଳି କରିବାକୁ ଆସି ବାପା ମା'ଙ୍କ ବେକକୁ ଧରି ଓହଳିବ । ନକଲ କରି କଥା କହିବ । କେମିତି ଗୋଟାଏ ବୋକା ଭାବ । କୌଣସି କଥା ଶିକ୍ଷା ଦେବାକୁ ଗଲେ କାନ୍ଦି ଭସେଇ ଦେବ ।

ଏଥର ଅପ୍ରସ୍ତୁତ ହେବାର ପାଳି ମନୀନ୍ଦ୍ରର । ଆଖିର ଲୁହ ସେ ବରଦାସ୍ତ କରିପାରେ ନାହିଁ । ସେଇଥିପାଇଁ ଚିତ୍ରଲେଖାର ଶାଢ଼ୀ ପଣତତଳେ ସେ ନିଜକୁ ସମର୍ପଣ କରିଦେଇଛି ।

ମୁହଁର ଗମ୍ଭୀରଭାବଟା ଶୀଘ୍ର ବଦଳେଇ ଖୁବ୍ ହାଲୁକା ସ୍ୱରରେ ମନୀନ୍ଦ୍ର କହିଲା ଆରେ ଆରେ ଝିଅଟା କେଡ଼େ ବୋକୀ, ନେ କେତେ ଶାଢ଼ୀନେବୁ ନେ । ଏକ ସାଙ୍ଗରେ ଦି-ଚାରିଟା ଶାଢ଼ୀ ପିନ୍ଧି ଜଗଦମ୍ବା ଠାକୁରାଣୀ ହୋଇ ବସିବୁ ଯା । କିନ୍ତୁ ଚାବି ଫାବି ମୁଁ ତ ଚିହ୍ନି ନାହିଁ । ହାତ ପାପୁଲି ପଛ ପଟରେ ଆଖିର ଲୁହ ପୋଛୁ ପୋଛୁ ତାପସୀ ଭଙ୍ଗାଗଳାରେ କହିଲା ସାନ ଆଲମାରୀ ଡ୍ରୟରରେ କେତେଗୁଡ଼ାଏ ଚାବି ପଡ଼ିଛି ।

— ଅଛିତ ବହାର କରି ନେଇଯା । କିନ୍ତୁ ସାବଧାନ କୌଣସି ଦିନ ଯେମିତି ଏଇ ଶାଢ଼ୀ ଫାଢ଼ୀ କଥା ତୋ ମା' ପାଖରେ କହିବୁ ନାହିଁ, ଯଦି କହିବୁ ସାଂଘାତିକ ଅବସ୍ଥା ହେବ । ତତ୍‌କ୍ଷଣାତ୍ ତାପସୀ ସେଇଠୁ ଛୁଟିଲା । କିଏ ଜାଣେ, ବାପା ହୁଏତ ପୁଣି ମତ ବଦଳେଇ ଦେବେ ? କିନ୍ତୁ ଦିଗହରା ତାପସୀ ଶାଢ଼ୀର ସ୍ତୁପ ଭିତରେ ପଶି କେଉଁଟା ରଖିବ କେଉଁଟା ନେବ କୂଳ କିନାରା ପାଉନାହିଁ । ଶାଢ଼ୀର ବର୍ଣ୍ଣ ସମାରୋହରେ ଆଖି ଯେ ଝଲସିଯାଉଛି । ଏହା ପାଖରେ ଫ୍ରକ୍ କି ତୁଚ୍ଛ ! ଏଭଳି ପ୍ରାଣଭରି ଦେଖିବାର ସୁଯୋଗତ ତାକୁ କେବେ ମିଳି ନଥିଲା ।

କେତେବେଳେ କେମିତି ଚାକର ବାକର ମାନେ ଶାଢ଼ୀଗୁଡ଼ା ବାହାର କରି ଖରାରେ ଦିଅନ୍ତି ଝାଡ଼ି ଝୁଡ଼ି କର୍ପୁର ଦେଇ ରଖନ୍ତି । ହାତ ଦେଲେ ମା'ଠୁଁ ଗାଳି ଶୁଣିବାକୁ ପଡ଼େ । ଏତେ ଶାଢ଼ୀ ଚିତ୍ରଲେଖା ପିନ୍ଧିଲା କେଉଁଦିନ ? କିଏ ଜାଣେ, ହୁଏତ ସବୁଗୁଡ଼ା ସେ ପିନ୍ଧିନାହିଁ । କାହାକୁ ବା ଥରେ ଅଧେ ପିନ୍ଧିଦେଇ ଥୋଇ ଦେଇଛି । କେବଳ ସଂଚୟର ନିଶାରେ ଏସବୁ ଜମା କରାଯାଇଛି ।

ପୁଅ-ବୋହୂ ଆସିଲେ ନାହିଁ ବୋଲି ସାମୟିକ ଭାବେ ଦୁଃଖ ପ୍ରକାଶ କଲେ ହେମପ୍ରଭା ଯେମିତି ଦୀର୍ଘଶ୍ୱାସ ଛାଡ଼ି ବଂଚିଲେ । ଆସିବାକୁ କହିଲେ ମଧ୍ୟ 'ମେମ ସାହେବଙ୍କ' ଭୟରେ ଚିନ୍ତାର ଶେଷ ନଥିଲା । ଏହାଛଡ଼ା ନାତି-ନାତୁଣୀ ମାନଙ୍କ ଉପରେ ତାଙ୍କର ଏକାଧିପତିତ୍ୱ ଜାହିର କରିବାର ସୁବିଧା ସୁଯୋଗତ କେବେ ମିଳେ ନାହିଁ ।

ଆଉ ଗୋଟିଏ କାରଣ ହୁଏତ ମନତଳେ ଲୁଚା ହୋଇଛି । କଲିକତା ଘରେ ହେମପ୍ରଭାଙ୍କ ପାଦତଳେ ଯେମିତି ମାଟି ନାହିଁ । ଚିତ୍ରଲେଖାର ସଂସାରରେ ସେ ଯେପିର ଅବାଂଛିତ ଆଶ୍ରିତ ମାତ୍ର । ଅବଶ୍ୟ ସବୁ ଦୋଷ ଯେ କେବଳ ଚିତ୍ରଲେଖାର ଏକଥା କହିଲେ ଚଳିବ ନାହିଁ । ହେମପ୍ରଭାଙ୍କର ଶାନ୍ତିପ୍ରିୟ ଭୀରୁ ସ୍ୱଭାବର ଦୋଷ ରହିଛି । ନିଜର ଅର୍ଥ ସାମର୍ଥ୍ୟ ବଳରେ ସେ ଖୁବ୍ ଆଡ଼ମ୍ବରରେ ଚଳିପାରନ୍ତେ । କିନ୍ତୁ ପାରନ୍ତି ନାହିଁ । ପୁଅକୁ ବଂଚିତ କରି ସ୍ୱାମୀ ଯେ ତାଙ୍କୁ ସର୍ବେସର୍ବା କରି ଦେଇ ଯାଇଛନ୍ତି ଏଥିପାଇଁ ଭିତରେ ଭିତରେ ଅପରାଧ-ବୋଧର ଏକ ଯନ୍ତ୍ରଣା ରହିଛି । ଚିତ୍ରଲେଖାର ଯେଉଁ ସ୍ୱଭାବ ତାର ପରିଚୟ ନପାଇଥିଲେ ସେ ହୁଏତ ମନୀନ୍ଦ୍ର ନାଆଁରେ ଦାନପତ୍ର ଲେଖିଦେଇ ସାରନ୍ତେଣି ।

ଯାହା ହେଲେ ବି କଲିକତା ଘରେ ହେମପ୍ରଭା ଅବାନ୍ତର ଗୌଣ ।

କିନ୍ତୁ ଏଠାରେ ହେମପ୍ରଭାଙ୍କ ପାଦତଳର ମାଟି ଖୁବ୍ ଶକ୍ତ ଦୃଢ଼ । କେବଳ ପାଦତଳର ନୁହେଁ ଆଖପାଖର ମଧ୍ୟ । ଏଠାରେ ହେମପ୍ରଭା ସର୍ବେଶ୍ୱରୀ । ପିଲାମାନଙ୍କୁ ଅନ୍ତତଃ ସେତକ ଦେଖେଇ ସେ ଆତ୍ମତୃପ୍ତି ଲାଭ କରିବେ ।

ଭାରି ଖୁସି ହୋଇଛନ୍ତି ହେମପ୍ରଭା ।

ନାତି ନାତୁଣୀମାନଙ୍କ ପାଖରେ ନିଜର ଐଶ୍ୱର୍ଯ୍ୟ ଦେଖାଇବାରେ ଯେମିତି ତୃପ୍ତି ଅଛି— ସେମିତି ଗାଆଁ ଲୋକଙ୍କ ପାଖରେ ଚାନ୍ଦ ପରି ନାତି ନାତୁଣୀମାନଙ୍କୁ ଦେଖାଇବାର ମଧ୍ୟ ଗର୍ବ ଅଛି । ଏ ଓଳି, ସେ ଓଳି ଭଲ ଭଲ ପୋଷାକ ପିନ୍ଧେଇ ପିଲାମାନଙ୍କୁ ସାହିକୁ ବୁଲେଇବାକୁ ପଠାନ୍ତି । ଯେଉଁଠିକି ନିଜର ଚଳାଚଳ ଅଛି ସେଠାକୁ ସାଙ୍ଗରେ ନେଇଯା'ନ୍ତି । ତାପସୀ ଯେ ବୁଦ୍ଧି ଖର୍ଚ୍ଚ କରି ମା'ର ରଙ୍ଗୀନ ଶାଢ଼ୀଗୁଡ଼ା ନେଇ ଆସିଛି ଏଥିପାଇଁ ଆନନ୍ଦର ସୀମା ନାହିଁ ହେମପ୍ରଭାଙ୍କର ।

ଶାଢ଼ୀ ନ ପିନ୍ଧିଲେ ଝିଅ କ'ଣ ଝିଅପରି ଦିଶେ ? ଏକଥାଟା ମଧ୍ୟ ତାପସୀ ବୁଝି ପାରିଲାଣି । ସେଇଥିପାଇଁ ବୋଧହୁଏ ସକାଳବେଳା ଚଉଡ଼ା ଜରିଧଡ଼ି ଲଗା ଲାଲ ଟୁକ୍ ଟୁକ୍ ଜର୍ଜେଟ ସିଲକ୍ ଶାଢ଼ୀଟା ପିନ୍ଧି ଭଣ୍ଡାର ଘର ଦୁଆର ମୁହଁରେ ଆସି ଛିଡ଼ା ହୋଇଛି ।

ଜେଜେମା.... ଗୋ ଜେଜେମା !

ତମେ ପରା କହୁଥିଲ କେଉଁ ମନ୍ଦିର ଦେଖେଇ ନେଇଯିବ ବୋଲି । ଯିବ ନାହିଁ କି

—ଏ ମା ସେ ତ ସନ୍ଧ୍ୟାବେଳେ ଆଳତି ଦେଖିବାକୁ । ଏତକ କହି ମୁହଁ ଟେକି ଯେତେବେଳେ ସେ ତାପସୀକୁ ଦେଖିଲେ ଅବାକ୍ ହୋଇଗଲେ । ତାପସୀର ସୌନ୍ଦର୍ଯ୍ୟର ଖ୍ୟାତି ଶୈଶବରୁ ରହିଛି କିନ୍ତୁ ଏପରି ଅପୂର୍ବ ବୋଲି ସେ କେଉଁଦିନ ଦେଖିନଥିଲେ । ବୈକୁଣ୍ଠପୁରରୁ ଲକ୍ଷ୍ମୀ ଠାକୁରାଣୀ ଓହ୍ଲେଇ ଆସି କ'ଣ ହେମପ୍ରଭାର ଭଣ୍ଡାରଘର ଦୁଆରେ ଛିଡ଼ା ହେଲେ ନା କ'ଣ ? ବୈଶାଖ ସକାଳର ସଦ୍ୟଫୁଟା ମଲ୍ଲୀଫୁଲର ଲାବଣ୍ୟ କିଏ ଯେପରି ଚୋରି କରିଆଣି ତାପସୀର ମୁଖମଣ୍ଡଳରେ ଲେପି ଦେଇଯାଇଛି ।

ଏଇ ଝିଅକୁ ଚିତ୍ରଲେଖା ବିବିଆନା ଫେସନରେ ସାର୍ଟ, ପାଇଜାମା ଓ ଖଟ୍ ଖଟ୍ ଜୋତା ପିନ୍ଧେଇ ଦିଏ ! ଏଠିକି ଆସି ଥରେ ଦେଖିଯାଉ ! ଆଉ ଗୋଟିଏ କଥା ଭାବି ହେମପ୍ରଭାଙ୍କ ମନଟା କେମିତି ନିଷ୍ପ୍ରଭ ହୋଇଯାଏ । ଏଇ ଝିଅକୁ ହୁଏତ ତାହାର ସାହେବ ବାପମାଆ ପଚିଶ ବର୍ଷ ପର୍ଯ୍ୟନ୍ତ ରଖି ଆଇ ବୁଢ଼ୀ କରିବେ । ଠିକ୍ ସମୟରେ ବାହା ଦେବେ ନାହିଁ । ପାଠପଢ଼ାର ଗୋଟାଏ ବାହାନା ଦେଖାଇବେ ।

କିନ୍ତୁ ଏପରି ନ ହେଲେ କ'ଣ ହୁଅନ୍ତା ?

ମନେ ମନେ ତାପସୀ ପାଖରେ ଆଉ ଗୋଟିଏ ସୁକୁମାର କିଶୋର ମୂର୍ତ୍ତି କଳ୍ପନା କରି ଆନନ୍ଦ ଆଉ ବେଦନାରେ ହେମପ୍ରଭାଙ୍କ ଆଖି ଦୁଇଟି ସଜଳ ହୋଇଉଠିଲା ।

ତାପସୀ ପିଲା ହେଲେ ମଧ୍ୟ ଜେଜେମାଙ୍କର ଏହି ମୁଗ୍ଧ ଦୃଷ୍ଟି ଚିହ୍ନିବାରେ ତା'ର ଭୁଲ୍ ହୁଏ ନାହିଁ । ନିଜର ଲଜ୍ୟାକୁ ଢାଙ୍କିବାକୁ ଯାଇ ଏକ ଶିଶୁ ସୁଲଭ କଣ୍ଠରେ କହିଲା

ସନ୍ଧ୍ୟାବେଳେ କାହିଁକି ଯିବା ନାନୀ ଏବେ ଚାଲୁନା । ଏତେ କଷ୍ଟକରି ସଜା ସଜି ହେଲି । ଏତେବଡ଼ ଶାଢ଼ୀଟାକୁ କେମିତି ପିନ୍ଧିଲି କହିଲ ନାନୀ । ଠିକ୍ ହେଇ ନାହିଁ ? — ଖୁବ୍ ଠିକ୍ ହୋଇଛି । ହେମପ୍ରଭା ଦୁଷ୍ଟ ହସହସି କହିଲେ— ମୁଁ ତ ହାଁ କରି ଅନେଇ ରହିଛି ଏହାପରେ ଦେଖୁଛି ମୋର ନାତୁଣୀ ଜୋଇଁ ବି ତୋ' ରୂପ ଦେଖି ଘଡ଼ି ଘଡ଼ି ମୂର୍ଚ୍ଛା ଯିବ ।

ସଭ୍ୟ-ବଧୂମାତାର ଅନୁପସ୍ଥିତିରେ ଏଇ ରକମ ଗୋଟେ ଦି'ଟା ସଭ୍ୟତା ବହିର୍ଭୂତ ପରିଚିତ ପରିହାସ କଥା କହି ହେମପ୍ରଭା ଆନନ୍ଦ ପାଆନ୍ତି ।

ତାପସୀ ମଧ୍ୟ କହିବାକୁ ଛାଡ଼େନା— ଯାଃ ଭାରି ଅସଭ୍ୟ— ଏତକ କହି ଜେଜେମା ପାଖରେ ଆସି ଛିଡ଼ା ହୋଇଯାଏ ।

ହେମପ୍ରଭା ନାତୁଣୀର ଓଠଧରି ଆଦରଭରା କଣ୍ଠରେ କହନ୍ତି ତୁ' ତ କହିଲୁ ଯାଃ ଭାରି ଅସଭ୍ୟ କିନ୍ତୁ ମୁଁ ଦେଖୁଛି, ମୋର ଏଇ ରାଧାରାଣୀ ପାଇଁ ଗୋକୁଳରେ ବସି କେଉଁ 'କଳାଚାନ୍ଦ' ତପସ୍ୟା କରୁଛି ?

—ଓଃ କଳାଚାନ୍ଦ ! ଏତକ କହି ଦେଇ ତାପସୀ ଦ୍ରୁତ ପଦରେ ସେ ସ୍ଥାନ ଛାଡ଼ି ଚାଲିଯାଏ ।

ହେମପ୍ରଭା ସ୍ନେହମୁଗ୍ଧ ଦୃଷ୍ଟିରେ ନାତୁଣୀ ଯିବା ପଥକୁ ଚାହିଁ ରହନ୍ତି ।

ବୋହୂ ଆମର ଝିଅଟାକୁ ଯେତେ ଶିଶୁ କରି ରଖିବାକୁ ଚାହାନ୍ତି ଝିଅଟା କିନ୍ତୁ ସେତେ ଶିଶୁ ନୁହେଁ । ଏଇତ ମୋର ପରିହାସଟାକୁ ସେ ଭଲ ଭାବରେ ବୁଝିପାରି ଦୌଡ଼ି ପଳାଇଗଲା । ନ ବୁଝିବା ବା କାହିଁକି ଏଇ ବୟସରେ ତ ହେଲାବେଳକୁ ମୋର ବାହାଘର ହୋଇ ଦୁଇବର୍ଷ ଅତିବାହିତ ହୋଇ ଯାଇଥିଲା ।

ସୁଦୂର ଅତୀତର ସ୍ମୃତିର ଭଣ୍ଡାରରୁ ଗୋଟେ ଦୁଇଟା କଥା ସ୍ମରଣ କରି କୌତୁକର ଆଭାରେ ହେମପ୍ରଭାଙ୍କ ନିରସ ମୁହଁରେ ହସ ଉକୁଟି ଉଠିଥିଲା । — ନାନୀ.... ନାନୀ ଦିଦିର କାଣ୍ଡ କାରଖାନା ଦେଖିଲଣି ?

ମିଲିଟାରୀ ଧରଣର ଖାକୀ ସୁଟ୍ ପିନ୍ଧି ବୀରତ୍ୱ ବ୍ୟଞ୍ଜକ ଭଙ୍ଗୀରେ ଆସି ଛିଡ଼ା ହେଲା ଅମିତାଭ । ଅମିତାଭର ଉଚିତ ଥିଲା ତାପସୀର ବଡ଼ଭାଇ ହୋଇ ଜନ୍ମହେବା । କିନ୍ତୁ ଦୈବକ୍ରମେ ବର୍ଷକ ପରେ ଅମିତାଭ ଜନ୍ମହୋଇ ତାପସୀକୁ ଦିଦି ବୋଲି ସମ୍ବୋଧନ କରିବାକୁ ପଡ଼ିଲା । ନଚେତ୍ ଅନ୍ୟାନ୍ୟ ସବୁ ବିଷୟରେ ଏଇ ନାକ କାନ୍ଦୁରୀ ଝିଅଟାକୁ ନିତ୍ୟାନ୍ତ ଅପଗଣ୍ଡ ପର୍ଯ୍ୟାୟରେ ସେ ଦେଖେ ।

ହେମପ୍ରଭା ହସିଦେଇ କହିଲେ— କ'ଣ ହେଇଛିରେ ଅଭି ?

—ଏଇ ଦେଖୁନାହୁଁ କଣରେ ଭୁଆସୁଣୀ ପରି ସଜେଇ ହୋଇ ବସିଛି । ଲାଲ୍‌ଶାଢ଼ୀ ପୁଣି ମଣିଷ ପିନ୍ଧନ୍ତି ? ମା'କୁ ନିଶ୍ଚୟ ଏସବୁ କଥା କହିଦେବି ନାନୀ ବୁଝିଲୁ । ଦିଦିଟାର ଖାଲି ବୋହୂ ହେବାର ନିଶା । ବୁଢ଼ୀ ଘରଣୀ ପରି ଏମିତି ଶାଢ଼ୀ ପିନ୍ଧି ଲୁଚି ବସିବା ଭଲନା' କ'ଣ ? ଜାଣ ନାନୀ, ମାଳି ଯେତେ ସବୁ ଫୁଲ ଆଉ ହାର ଦେଇଯାଇଛି ସେଇଆକୁ ସବୁ ପିନ୍ଧି ସଜେଇ ହେଉଛି । ରାମ୍ ରାମ୍ !·– ରାମ ରାମ କାହିଁକିରେ ଅସଲ କଥା ହେଲା ଦିଦିକୁ ସ୍ୱର୍ଗର ପରୀ ରୂପରେ ଦେଖି ତୋର ହିଂସା ହେଉଛି ।

କଥାଟା ଏକବାର ମିଛ ନୁହେଁ, ହିଂସା ନହେଲେ ମଧ୍ୟ କିଛିଟା ଅଶ୍ୱସ୍ତି ଅନୁଭବ କରୁଛି ଅମିତାଭ । ଫ୍ରକ୍ ପିନ୍ଧା କିମ୍ବା ଢ଼ିଲା ପାଇଜାମା ପିନ୍ଧା ଦିଦିଟା ତାର ଅତି ଆଦରର ମଣିଷ । ଟଫି ଚକଲେଟ୍ ଭାଗ ନେଇ ତା ସାଙ୍ଗରେ ଝଗଡ଼ା ଝାଣ୍ଟିକରେ, ଶବ୍ଦ ପ୍ରତିଯୋଗିତାରେ ଗଣ୍ଡଗୋଳ ବିଷୟ ନେଇ ଝଗଡା କରେ । ସେ ଦିଦି ତାର ଭଲଭାବେ ମନେ ଅଛି କିନ୍ତୁ ଶାଢ଼ୀ-ଗହଣା ପିନ୍ଧା ମୁଣ୍ଡରେ ଫୁଲଲଗା ଦିଦିଟା ଯେମିତି ନିହାତି ଅର୍ଥହୀନ । ତା ମୁହଁରେ ଯେଉଁ ନୂଆ ରଙ୍ଗ ସେଟା ଅମିତାଭର ଅଚିହ୍ନା । ସେଇଥିପାଇଁ ଉଠିଲେ ବସିଲେ ଶାଢ଼ୀ ଗହଣାର ଖୁଣ୍ଟାଦେଇ ତାପସୀକୁ ଅସ୍ଥିର କରେ ।

ଗହଣାଗୁଡ଼ିକ ଅବଶ୍ୟ ହେମପ୍ରଭାଙ୍କର । ହେମପ୍ରଭା କିନ୍ତୁ ସବୁଦିନେ ରୋଗା ଆଉ ପତଳା ମଣିଷ । ତାପସୀ ବର୍ତ୍ତମାନ ଫୁଟନ୍ତା ଫୁଲପରି ବଢ଼ନ୍ତା ଝିଅ । ସେଇଥିପାଇଁ ତାକୁ ଗହଣା ଗାଣ୍ଠି ସବୁ ମନେଇଯାଏ । ବାକ୍ସଖୋଲି ସବୁ କିଛି ବାହାର କରି ଦେଇଛନ୍ତି ହେମପ୍ରଭା ।

ଦୀର୍ଘଦିନର ଅବରୋଧ ଭାଙ୍ଗି ଅଳଙ୍କାର ଗୁଡ଼ିକ ଯେମିତି ମୁକ୍ତି ପାଇଛନ୍ତି । ଏଇ ମୁକ୍ତାଖଚିତ ହାର, ସୁନାର ବାଜୁବନ୍ଧ, ହୀରାର କଙ୍କଣ ଏହାରି ଭିତରେ କ'ଣ ଲୁଚି ରହିଥିଲା ହେମପ୍ରଭାଙ୍କର ଆଦ୍ୟ ଯୌବନ ? ହଁ ଏସବୁ ଭିତରେ ହେମପ୍ରଭାଙ୍କର ଲାବଣ୍ୟ ମଣ୍ଡିତ ଆଦ୍ୟଯୌବନର ସ୍ପର୍ଶ ଲାଗିରହିଛି । ତାରି ସ୍ପର୍ଶ ଏବେ ଲାଗିଛି ତାପସୀର ଘୁମନ୍ତ ମନରେ ।

ଅଭିମାନିନୀ ପ୍ରିୟାକୁ ଅଳଙ୍କାରର ଉପଢ଼ୌକନରେ ତୁଷ୍ଟ କରି ପୁରୁଷ ଯେ ଧନ୍ୟ ହୁଏ ସେଟା କ'ଣ ନାରୀର ଅସମ୍ମାନ ? ପୁରୁଷର ପ୍ରେମ ନିଦର୍ଶନକୁ ବହନ କରେ ଯେଉଁ ଆଭରଣ ସେ କ'ଣ ଶୃଙ୍ଖଳ ?

ଆଜିକାଲିର ଝିଅମାନେ କଳହକରି ଅଳଙ୍କାର ଆଭରଣ ଆଦାୟ କରନ୍ତି । ଛି !

ଅମିତାଭ ଟିକିଏ ଶାନ୍ତଗଳାରେ କହିଲା ଚୁପ୍ ରହିଲଯେ ନାନୀ ? କ'ଣ ଭାବୁଛ ?

—ଭାବିବି ଆଉ କ'ଣ ତୋ ଭଉଣୀ ଯେତେବେଳେ ଘରକଣରେ ବୋହୂ ହୋଇ ବସିଛି ତା ପାଇଁ ପୁଣି ଗୋଟାଏ ବର ଦରକାର ତ !

—ଏଃ ଛି- ଛି-- ଛି ! ସେମ୍ ସେମ୍ ହେ ଦିଦି ଶୁଣିଯା କ'ଣ କହୁଛି ନାନୀ ।

ମୁଣ୍ଡରେ ବାନ୍ଧିଥିବା ରଜନୀଗନ୍ଧା ମାଳାଟିକୁ ସଜାଡୁ ସଜାଡୁ ତାପସୀ ଆସି ଛିଡ଼ା ହେଲାଣି । ଭାରି ତ'— ପାଟିତୁଣ୍ଡ କରୁଛୁବେ— ମା' ନାହିଁ ବୋଲି !

—ସେଇଆତ ମା' ନାହିଁ ବୋଲି ତୁ ତୋ ମନଇଚ୍ଛା ସଜେଇ ହେଉଛୁ । ସବୁ କହିବି ମା' ପାଖରେ । ଭିତରେ ଭିତରେ ସେ ଆତଙ୍କ ଥିଲେମଧ ତାପସୀ ମୁହଁରେ ସାହାସ ବାନ୍ଧି କହିଲା— ଯା କହିବୁ ।

କ'ଣ କହିବୁ ଶୁଣେ ? ଝିଅମାନେ ଯେମିତି ଶାଢ଼ୀ ପିନ୍ଧନ୍ତି ନାହିଁ, ଗହଣା ପିନ୍ଧନ୍ତି ନାହିଁ !

—ତୋ ପୁଣି କେହି ଫୁଲର ଗହଣା ପିନ୍ଧନ୍ତି ନାହିଁ ।

ଅଭିମାନୀ ତାପସୀ ମଲ୍ଲିଫୁଲର ମାଳାଟା ବେକରୁ କାଢ଼ି ଫୋପାଡ଼ି ଦେବାକୁ ଉଦ୍ୟତ ହେଲାବେଳେ ହେମପ୍ରଭା ଧରି ପକାଇଲେ— ଦୂର୍ ! ପାଗିଳୀଟା ! ଏଇ ଅଝାଡୁଆ ଟୋକା କଥାରେ ତୋର ପୁଣି ରାଗ ! ବେଶ୍ ବଢ଼ିଆ ଦିଶୁଛି । ଚାଲ ଏଇବେଳା ବଲ୍ଲଭଜୀଙ୍କ ମନ୍ଦିରକୁ ଯିବା । ବୈଶାଖ ପୂର୍ଣ୍ଣିମା । ଆଜି ସାରାଦିନ ଭଗବାନଙ୍କ ଦର୍ଶନର ଦିନ । କାହିଁ ସିଧୁ କୁଆଡେଗଲା ?

—ସେ'ତ ସେଠି ପେଣ୍ଟରେ ବୋତାମ ଲଗୋଉଛି । ମୋତେ ପାରୁନାହିଁ । ବୁଝିଲ ନାନୀ ଭୁଲ ଘରେସବୁ ବୋତାମ ସିଲେଇ କରୁଛି । ପୁଣି ତାକୁ ଟଣାଟଣିକରି ଛିଡୋଉଛି ।

—ସେମାନଙ୍କୁ ସବୁ ଚାକର ବାକର ପିନ୍ଧେଇ ଦେବା ଅଭ୍ୟାସତ ! ତୁ ତାକୁ ପିନ୍ଧେଇ ଦେଲୁନି କାହିଁକି ?

—ମୁଁ ! ମୋତେ ତା ଦେହରେ ହାତଦେବାକୁ ଦେଲେ ହେବତ ! ଓଲଟି କହୁଛି କ'ଣ ନା— ଦିଦି ତୁ ଏଠିକି ମାମଲତ୍‌କାରୀ କରିବାକୁ ଆସନା ।

ଅଭିର କଥା ଶୁଣି ଶୁଣି ଶିଖୁଛି ବୁଝିଲୁ ? ନିଜେ ଜଣେ ମସ୍ତ ମାମଲତକାର ହୋଇଗଲେଣି ବାବୁ, ଏତକ କହି ତାପସୀ ହସିବାକୁ ଲାଗିଲା । ହେମପ୍ରଭା ଡାକ ଛାଡିଲେ ସିଧୁବାବୁ, ଆପଣଙ୍କର ହେଲା ? ଶୀଘ୍ର ଶୀଘ୍ର ଆସନ୍ତୁ । ଖରା ଉଠିଗଲେ ଗରମ ହେବ ।

ନାତିନାତୁଣୀ ତିନିଜଣଙ୍କୁ ଧରି ହେମପ୍ରଭା ବଲ୍ଲଭଜୀ ମନ୍ଦିର ଉଦ୍ଦେଶ୍ୟରେ ଗଲେ । କଲିକତାରେ ଭଲ ମଡେଲର ଦାମି ଗାଡିଥିଲେ ମଧ ହେମପ୍ରଭାଙ୍କର ଏଠିକାର ବାହନ ହେଉଛି ଏକ ପକ୍ଷୀରାଜ ସମ୍ବଳିତ ପାଲିଙ୍କିଗାଡ଼ି; କିନ୍ତୁ ବର୍ତ୍ତମାନ ସେ ସବୁ ଦରକାର ହୁଏନା ।

ବଲ୍ଲଭଜୀଙ୍କ ମନ୍ଦିର ନୂଆ ତିଆରି ହୋଇଛି ।

ପାଖଗାଆଁର ଜମିଦାର କାନ୍ତି ମୁଖାର୍ଜୀଙ୍କ ପ୍ରତିଷ୍ଠିତ ନୂତନ ବିଗ୍ରହ 'ରାଇବଲ୍ଲଭ'ଙ୍କ ମନ୍ଦିର । କାନ୍ତି ମୁଖାର୍ଜୀଙ୍କ ପଇସା ରୋଜଗାରଟା କେବଳ ଜମିଦାରୀରୁ ନୁହେଁ । ସେଟା ପ୍ରାୟ ଗୌଣ କିନ୍ତୁ ଅସଲ ଆୟ ଆସେ କୋଇଲା ଖଣିରୁ ।

ଗାଆଁର ଲୋକେ କହନ୍ତି, ଟଙ୍କାର ଗଦି ବିଛେଇ ଶୋଇବାଭଳି ଟଙ୍କା ଅଛି କାନ୍ତି ମୁଖାର୍ଜୀର । କାନ୍ତି ମୁଖାର୍ଜୀ ନିଜେ ଅବଶ୍ୟ ବୈଷ୍ଣବ ଜନୋଚିତ ବିନୟରେ କଥାଟା ହସି ଉଡେଇ ଦିଅନ୍ତି । କିନ୍ତୁ ସତ୍‌ବ୍ୟୟର ମାତ୍ରାଟା ବଢ଼େଇ ଚାଲନ୍ତି ।

ହେମପ୍ରଭା ମନ୍ଦିର ପାଖକୁ ଆସି ଦେଖିଲେ ଯେ ମନ୍ଦିର ଭିତରେ ମହା ସମାରୋହରେ ଉତ୍ସବ ଆରମ୍ଭ ହୋଇଛି । କେବଳ ବୈଶାଖ ପୂର୍ଣ୍ଣମୀ ନୁହେଁ ମନ୍ଦିର ପ୍ରତିଷ୍ଠାର ବାର୍ଷିକ ଉତ୍ସବ ମଧ ପାଳନ ହେଉଛି । ସେଇଥିପାଇଁ ଚାରିଆଡ଼େ ଧୁମ୍‌ଧାମ୍ ଲାଗିଯାଇଛି । ନାଟମନ୍ଦିରରେ ନହବତ୍ ବାଜା ବାଜୁଛି, 'କୀର୍ତ୍ତନ ମଣ୍ଡପ'ରେ ଚବିଶପ୍ରହର ଆରମ୍ଭ ହୋଇଯାଇଛି । ରାନ୍ଧଣାଘରେ ତିନିଜଣ ବୟସ୍କା ବିଧବା ବସି ପରିବା କାଟୁଛନ୍ତି । ମନ୍ଦିର ଭିତରେ ଧୂପ, ଝୁଣା ଗୋଗଳରେ ମିଶ୍ରିତ ସୌରଭରେ ବୈଶାଖ ସକାଳର ସ୍ନିଗ୍ଧ ପବନ ସୌରଭିତ ହୋଇ ଉଠିଛି ।

ଏସବୁ ଅଭିଜ୍ଞତା ଚିତ୍ରଲେଖା ପୁଅଝିଅମାନଙ୍କର ହେବାର ନୁହେଁ । ମୁଗ୍ଧ ବିସ୍ମୟରେ ଚାରିଆଡ଼କୁ ଚାହିଁ ତାପସୀ ଉଚ୍ଛ୍ୱସିତ ପ୍ରଶଂସାରେ ଚୁପ୍‌ଚୁପ୍ କହିଲା କି ସୁନ୍ଦର ନାନୀ ! ରୋଜ ରୋଜ୍ କାହିଁକି ଏଠାକୁ ଆସନା ?

—ରୋଜ୍ ? କେମିତି ଆସିବି । ମୁଁ ପରା ମହାପାପୀ । ତା ନହେଲେ ଶେଷ ଜୀବନଟା ଏଇଠି ନକଟି କଲିକତାରେ କାହିଁକି ମୁଁ ଛଟପଟ ହେଉଥା'ନ୍ତି ?

—ନାନୀ ! ନାନୀ ! ପଛରୁ ସିଦ୍ଧାର୍ଥର ଆନନ୍ଦଉଚ୍ଛ୍ୱାସ କଣ୍ଠଶବ୍ଦ ଶୁଣାଗଲା । ଏଇ ଦେଖିଲ ଏତେ ବଡ ଜିନିଷଟାଏ କ'ଣ ରହିଛି । ଜଣେ ବୁଢ଼ା ଭଦ୍ରଲୋକ କହିଲେ 'ରଥ' । ରଥ କ'ଣ ହୁଏ ନାନୀ ?

—ରଥରେ ଚଢ଼ି ଠାକୁର ମାଉସୀ ଘରକୁ ଯାଆନ୍ତି । ଆରେ କାହିଁ ତୁ'ତ ଠାକୁରଙ୍କୁ ପ୍ରଣାମ କଲୁନାହିଁ ?

—ଏ ଯାଃ ! ଭୁଲିଯାଇଛି । ଏତକ କହି ମିଲଟାରୀ କାଇଦାରେ ଦୁଇହାତକୁ କପାଳରେ ମାରି ଚଞ୍ଚଳ ସ୍ୱରରେ ସିଦ୍ଧାର୍ଥ କହିଲା— ଭାଇ ! ବୋକାଙ୍କ ପରି ଠାକୁର ଦେଖୁଛ କ'ଣ ରଥଟା ଦେଖିବ ଚାଲନା । ସତ ସତିକା ଘୋଡାପରି ଦୁଇଟା ଘୋଡା ଯୋଚା ହୋଇଛନ୍ତି ରଥରେ ।

ଏହାପରେ ଅମିତାଭଙ୍କୁ ସମ୍ଭାଳିବା କଷ୍ଟ ।

ଅଗତ୍ୟା ହେମପ୍ରଭାଙ୍କୁ ଯିବାକୁ ହେଲା ।

ତାପସୀ ଅବଶ୍ୟ ଏସବୁ ଶିଶୁ ସୁଲଭ ଉଚ୍ଛ୍ୱାସରେ ଯୋଗ ନଦେଇ ନିବିଷ୍ଟଭାବେ ଠାକୁରଙ୍କୁ ଦେଖିବାରେ ଚେଷ୍ଟା କରୁଛି । ସତସତକା ଘୋଡାପରି କାଠଘୋଡାର ସଂବାଦ ତା ହୃଦୟରେ ଯେଉଁ ସ୍ପନ୍ଦନ ସୃଷ୍ଟି କରିଥିଲା ତାକୁ ଲୁଚେଇ ରଖିବା କ'ଣ ସହଜ କଥା !

ମନ୍ଦିର ପଛପାଖରେ ବିରାଟ ଏକ ଚତ୍ୱର । ସେହି ଚତ୍ୱର ଉପରେ ରାସଲୀଳା ସଖୀମାନଙ୍କର ମୂର୍ତ୍ତି । ଗୋଟିଏ ସୁଉଚ୍ଚ ରଥ ସେଠାରେ ରହିଛି । ଦରକାରବେଳେ ରଙ୍ଗାରଙ୍ଗି କରି ସଜେଇବାକୁ ପଡିବ ବୋଲି ବର୍ଷସାରା ସେ ସବୁ ମୂର୍ତ୍ତି ଓ ରଥ ପରିତ୍ୟକ୍ତ ହୋଇ ସେମିତି ପଡିଥାଏ । କେହି ଏହାର ଆବଶ୍ୟକତା ଅନୁଭବ କରନ୍ତି ନାହିଁ ।

ବୁଲିବୁଲି ସେ ସବୁ ଦେଖିଲେ ଏବଂ କହିଲେ ଏତେ ବଡ ମୂର୍ତ୍ତି ଗଢ଼ିଲା କିଏ ? ଏ ସିଢ଼ି ଗୁଡା ଉପରେ ଠାକୁର ଉଠିପାରନ୍ତି ନା ନାହିଁ ? ନାତିନାତୁଣୀଙ୍କର ଏସବୁ ପ୍ରଶ୍ନର ଉତ୍ତର ଦେଇ କ୍ଲାନ୍ତ ହେମପ୍ରଭା ଯେତେବେଳେ ଫେରୁଛନ୍ତି ଠିକ୍ ସେତିକିବେଳେ ମନ୍ଦିର ସାମନାରେ ଏକ ଗୁଞ୍ଜନ ଶୁଣାଗଲା– 'କାନ୍ତି ମୁଖର୍ଜି 'କାନ୍ତି ମୁଖର୍ଜି' ! କାନ୍ତି ମୁଖାର୍ଜୀ ପୂଜା ଉପଚାର ନେଇ ମନ୍ଦିରକୁ ଆସୁଛନ୍ତି ।

ସେ'ତ ସହଜେ ଜମିଦାର– ପୁଣି ମନ୍ଦିରର ପ୍ରତିଷ୍ଠାତା ସେଇଥିପାଇଁ ଭଜନ କୀର୍ତ୍ତନରେ ବିଭୋର ହୋଇଥିବା ବୈଷ୍ଣବଭକ୍ତଙ୍କ ଠାରୁ ଆରମ୍ଭ କରି ପୂଜାରୀ, ସେବକ-ସେବିକା, ସାଧାରଣ ଦର୍ଶକବୃନ୍ଦ ପର୍ଯ୍ୟନ୍ତ ସମସ୍ତେ ତ୍ରସ୍ତ ଶଙ୍କିତ ହୋଇ ପଡିଲେ ।

କାନ୍ତି ମୁଖାର୍ଜୀଙ୍କ ନାଆଁଟା ବରାବର ଶୁଣି ଆସିଛନ୍ତି ହେମପ୍ରଭା କିନ୍ତୁ କେବେ ଚାକ୍ଷୁସ ପରିଚୟ ନାହିଁ । ହେମପ୍ରଭା ସିଲ୍କ ଚାଦରଟାକୁ ଦେହରେ ଭଲଭାବେ ଘୋଡେଇ ହୋଇ ନାତିନାତୁଣୀମାନଙ୍କର ପଛକୁ ସରେଇଗଲେ । ଉପଚାର ବାହକ ଚାକରଟିକୁ ଆଖିର ଇଙ୍ଗିତରେ ସରେଇ ଦେଇ କାନ୍ତି ମୁଖାର୍ଜୀ ନିଜେ ଆଗେଇ ଆସି କହିଲେ– କିରେ ପୁଅ ଚାଲିଯାଉଛ କାହିଁକି ପ୍ରସାଦ ନେବ ନାହିଁ ? ଉଦ୍ଦିଷ୍ଟବ୍ୟକ୍ତି ଅବଶ୍ୟ ସିଦ୍ଧାର୍ଥ ।

ଭାଇ ଆଗରେ ପ୍ରତିପତ୍ତି ଦେଖାଇବାର ସୁଯୋଗ ସେ କେବେ ଛାଡେନା । ରିତିମତ ପରିଚିତ ଲୋକପରି ଦୃଢ଼କଣ୍ଠରେ କହିଲା– ଆମ ଘରେ ପ୍ରସାଦ ବହୁତ ଅଛି । ଏମାନଙ୍କୁ ସବୁ ରଥଟା ଟିକିଏ ଦେଖେଇ ଆଣିଲି । ଏମାନେ ମୋର ଭାଇ, ଭଉଣୀ, ଆଉ ଜେଜେମା । ଆଚ୍ଛା ଏଇ ମିସ୍ତ୍ରୀଟା କେଉଁଠି ରହେ ?

କାନ୍ତି ମୁଖାର୍ଜୀ କେମିତି ଆତ୍ମହରା ଭଙ୍ଗୀରେ ଏମାନଙ୍କୁ ଚାହିଁ ରହିଥିଲେ, ହଠାତ୍ ଏହି ଅବାନ୍ତର ପ୍ରଶ୍ନରେ ସଚେତନ ହୋଇ କହିଲେ କେଉଁ ମିସ୍ତ୍ରୀଟା କହତ ?

–ଏଇ କାଠର ଘୋଡାଗୁଡା ଯିଏ ତିଆରି କରିଛି । ମୁଁ ଗୋଟାଏ ଘୋଡା ତିଆରି କରିବି ବୋଲି ମନରେ ଭାବିଛି । ସିଦ୍ଧାର୍ଥର ଏହି ବିଜ୍ଞଜନୋଚିତ ମନ୍ତବ୍ୟ ଶୁଣି ସମସ୍ତେ

ହସି ଉଠିଲେ । କାନ୍ତି ମୁଖାର୍ଜୀ ଶ୍ରଦ୍ଧାରେ ସିଦ୍ଧାର୍ଥର ପିଠି ଥାପୁଡେଇ କହିଲେ ଘୋଡା କାହିଁକି ଗୋଟେ ହାତୀ ତିଆରି କରିବାକୁ ବରାଦ ଦେଇଦେ ।

— ଏ କ'ଣ ତମର ଦିଦି ?

— କ'ଣରେ ମାଆ ତୋ ନାଆଁ ?

ତାପସୀ ଅସ୍ପଷ୍ଟ ସ୍ୱରରେ ନିଜର ନାମ ଉଚ୍ଚାରଣ କଲା । ତାପସୀ ? ଚମତ୍କାର କିନ୍ତୁ ଏ ନାଆଁଟା ତୁମପାଇଁ ନୁହେଁ ଦିଦି । ତପସ୍ୟା କରିବ ସିଏ, ଯିଏ ତୁମକୁ ପାଇ ଧନ୍ୟ ହେବ । ସନ୍ଦେହ କରିବାର କିଛି ନାହିଁ । ବ୍ରାହ୍ମଣ ଘରର ଝିଅ ତ ନିଶ୍ଚୟ । ତେବେ ସାଙ୍ଗିଆଟା ଜାଣିବା ଦରକାର ।

— ତୁମ ବାପାଙ୍କ ନାମ କ'ଣରେ ମାଆ ?

— ଲାଜକୁଳୀ ତାପସୀ ଉତ୍ତର ଦେବା ପୂର୍ବରୁ ଅମିତାଭ ଗମ୍ଭୀର ଭାବେ କହିଲା ବାପାଙ୍କ ନାମ ଏମ. ବାନାର୍ଜୀ ।

ବଡ଼ଭଉଣୀ ଓ ସାନଭାଇ ମଝିରେ କେମିତି ଗୌଣ ହୋଇଯାଉଛି ବୋଲି ମନେ କରି ନିଜ ସମ୍ବନ୍ଧରେ ସମସ୍ତଙ୍କୁ ସଚେତନ କରିବା ପାଇଁ ଉତ୍ତର ଦେଇଥିଲା ଅମିତାଭ । କିନ୍ତୁ ସିଦ୍ଧାର୍ଥ ପାଖରେ ତାର ପରାଜୟ ଅନିବାର୍ଯ୍ୟ । କିନ୍ତୁ ସିଦ୍ଧାର୍ଥ ପାଖରେ ତାର ପରାଜୟ ଅନିବାର୍ଯ୍ୟ । ତୀବ୍ର ତୀରସ୍କାରର ଭଙ୍ଗୀରେ ବଡ଼ଭାଇ ଆଡ଼କୁ ଚାହିଁ ସିଦ୍ଧାର୍ଥ କହିଲା - ପୁଣି ସେହି ରକମ କହିଲୁ । ନାନୀ କ'ଣ କହିଥିଲା ? ଏଠିସବୁ କ'ଣ କହିବାକୁ ହେବ ବାପାଙ୍କ ନାମ ହେଉଛି ଶ୍ରୀ ମନୀନ୍ଦ୍ର ବନ୍ଦୋପାଧ୍ୟାୟ ବୁଝିଲୁତ ?

— ବୁଝିଛି । ଈଶ୍ୱରଙ୍କୁ ଅଶେଷ ଧନ୍ୟବାଦ ।

କାନ୍ତି ମୁଖାର୍ଜୀ ସିଧା ସିଧା ହେମପ୍ରଭାଙ୍କ ସାମନାକୁ ଆସି କହିଲେ ବାଧ ହୋଇ ଆପଣଙ୍କୁ ସମ୍ବୋଧନ କରିବାକୁ ପଡ଼ିଲା - ଲଜ୍ୟା କରିବେ ନାହିଁ — ମୁଁ ଆପଣଙ୍କ ଠାରୁ ବୟସରେ ଅନେକ ବଡ଼ । ଏ ଝିଅଟି କ'ଣ ଆପଣଙ୍କ ନାତୁଣୀ ?

ହେମପ୍ରଭା ମୁଣ୍ଡହେଲେଇ ସମ୍ମତି ଜଣାଇଲେ ।

— ତାହେଲେ ଆପଣଙ୍କ ପାଖରେ ମୋର ଗୋଟାଏ ଆବେଦନ — ଏ ଝିଅଟିକୁ ମତେ ଦିଅନ୍ତୁ । ମୋର ଗୋଟିଏ ନାତି ଅଛି ପିତୃମାତୃ ହରା ହତଭାଗ୍ୟ, ତଥାପି ମୋର ଯାହା ଖୁଦକଣ୍ଡା ଅଛି ସବୁ ତାହାର । — ତେବେ ଆପଣ ପିଲାଟାକୁ ଥରେ ଦେଖି ମତେ କଥା ଦିଅନ୍ତୁ ।

ଅକସ୍ମାତ୍ ଯେମିତି ହେମପ୍ରଭା ଦିଗହରା ହୋଇ ପଡ଼ିଲେ । ଏ କି ବିପଦ !

ଏ ଅଞ୍ଚଳରେ କାନ୍ତି ମୁଖାର୍ଜୀ ଯେ ଇମିତକା ସିମିତକା ଲୋକ ନୁହଁନ୍ତି । ଏତେ ବଡ଼ ସମ୍ଭ୍ରାନ୍ତ ଲୋକର ନିବେଦନକୁ ସେ ଉପେକ୍ଷା କରିବେ କେଉଁ ମୁହଁରେ ? ପ୍ରତିବାଦର ଭାଷା ପାଇବେ କେଉଁଠୁ ? ଅଥଚ ଚିତ୍ରଲେଖାର ଝିଅକୁ ଦାନ କରିଦେବାର ଆସ୍ପର୍ଦ୍ଧା ତାଙ୍କର କାହିଁ ?

ସେଇଥିପାଇଁ ବୋଧହୁଏ ସାପ ମରିବ ନାହିଁକି ବାଡ଼ି ଭାଙ୍ଗିବ ନାହିଁ ଏହିଭାବରେ ସେ କହିଲେ ଆପଣଙ୍କ ଘରକୁ ଯିବ, ସେତ ପରମ ସୌଭାଗ୍ୟର କଥା, ତେବେ ସେ'ତ ନିହାତି ପିଲା !

– ପିଲାତ ନିଶ୍ଚୟ ତାହାତ ମୁଁ ଦେଖୁ ପାରୁଛି । ମୋ ନାତି ମଧ ଛୋଟ ପିଲା । ଅପେକ୍ଷା କରିବି ଦି ତିନିବର୍ଷ ସେଥିରେ କିଛି ଅସୁବିଧା ନାହିଁ କିନ୍ତୁ କ୍ଷମା କରିବେ ଏ ଝିଅକୁ ଛାଡ଼ିବାର ଉପାୟ ମୋର ନାହିଁ । ଏ ଝିଅର ମୁଖମଣ୍ଡଳରେ ମୁଁ ରାଧାରାଣୀଙ୍କର ମୁଖ ଛାୟା ଦେଖୁପାରୁଛି । ଆପଣ ମତେ କଥା ଦିଅନ୍ତୁ ।

ହେମପ୍ରଭା କୁଣ୍ଠିତ କଣ୍ଠରେ କହିଲେ ଆପଣଙ୍କ ଘରେ ବନ୍ଧୁ ବାନ୍ଧିଲେ ମୁଁ ତ ନିଜକୁ ଧନ୍ୟ ମନେ କରିବି କିନ୍ତୁ ପୁଅକୁ ନ ଜଣେଇ....

– ଜଣେଇବେ ତ ନିଶ୍ଚୟ । ଆପଣ ହେଉଛନ୍ତି ପୁଅର ମାଆ, ସେଟା ତ ଆଉ ମିଛ ନୁହେଁ ? ଆପଣଙ୍କ କଥାଟା ବିଲାତରେ ଅପିଲ ପରି । ତା ଉପରେ ଆଉ କି କଥା । ଅବଶ୍ୟ ମୋ ନାତିକୁ ଆପଣଙ୍କର ଦେଖିବା କଥା — ଆରେ କିଏ ଅଛ ? ବୁଲୁବାବୁଙ୍କୁ ଟିକିଏ ଡାକି ଦିଅତ ! ଜଣେ ଚାକର ଆସି କହିଲା ବୁଲୁବାବୁ ଠାକୁର ସିଂହାସନର ସାମିଆନା ବାନ୍ଧୁଛନ୍ତି ।

– ଆଚ୍ଛା ଆସିବା ପାଇଁ କହ - କହିବୁ ମୁଁ ଡାକୁଛି ।

ହୁକୁମଟା ଦେଇ କାନ୍ତି ମୁଖାର୍ଜୀ ମନେ ମନେ ହସିଲେ..... ସୁନ୍ଦରୀ ନାତୁଣୀଟା ପାଇଁ ଦ୍ୱିଧାରେ ପଡ଼ିଛି – ହଉ ଦେଖିବା ମୋ ପରି ତୁମେ ଫାନ୍ଦରେ ପଡୁଛକି ନାହିଁ ।

ଫାନ୍ଦରେ ପଡ଼ିଲେ କ୍ଷତି କ'ଣ ?

ସ୍ୱପ୍ନର କଳ୍ପନା ଯଦି ପ୍ରତ୍ୟକ୍ଷ ମୂର୍ତ୍ତିଧରି ସାମନାରେ ଆସି ଛିଡ଼ାହୁଏ ତେବେ ଦିଗହରା ହେବା ଛଡ଼ା ଉପାୟ କ'ଣ ଅଛି ?

ଠିକ୍ ଏମିତି ଗୋଟିଏ ସୁକୁମାର କିଶୋର ମୂର୍ତ୍ତିର ପରିକଳ୍ପନା କରିଛନ୍ତି ହେମ ପ୍ରଭା । ଦେବତା ଛଳନା କରିବାକୁ ଆସିଲେ ନାହିଁ ତ ? ତା ନହେଲେ ଏ କି ଅପୂର୍ବ ସୁନ୍ଦର ବେଶ ! ଚଉଡ଼ା ଜରି ଧଡ଼ିର ବନାରସୀ ପାଟ ପିନ୍ଧା ହୋଇଛି, ମୁଣ୍ଡରେ ଧଳା ଚନ୍ଦନର ଟିପା । ପାଦରେ ଜୋତା ନାହିଁ ତଥାପି କେଡ଼େ ସୁନ୍ଦର । ହାତରେ ଗୋଟାଏ ଲାଲ ଶାଲୁକନାର ଚଦର । ଜେଜେବାପାଙ୍କ ଡାକରାରେ ଆସି ହଠାତ୍ ଏତେଗୁଡ଼ିଏ ଅପରିଚିତ ମୁହଁ ଦେଖି ଅବାକ୍ ହୋଇ ଛିଡ଼ା ହୋଇଛି ବୁଲୁ ।

ନାଁ ତାପସୀ ପରି ଅବଶ୍ୟ ଏତେ ତୋଫା ଗୋରା ନୁହେଁ କିନ୍ତୁ ପ୍ରଥମ ଫଗୁଣର ଆମ୍ବ ବଉଳପରି ରଙ୍ଗ । ସେ କ'ଣ କମ ଉଜ୍ୱଳ । ମୁହଁର ଗଠନଭଙ୍ଗୀ ତାପସୀ ଠାରୁ ଆହୁରି ନିଖୁଣ ଆହୁରି ସୁନ୍ଦର ଏକଥା ଅସ୍ୱୀକାର କରିବାର ଉପାୟ ନାହିଁ ହେମପ୍ରଭାଙ୍କର ।

କାନ୍ତି ମୁଖାର୍ଜୀ ନାତିଆଡ଼େ ଚାହିଁ କହିଲେ–

ଆରେ ଆସିଲୁ କ'ଣ କରୁଥିଲୁ ?

ଏତେ ଗୁଡ଼ିଏ ଅପରିଚିତ ମଣିଷଙ୍କ ଆଗରେ ନିଜର ପିଲାଳିଆମି ପ୍ରକାଶ କରିବାର ଇଚ୍ଛା ବୋଧହୁଏ ବୁଲୁର ନଥିଲା । ଜେଜେବାପାଙ୍କର ଏ ପ୍ରକାର ଅହେତୁକ ପ୍ରଶ୍ନ ମନକୁ ଟିକିଏ ବୀରକ୍ତ କରିଦେଲା ଗମ୍ଭୀର ହୋଇ କହିଲା ଠାକୁରଙ୍କ ସିଂହାସନ ଉପରେ ସାମିଆନାଟା ବାନ୍ଧୁଥିଲି ।

–ଦେବତାଙ୍କ ମଥା ଉପରେ ସାଲୁକନାରଗୋଟାଏ ସାମିଆନା ବାନ୍ଧିବା କ'ଣ ଦରକାର ଏତକ କହି କୌତୂକ ସହକାରେ ହସିବାକୁ ଲାଗିଲେ କାନ୍ତି ମୁଖାର୍ଜୀ ।

ବୁଲୁ ଆଉ ଟିକିଏ ଗମ୍ଭୀର ହୋଇ କହିଲା ରଥର ଚୂଡ଼ାରେ ପୁଣି ପତାକା କିମିତି ବନ୍ଧାଯାଏ ? ଠିକ୍ ଠିକ୍ ମୋର ଭୁଲ । ଆଚ୍ଛା ଆସ ଏଙ୍କୁ ପ୍ରଣାମ କର ଏ ହେଉଚନ୍ତି ମନୀନ୍ଦ୍ରବାବୁଙ୍କ ମା' । ମନୀନ୍ଦ୍ରବାବୁ କିଏ ବୁଝୁଛ ତ ? ଈଶାଣପୁର, କୁସୁମହାଟ ଏସବୁ ତାଙ୍କରି ।

କାନ୍ତି ମୁଖାର୍ଜୀଙ୍କ ପ୍ରକାଣ୍ଡ ଜମିଦାରୀର ଠିକ୍ ସୀମାରେ ଏଇ ସବୁ ତାଲୁକ । କିନ୍ତୁ ବାଦ ବିବାଦ ଘଟିନାହିଁ କେବେ ।

ଦାୟିତ୍ୱ ଖଲାସ କରିବା ପରି ଗୋଟାଏ ନମସ୍କାର କରି ବୁଲୁ କହିଲା ଜେଜେ ମୁଁ ଯାଉଛି ? ହଉଯାଆ । ଆସିଲୁ ପଳେଇଲୁ । ଏହାପରେ ପୁଣି ଦେଖିବୁ ।

କାନ୍ତି ମୁଖାର୍ଜୀ ହେମପ୍ରଭାଙ୍କ ଆଡ଼େ ଚାହିଁ କହିଲେ ପିଲା ଦେଖିଲ ତ ? ଆଉ କିଛି କହିବାର ଅଛି । ଏମାନେ ଯେ ପରସ୍ପର ପାଇଁ ସୃଷ୍ଟି ହୋଇଛନ୍ତି ଏକଥା କ'ଣ ଅସ୍ୱୀକାର କରିହେବ ?

– ନା ମୁଖୁଜୋ ମହାଶୟ, ପ୍ରତ୍ୟକ୍ଷରେ ଦେଖିଲି ଏ ବିଧିର ବିଧାନ । କହିବାର କିଛି ନାହିଁ । ନିଜର ଅଜ୍ଞାତ ସାରରେ କଥାଟା ଉଚ୍ଚାରଣ କରନ୍ତି ହେମପ୍ରଭା । କିଏ ଯେମିତି ତାଙ୍କୁ କୁହାଇ ଦେଉଛି ।

କାନ୍ତି ମୁଖାର୍ଜୀ ପ୍ରାଣଖୋଲା ହସ ହସିଲେ, କହିଲେ– କାନ୍ତି ମୁଖାର୍ଜୀର ଆଖି କେବେ ଭୁଲ କରେ ନାହିଁ । ଜମିର ଉପରିଭାଗ ଦେଖିଲେ କହିଦେବି କାହାତଳେ କୋଇଲା କାହାତଳେ ହୀରା ଅଛି ।

ବିଚକ୍ଷଣ କାନ୍ତି ମୁଖାର୍ଜୀ ତ ହୀରାର ଖଣି ନିର୍ଣ୍ଣୟ କରି ନିଶ୍ଚନ୍ତ ହେଲେ କିନ୍ତୁ ହେମପ୍ରଭାର ସେ ନିଶ୍ଚିନ୍ତ ହେବାର ସୁଖ କାହିଁ ?

ଘରକୁ ଫେରି ଛଟପଟ ହେବାକୁ ଲାଗିଲେ । ଏ କ'ଣ କଲି ? କ'ଣ କରି ବସିଲି ? ମନ୍ଦିର ବେଢ଼ାରେ ଏ କି ସତ୍ୟ କରି ପକେଇଲେ ହେମପ୍ରଭା, ଏ ଯେ କେତେ ବଡ଼ ଅନଧିକାର ଚର୍ଚ୍ଚା, ସେ କଥା ହେମପ୍ରଭା ଠାରୁ ବେଶି କିଏ ଜାଣେ ? ହେମପ୍ରଭା କାହିଁକି ଦୁଇହାତ ଯୋଡ଼ି କାନ୍ତି ମୁଖାର୍ଜୀଙ୍କ ଠାରୁ କ୍ଷମା ଚାହିଁଲେ ନାହିଁ ? କାହିଁକି କହିଲେ ନାହିଁ ଯେଉଁ ସତ୍ୟ ରକ୍ଷାକରି ପାରିବି ନାହିଁ ସେ ସତ୍ୟ କରିବାର ମୂଲ୍ୟ କ'ଣ ? ନିଜର ଦୈନ୍ୟ ସ୍ୱୀକାର କରିଯାଇଥିଲେ କଥାଟା ମେଣ୍ଟି ଯାଇଥା'ନ୍ତା ।

ହେମପ୍ରଭା ମନୀନ୍ଦ୍ରର ମା' ଯେତେହେଲେ ବି ତାର ମୁରବୀ । ହେମପ୍ରଭାର କଥା ବିଲାତର ଅପିଲପରି । ହାଏ ହେମପ୍ରଭା ଜୀବନରେ ଏଟା ପରିହାସ ଛଡ଼ା ଆଉ କ'ଣ ? ଏହି ସତ୍ୟଟିକୁ ସ୍ପଷ୍ଟଭବେ ପ୍ରକାଶ କରିବାର ସାହାସ କାହିଁକି ହେଲା ନାହିଁ ତାଙ୍କର । ଅହଙ୍କାର ? ନା ଆତ୍ମମର୍ଯ୍ୟାଦାରେ ଆଘାତ ଲାଗିଥା'ନ୍ତା ।

କିନ୍ତୁ ସେଟା କ'ଣ ଠିକ୍ । ସେତେବେଳେ ଏତେକଥା ଭାବିବାକୁ ହେମପ୍ରଭା ମୁଣ୍ଡରେ କ'ଣ ବୁଦ୍ଧିଥିଲା । ବିହ୍ୱଳତାର ସୁଯୋଗ ନେଇ ନିୟତି କ'ଣ ତାଙ୍କ ପାଟିରେ ଏହି କଥାଟା କୁହାଇ ଦେଲା ।

ନିଜର ମନକୁ ପ୍ରବୋଧ ଦେବାପାଇଁ ଯଦିଓ ନିୟତିକୁ ଦାୟୀ କରାଯାଏ ତେବେ ଚିତ୍ରଲେଖା ସାମନାରେ କାହାକୁ ଛିଡ଼ା କରେଇବେ ? ନିୟତିକୁ !

ତାପସୀର ବିବାହର ସମ୍ବନ୍ଧ ସ୍ଥିର କରିଛି ବୋଲି ଶୁଣିଲେ ଚିତ୍ରଲେଖା ଶାଶୁକୁ ପାଗଳାଗାରଦ ଭିତରେ ରଖିବ ନିଶ୍ଚିନ୍ତ ବି ରହିପାରିବ ନାହିଁ । ହେମପ୍ରଭାର ଆହାର, ନିଦ୍ରା କୁଆଡ଼େ ଚାଲିଗଲା । ଯେଉଁ ତୃପ୍ତିଟିକକୁ ସେ କେତେଦିନ ଭୋଗ କରୁଥିଲେ ଏ ଯେମିତି ତାର କ୍ଷତିପୂରଣ ।

ନିଜ ଉପରେ ରାଗ ହେଲା, କାନ୍ତି ମୁଖାର୍ଜୀ ଉପରେ ରାଗ ହେଲା, ସାରା ବିଶ୍ୱଉପରେ ଯେମିତି ବିରକ୍ତି ଆସିଲା । କୌଣସି ମନ୍ତ୍ରର ପ୍ରଭାବରେ ଯଦି ସେଦିନର ସକାଳଟାକୁ ଫେରାଇ ଆଣି ହୁଅନ୍ତା ତା ହେଲେ ମନ୍ଦିରର ଦୁଆର ଆଉ ମାଡ଼ନ୍ତେ ନାହିଁ ହେମପ୍ରଭା । ଏତେ କାଣ୍ଡବି କିଛି ଘଟି ନଥା'ନ୍ତା ।

ତେବେ ସେହି କିଶୋର-ଦେବତା ମୂର୍ତ୍ତିପରି ପୁଅଟିର ମୁହଁଟି ତାଙ୍କ ଆଖି ଆଗରେ ନାଚିଯାଏ । ତାଙ୍କ ହୃଦୟରେ ଉଦ୍‌ବେଳନ ସୃଷ୍ଟି ହୁଏ । ମନେ ହୁଏ ସେ ପୁଅ ବୋଉଙ୍କ ହାତ ଧରି ଏ ବାହାଘରର ସମ୍ମତି ଆଦାୟ କରିପାରିବେ ନାହିଁ । ସେମାନେ ପରେ ମାଆର ମୁହଁ ନ ଦେଖନ୍ତୁ କିନ୍ତୁ ଦେବ ମନ୍ଦିରରେ ଛିଡ଼ା ହୋଇ ଯେଉଁ ସତ୍ୟ କରିଛନ୍ତି ହେମପ୍ରଭା ସେତକର ମର୍ଯ୍ୟାଦା ହେଲେ ରଖନ୍ତୁ ।

ମନୀନ୍ଦ୍ରର ଯଦି ଟିକିଏ ନିଜତ୍ୱ ଥାଆନ୍ତା ତାହେଲେ ହେମପ୍ରଭାଙ୍କୁ ଅଥଳ ସମୁଦ୍ରରେ ପହଁରିବାକୁ ପଡ଼ନ୍ତା ନାହିଁ । କିଛି ଗୋଟାଏ କୂଳ କିନାରା ନିଶ୍ଚୟ ମିଳନ୍ତା । କିନ୍ତୁ ଚିତ୍ରଲେଖା ଯେ ମନୀନ୍ଦ୍ରର ସମସ୍ତ ବୁଦ୍ଧି ବୃତ୍ତିକୁ ଆଚ୍ଛନ୍ନ କରି ରଖିଛି ଏକଥା ଆଉ ହେମପ୍ରଭାଙ୍କୁ ଅଛପା ନାହିଁ ।

ଚିତ୍ରଲେଖାର ମୁହଁଟା ମାନସ ଚକ୍ଷୁରେ ଦିଶିଗଲେ ହେମପ୍ରଭା କୌଣସି କୂଳ କିନାରା ପାଆନ୍ତି ନାହିଁ ।

କିଛିଦିନ ଅତିକ୍ରାନ୍ତ ହୋଇଗଲା ।

ହେମପ୍ରଭା ମନେ ମନେ ଭାବନ୍ତି ଏ ସବୁ କିଛି ନୁହେଁ । ଘଟଣା ସେମିତି କିଛି ଘଟି ନାହିଁ । ସେଦିନର ସମସ୍ତ ଘଟଣାକୁ ଗୋଟି ଗୋଟି କରି ମନେପକାନ୍ତି ହେମପ୍ରଭା । ଏମିତି କ'ଣ ସେ ଗୁରୁତର ପ୍ରତିଜ୍ଞା କରିପକେଇଛନ୍ତି କି ? ପୁଅଝିଅ ରହିଲେ ଏମିତି କେତେଜାଗାରେ ପ୍ରସ୍ତାବ ପଡ଼େ ଭାଙ୍ଗେ । ତା ବୋଲି କ'ଣ ?...... ମନଟାକୁ ଯେତେ ହାଲୁକା କରିବାକୁ ଚେଷ୍ଟା କଲେ ମଧ୍ୟ ଦେବତାଙ୍କ ସାମନାରେ ମନ୍ଦିର ପ୍ରାଙ୍ଗଣରେ କଥାଟା ଘଟିଛି ତେଣୁ ସେହି ମନ୍ଦିରଟା ଯେପରି ପାହାଡ଼ ପ୍ରମାଣ ତାଙ୍କ ଛାତି ଉପରେ ଆସି ଲଦିହୋଇଯାଏ । ତାଛଡ଼ା ଭୁଲିଯିବାର ଯୁ କାହିଁ । କାନ୍ତି ମୁଖାର୍ଜୀ ଘରୁ ପ୍ରାୟ ପ୍ରତ୍ୟେକ ଦିନ ଭାର ବେଭାର ଆସୁଛି । ଏକଲା ତାପସୀ ପାଇଁ ନୁହେଁ ତିନି ଭାଇ ଭଉଣୀଙ୍କ ପାଇଁ ବିଭିନ୍ନ ପ୍ରକାର ଖେଳଣା, ଖାଇବା ଜିନିଷ, ଜାମାପଟା ।

ହେମପ୍ରଭା ମନେ ମନେ ବିରକ୍ତ ହୁଅନ୍ତି ବଂଧୁ ନହେଉଣୁ ଏତେ ଭାର ବେଭାର କ'ଣ ? ଆଚ୍ଛା ପେଞ୍ଚୁଆ ବୁଢ଼ା ! ପକ୍କା ବ୍ୟବସାୟୀ । ମୁହଁର କଥା କାଳେ ପବନରେ ଉଡ଼ିଯିବ ସେଇଥିପାଇଁ ଲୁଗାପଟା ବେଭାର ପଠେଇ ବାନ୍ଧି ରଖିବାର କୌଶଳ ।

ସବୁକଥା ଖୋଲିକରି ପୁଅ ପାଖକୁ ଖଣ୍ଡେ ଚିଠି ଲେଖିବେ ବୋଲି ମନେ ମନେ ଭାବିଲେ, କିନ୍ତୁ କ'ଣ ଲେଖିବେ କେଉଁ ଧାରାରେ ଲେଖିବେ, ଲେଖିଲେ ପୁଅବୋହୂ ଅମଙ୍ଗ ହେବେ ନାହିଁ କିନ୍ତୁ ସେହି ପ୍ରଣାଳୀଟା ବୋଧହୁଏ ହେମପ୍ରଭାଙ୍କୁ ଦିଶିଲା ନାହିଁ ।

ଏଣେ ବିଧାତା ପୁରୁଷ ଯେଉଁ ଯୋଗ ସୂତ୍ର କରିଛନ୍ତି ଯେଉଁ କଳ୍ପନା କରିଛନ୍ତି ତାକୁ ପକ୍କା ଖାତାକୁ ଉଠାଇବାକୁ ତାଙ୍କୁ ସମୟ ଲାଗେନା । କି ଦୁର୍ଯୋଗରେ ଏଥର ହେମପ୍ରଭା ଗାଆଁକୁ ଆସିଥିଲେ କେଜାଣି ?

ନାତି ପାଇଁ କନ୍ୟା ଦେଖି କାନ୍ତି ମୁଖାର୍ଜୀ ଯେମିତି ପ୍ରେମରେ ପଡ଼ିଯାଇଛନ୍ତି । ଆଖିରେ ଯୌବନର ଆନନ୍ଦଦୀପ୍ତି । ଦେହରେ ଯୌବନର ଫୁର୍ତ୍ତି । ବିବାହର ଦିନ ସ୍ଥିର ପାଇଁ ଯାହା ବର୍ଷେ ଦିବର୍ଷ ଅପେକ୍ଷା କିନ୍ତୁ ଅପେକ୍ଷା କରି ଲାଭ କ'ଣ । ଏବେ ସାରିଦେଲେ ବରଂ ଭଲ ହୁଅନ୍ତା । କେତେବେଳେ ଅଛି କେତେବେଳେ ନାହିଁ ।

ସାଧାରଣ ଏଇ ମାମୁଲି କଥାଟା ଯେ କାନ୍ତି ମୁଖାର୍ଜୀ ଜୀବନରେ ଏତେବଡ଼ ନିଦାରୁଣ ସତ୍ୟ ହୋଇ ଦେଖାଦେବ ଏ ଆଶଙ୍କା ତାଙ୍କ ସ୍ୱପ୍ନରେ ନଥିଲା ?

କିଏ ବା ଭାବିଥିଲା ଯମଦୂତ ବିନା ନୋଟିସ୍‌ରେ ଆସି କାନ୍ତି ମୁଖାର୍ଜୀ ଦୁଆର ମୁହଁରେ ଛିଡ଼ା ହେବେ । ଏପରି ସୁନ୍ଦର ସ୍ୱାସ୍ଥ୍ୟ- ଏମିତି ସୁଗଠିତ ହେଦ ଏମିତି ପ୍ରାଣବନ୍ତ ଉଜ୍ଜ୍ୱଳ ଚରିତ୍ର, ଏତେ ଆଶା ଆକାଂକ୍ଷାଭରା ହୃଦୟ । ମୁହୂର୍ତ୍ତକ ମଧ୍ୟରେ ସବୁର ପରିସମାପ୍ତି ଘଟିଲା । କେବଳ ହେମପ୍ରଭା ପାଇଁ ରହିଲା ଦୀର୍ଘ ପରମାୟୁ ଦୂରପନେୟ କଳଙ୍କ ।

କେବଳ ଯେ ବାହାଘର ପାଇଁ ଜବାବ ଦେଇ ସତ୍ୟବଦ୍ଧ ହେବା କଥା ନୁହେଁ । ପ୍ରତିକାର ବିହୀନ ଶୃଙ୍ଖଳରେ ବନ୍ଧା ରହିଲା ତାପସୀର ସମସ୍ତ ଭିବିଷ୍ୟତ ।

ଏତେବଡ଼ ଜଣେ ବିବେକୀ ପୁରୁଷ କାନ୍ତି ମୁଖାର୍ଜୀ, ମଲା ବେଳକୁ ଏପରି ଏକ ଅବିବେକୀ କାମ କରି ବସିବେ ସେକଥାର ସାମାନ୍ୟତମ ସୁରାକ ପାଇଥାନ୍ତେ ହେମପ୍ରଭା, ତା ହେଲେ ଏପରି ଘଟଣା ଘଟେଇବାକୁ ଦେଇ ନଥା'ନ୍ତେ ।

ଅକସ୍ମାତ ଗୁରୁତର ଅସୁସ୍ଥତାର ସଂବାଦ ବହନକରି ଯେଉଁ ଲୋକଟି ଆସିଥିଲା ସେ କେବଳ ସଂବାଦଟି ଦେଇ କ୍ଷାନ୍ତ ହେଲା ନାହିଁ ବିନୀତ ନିବେଦନ କରି କହିଲା- ମୁଖାର୍ଜୀ ମହାଶୟ କହିଛନ୍ତି ହେମପ୍ରଭା ଯେପରି ତାପସ୍ୟକୁ ନେଇ ଥରେ ମାତ୍ର ଦେଖା କରନ୍ତି । କିଂ କର୍ତ୍ତବ୍ୟ ବିମୂଢ଼ ହେମପ୍ରଭାର ସାଧ୍ୟ ନଥିଲା ଏ ଅନୁରୋଧ ଏଡ଼ାଇବାକୁ ।

କିନ୍ତୁ ସେଠାରେ ଯେ ତା' ପାଇଁ ମୃତ୍ୟୁ ବାଣ ପ୍ରସ୍ତୁତ ହୋଇ ରହିଛି ସେକଥାର ଟେର୍ ପାଇଥିଲେ ହୁଏତ ସେ କାନ୍ତି ମୁଖାର୍ଜୀଙ୍କ ଅନୁରୋଧକୁ ପ୍ରତ୍ୟାଖାନ କରିଥା'ନ୍ତା । କିଛି ଆଶଙ୍କା ତାଙ୍କର ହୋଇନାହିଁ । ଯାଇ ଦେଖିଲେ ଯେ ବିବାହର ସମସ୍ତ ବ୍ୟବସ୍ଥା ପ୍ରସ୍ତୁତ - ବାରିକ ଅଧିର ଆଗ୍ରହରେ ଅପେକ୍ଷା କରିଛି ।

କୁଶଳ ପ୍ରଶ୍ନ ଭୁଲି ହେମପ୍ରଭା ସେହି ଅଧାଚେତାଥିବା ରୋଗୀ ପାଖକୁ ଯାଇ ତୀବ୍ର ସ୍ୱରରେ କହିଲେ - ମୁଖର୍ଜେ ମହାଶୟ ଏ କି କାଣ୍ଡ କାରଖାନା ?

କାନ୍ତି ମୁଖାର୍ଜୀ ଆଖି ଖୋଲି ମୃଦୁ ହସି ଧୀର କଣ୍ଠରେ କହିଲେ — ଠିକ୍ ହୋଇଛି ଭଉଣୀ ଏ ହେଉଛି ବିଧାତାର ବିଧାନ !

— କିନ୍ତୁ ତାର ବାପ ମାଆ ଏ ଖବର ଜାଣିବା ପର୍ଯ୍ୟନ୍ତ ହେଲା ନାହିଁ । ମୁଁ ତାଙ୍କୁ କେଉଁ ହିସାବରେ ମୁହଁ ଦେଖାଇବି ? କ'ଣ କହି ତାଙ୍କୁ ବୁଝେଇବି ?

— ଅବସ୍ଥାଟା ଖୋଲି କରି କହିବେ । ସେ ନିଶ୍ଚୟ ବୁଝିବେ । ଆପଣଙ୍କର ପୁଅ ବୋହୂତ ମୂର୍ଖ ନୁହଁନ୍ତି ସେ ନିଶ୍ଚୟ ବୁଝିବେ । ମଣିଷ ନ ମଲା ପର୍ଯ୍ୟନ୍ତ ସ୍ୱଭାବ ଛାଡ଼େ ନାହିଁ । ସେଇଥି ପାଇଁ ବୋଧହୁଏ ପରିହାସ ରସିକ କାନ୍ତି ମୁଖାର୍ଜୀ ମୃଦୁ ପରିହାସ

ସ୍ୱରରେ କହିଲେ ସବୁଦୋଷ ମୋ ଉପରେ ଲଦିଦେବ । ମତେ ତ ଆଉ ଧରି ନେଇ ଜେଲରେ ଭର୍ତ୍ତି କରି ଦେବେ ନାହିଁ । ଆଉ କହିବେ ସେମାନଙ୍କ ଠାରୁ କ୍ଷମା ଚାହିଁଛନ୍ତି କାନ୍ତି ମୁଖାର୍ଜୀ । ଅସମୟରେ ଡାକରା ଆସିଗଲା - କ'ଣ କରିବି କୁହ ଭଉଣୀ ?

ଏକଥାର ଆଉ କି ଉତ୍ତର ଦେବେ ହେମପ୍ରଭା ?

ମୁଦି ହୋଇଥିବା ନିଷ୍ପ୍ରଭ ଆଖି ଦୁଇଟିରେ ଧରାପଡ଼ିଲା ହେମପ୍ରଭାର ଅସହାୟଭାବ ହତାଶ ମୁହଁର ଛବି । ସେଇଥିପାଇଁ ବୋଧହୁଏ କିଛିକ୍ଷଣ ସ୍ଥିର ରହି କ୍ଷୀଣ ସ୍ୱରରେ କହିଲେ- ଆପଣଙ୍କର ଚିନ୍ତା କରିବାର କିଛି ନାହିଁ । ମୁଁ କଥା ଦେଉଛି- ସେମାନେ ସୁଖୀ ହେବେ ଆମ ବୁଲୁ ଅତି ଭଲ ପିଲା କିନ୍ତୁ ହତଭାଗାଟା ! ସେଇଥିପାଇଁ ଲକ୍ଷ୍ମୀପ୍ରତିମା ସାଙ୍ଗରେ ତାକୁ ଛନ୍ଦିଦେଲି । ମୁରବୀ ମଧ ଠିକ୍ କରିଦେଇଗଲି । ମୁଁ ଆଖି ବୁଜିଲେ ତାର ସାହା ଭରସା ପୃଥିବୀରେ କେହି ନାହିଁ ।

କ୍ଳାନ୍ତିରେ ଦୁଇ ଚକ୍ଷୁ ବୁଜି ହୋଇଆସିଲା । ଏଣେ ବିବାହର ଅନୁଷ୍ଠାନ ଆରମ୍ଭ ହୋଇଯାଇଛି । କ୍ରନ୍ଦନରତା କନ୍ୟାକୁ ଅନେକ ବୁଝେଇ ସୁଝେଇ ଚୁପ କରେଇଛନ୍ତି ହେମପ୍ରଭା । କିନ୍ତୁ ହୃଦୟଭିତରୁ ବାରମ୍ବାର କ୍ରନ୍ଦନର ଉଚ୍ଛ୍ୱାସ ଗଳା ପର୍ଯ୍ୟନ୍ତ ଚାଲି ଆସୁଥିଲା ତାପସୀର । ସେ ତ ନିଜର ହିତାହିତ କଥା ଭାବି ପାରୁ ନଥିଲା, କେବଳ ଭାବୁଥିଲା ଚିତ୍ରଲେଖା ଜାଣିଲା ପରେ କ'ଣ ହେବ ତା'ର ଅବସ୍ଥା ଏଇକଥା ଭାବି ତାର ସର୍ବାଙ୍ଗ ବରଫ ପାଲଟି ଯାଉଥିଲା । ତାପସୀ ନିଜେ ଭାବୁଥିଲା ସେ ଯେପରି ଭୟାନକ ଅପକର୍ମ କରୁଛି ।

କାନ୍ତି ମୁଖାର୍ଜୀ ମୃତ୍ୟୁବରଣ କଲେ ପରଦିନ ସନ୍ଧ୍ୟାରେ । ଫୁଲଶଯ୍ୟା ହେଲା ନାହିଁ । ସିନ୍ଥିରେ ସିନ୍ଦୂରଗାର ଟାଣି ଜେଜେମା ସାଙ୍ଗରେ ଫେରି ଆସିଲା ତାପସୀ । ସାହି ପଡ଼ିଶାର ଗୃହିଣୀମାନେ କହିଲେ ଭଗବାନଙ୍କର ଖେଳ...ଭବିତବ୍ୟ ! ଭଟ୍ଟାଚାର୍ଯ୍ୟଙ୍କ ସ୍ତ୍ରୀ ଆଶ୍ୱସନା ଦେଇ କହିଲେ ବିଧାତାର ନିର୍ଦ୍ଦିଷ୍ଟ ବିଧାନ, ଆମେ ସବୁ ନିମିତ୍ତ ମାତ୍ର ।

କିନ୍ତୁ ହେମପ୍ରଭା କୌଣସି କଥାରେ ସାନ୍ତ୍ୱନା ଖୋଜି ପାଇଲେ ନାହିଁ ।

ପୁଅବୋହୂଙ୍କୁ କେମିତି ମୁହଁ ଦେଖେଇବେ, କ'ଣ ଉତ୍ତର ଦେବେ ସେମାନଙ୍କୁ । କାହିଁକି କିଛି ଗୋଟାଏ କଠିନ ରୋଗ ଧରୁନାହିଁ ହେମପ୍ରଭାଙ୍କୁ ? କାନ୍ତି ମୁଖାର୍ଜୀପରି । ହାଏ ଏତେ ବଡ଼ ସୌଭାଗ୍ୟ ହେବ ହେମପ୍ରଭାର ?

ଘଟଣାଟା ଏପରି ଯେ ତାକୁ ଲୁଚେଇ ରଖିହେବ ନାହିଁ କି ଗୋପନରେ କେଉଁଠି ଫୋପାଡ଼ି ଦେଇ ହେବ ନାହିଁ ।

ଅନେକେ ଭାବିଚିନ୍ତି ପୁଅ ପାଖକୁ ଗୋଟିଏ ଜରୁରୀ ଟେଲିଗ୍ରାମ କଲେ ''ମା'' ମୃତ୍ୟୁ ଶଯ୍ୟାରେ ଶେଷ ଦେଖା କରିବାକୁ ଇଚ୍ଛାଥିଲେ ଶୀଘ୍ର ଆସ'' । ଏଇ ଟେଲିଗ୍ରାମ ପଠେଇ ଦେଇ ଭଗବାନଙ୍କ ନିକଟରେ ଅବିରତ ପ୍ରାର୍ଥନା କରିବାକୁ ଲାଗିଲେ କଳ୍ପିତ

ରୋଗ ଯେମିତି ସତ୍ୟ ହୋଇ ତାଙ୍କ ଠାରେ ପ୍ରକାଶ ପାଉ, ମନୀନ୍ଦ୍ର ଆସି ଦେଖୁ ମା' ପ୍ରକୃତିରେ ମୃତ୍ୟୁ ଶଯ୍ୟାରେ ।

ଅପରାଧୀନୀ ମା'କୁ ସେ ମୁହୂର୍ତ୍ତରେ କ୍ଷମା ଦେବାଟା ବୋଧହୁଏ ଅସମ୍ଭବ ହେବ ନାହିଁ ମନୀନ୍ଦ୍ର ପକ୍ଷରେ ।

ଏଥର ବିଦେଶକୁ ଆସି ଚିତ୍ରଲେଖାର ମନଟା ବିଚଳିତ ହେଉଥିଲା । ପୁଅ ଝିଅମାନଙ୍କୁ ସାଙ୍ଗରେ ନ ଆଣି ତାଙ୍କୁ ଯେ ଏତେ ଖରାପ ଲାଗିବ ସେକଥାଟା ସେ ଆଗରୁ ଜାଣି ପାରି ନଥିଲେ । ସେମାନେ ପାଖରେ ନରହିଲେ ତାଙ୍କ ସ୍ୱରୂପ ପ୍ରକାଶ କରିବାର ଉପାୟ କ'ଣ ? କେବଳ ନିଜକୁ ନେଇ କେତେଟା ଆଉ ପ୍ରକାଶ ପାଇବ ? କେତେବା ଆଉ ତିନି ତିନିବେଳା ସାଜସଜା ହେବେ । ଝିଅକୁ ତାଲିମ ଦେଇ ଗଢ଼ିବାର ଯେଉଁ କଳ୍ପନା ସେ କଳ୍ପନା କଳ୍ପନାରେ ହିଁ ରହିଗଲା ।

ଏଥର ପ୍ରତିବେଶୀ ହସିାବରେ ନୁହେଁ, ସାନଖୁଡ଼ୀଙ୍କ ସଂସାରରେ ପୂରା ଆଶ୍ରୟ ନେବାକୁ ପଡ଼ିଛି । ଅବଶ୍ୟ ପେୟିଙ୍ଗ ଗେଷ୍ଟ ହସିାବରେ । ଆସିବା ପର୍ଯ୍ୟନ୍ତ ସାନକକା ଖଣ୍ଡେ ଘର ଯୋଗେଇ ଦେବେ ବୋଲି କହିଥିଲେ କିନ୍ତୁ ଶେଷ ପର୍ଯ୍ୟନ୍ତ ଆଉ ଘର ମିଳିଲା ନାହିଁ । ସାନଖୁଡ଼ୀ ତାଙ୍କ ଭିଣେଇର ଆବଶ୍ୟକତାକୁ ତ ଆଉ ଗୋଡ଼ରେ ଠେଲି ଦେଇ ନଥା'ନ୍ତେ । କିନ୍ତୁ ଅଗତ୍ୟା ଭିଣେଇ ଏବଂ ତାଙ୍କ ସ୍ତ୍ରୀ ଆସି ପହଁଞ୍ଚିଲେ ସେମାନଙ୍କୁ ଭଡ଼ାଘରେ ନେଇ ରଖେଇବାକୁ ପିଡ଼ିଲା । ଚିତ୍ରଲେଖାକୁ ଆଶ୍ରୟ ନେବାକୁ ପଡ଼ିଲା ସାନ ଖୁଡ଼ୀଙ୍କ ଘରେ । ଚିତ୍ରଲେଖାତ କିଛି, ଦୀନ ଦରିଦ୍ର ନୁହେଁ ଯେ ବିନା ମୂଲ୍ୟରେ ଅନ୍ନ ଭୋଜନ କରିବ । ନିଜପାଇଁ ଯାହା ଖର୍ଚ୍ଚ ଲାଗେ ସେ ଅନ୍ତତଃ ଦେଇ ଦିଏ । କିନ୍ତୁ ସେଥିରେ ଶାନ୍ତି କାହିଁ ସୁଖ କାହିଁ ?

ସାନକକାଙ୍କ ସେହି କାଳି ଝିଅଟା ଯେତେବେଳେ ନାଚି ଗାଇ ଆସର ଜମେଇ ଦିଏ ସାହିର ଲୋକମାନେ ମଧ ବାହାବା ଅଜାଡ଼ି ଦିଅନ୍ତି । ସାନଖୁଡ଼ୀଙ୍କର ଭଉଣୀ ମଝିରେ ମଝିରେ ଯେତେବେଳେ ବୁଲିବାକୁ ଆସନ୍ତି ଭଉଣୀ ଝିଅର ନାନା ଗୁଣର ପ୍ରଶଂସା କରି ଆନନ୍ଦମୁଖର ହୋଇ ଉଠନ୍ତି । ସେତେବେଳେ ଚିତ୍ରଲେଖାର ସର୍ବାଙ୍ଗ ଶରୀର ଈର୍ଷାରେ ଜଳି ଉଠେ ।

ତାପସୀ ଯଦି ପାଖରେ ଥା'ନ୍ତା ତେବେ ତାକୁ ଥରେ ଦେଖେଇ ଦେଇ ଏବଂ ବଡ଼ିମା ଭାଙ୍ଗିଦିଅନ୍ତି । କିନ୍ତୁ ସେତକ ହେଉଛି କେଉଁଠି ? ଏ କଣ କମ ଅବଶୋଷର କଥା ! ତାପସୀ ଆଉ ଲିଲି ଭିତରେ ଆକାଶ ପାତାଳ ପ୍ରଭେଦ । ତାପସୀର ପାଦଧୂଳିକୁ ସରିହେବ ନାହିଁ ଲିଲି । ଅନ୍ଧପୁଅର ନାଆଁ ପଦ୍ମଲୋଚନ ପରି । ଯୋଉ ରୂପ ତ ସେଥିରେ ପୁଣି ନିତି ନିତି ନୂଆ ନୂଆ ପୋଷାକର ଛଇ ଛଟକ । ଉଦ୍ଦେଶ୍ୟ ବୋଧହୁଏ ଚିତ୍ରଲେଖାକୁ ଆଶ୍ଚର୍ଯ୍ୟ କରିଦେବା । ଅବଶ୍ୟ ଚିତ୍ରଲେଖା ଏତେ ନିର୍ବୋଧ ନୁହେଁ ଯେ

ସେ ଆଶ୍ଚର୍ଯ୍ୟ ହୋଇଯିବ । ଲିଲି ତୁଳନାରେ 'ବେବି' ଅର୍ଥାତ୍ ତାପସୀର ଯେ କେତେ ଅଜସ୍ର ପୋଷାକ ରହିଛି ସେ କଥା ଗଳ୍ପଛଳରେ କହି ପକାନ୍ତି ଚିତ୍ରଲେଖା ।

ଯଥା— ଏତେ ରକମର ଜାମା ଜୋତା କରିଦେଉଛି ହେଲେ ସୃଷ୍ଟି ଛଡ଼ା ଝିଅଟା ସବୁବେଳେ ନାକଟେକା । କିନ୍ତୁ ଲିଲିକୁ ଯାହା ଦେଲେ ବି ସେ ଖୁସିରେ ସବୁ ପିନ୍ଧି ପକାଉଛି ।

ଗୀତ ଗାଇବା ପାଇଁ ବେବି ଯେଉଁ ମେଡଲ ଗୁଡ଼ା ପାଇଛି ସେଗୁଡ଼ା ଅବଶ୍ୟ ଆଣିବା କଥା ନୁହେଁ କିନ୍ତୁ କେମିତି କେଜାଣି ସୁଟକେଶ୍‌ରେ ଚାଲି ଆସିଛି । ତେବେ ପାଞ୍ଚଜଣଙ୍କୁ ଦେଖେଇଲେ କ୍ଷତି କ'ଣ ? ସେ'ତ ସବୁବେଳେ ଆଉ ମେଡ଼ଲ ପାଉନାହିଁ । ରେଡ଼ିଓ କମ୍ପାନୀ ତ ଚିତ୍ରଲେଖା ଘରକୁ ବାରମ୍ବାର ଦୌଡ଼ିଛନ୍ତି କିନ୍ତୁ ଚିତ୍ରଲେଖାର ଇଚ୍ଛା ନୁହେଁ ତୁଚ୍ଛ କାରଣରେ ଝିଅ ଗଳାନକଷ୍ଟ କରୁ । କିନ୍ତୁ 'ହିଜମାଷ୍ଟରସ୍ ଭୟେସ' କମ୍ପାନୀକୁ ପଠାଇଲେ ଚଳନ୍ତା । ସାନଖୁଡ଼ୀ ଆଉ ତାଙ୍କ ଭଉଣୀଙ୍କର ଦୁର୍ଭାଗ୍ୟ ଯେ ସେମାନଙ୍କୁ ସେ ବେବିର ମଧୁର କଣ୍ଠ ସଙ୍ଗୀତ ଶୁଣେଇ ପାରିଲା ନାହିଁ ।

ପ୍ରଥମେ ପ୍ରଥମେ ନାନାପ୍ରକାର ଗପ ସପ କରି ଆନନ୍ଦ ମିଳୁଥିଲା ବର୍ତ୍ତମାନ ଯେମିତି ସେତକ ଯିବାକୁ ବସିଲାଣି । ମନୀନ୍ଦ୍ର ବି ଚିତ୍ରଲେଖାର ବାଜେଗପ ଶୁଣିବାକୁ ଆଗ୍ରହ ପ୍ରକାଶ କରୁନାହାନ୍ତି ।

ଓଃ ଟିକେ ଶୁଣ ! ଏହାପରେ ଯେ ଆହୁରି କ'ଣ ମନୀନ୍ଦ୍ର ପାଟିରେ ପଶିବ ସେ କଥା ଚିତ୍ରଲେଖା ଜାଣିପାରେନା । ବୁଢ଼ା ହେବାକୁ ଯେ ମନୀନ୍ଦ୍ରର ଆଉ ବିଶେଷ ବାକି ନାହିଁ ସେକଥା ଧରାପଡ଼େ ବୁଦ୍ଧିଭ୍ରଂଶ କଥାବାର୍ତ୍ତାରୁ । ସଂସାରରେକ'ଣ ଅଛି କ'ଣ ନାହିଁ ମନୀନ୍ଦ୍ର ସେ କଥା କ'ଣ କିଛି ବୁଝନ୍ତି ନା ବେବିର ଗୁଣଗ୍ରାମର ହିସାବ କିଛି ରଖନ୍ତି । ତେବେ ଇଆଡୁ ସିଆଡୁ ଟିକିଏ କହି ଚିତ୍ରଲେଖାକୁ ହସେଇବାର ଉଦ୍ଦେଶ୍ୟ କ'ଣ ?

ଏମିତି ଏକ ଅସମୟରେ ହେମପ୍ରଭାଙ୍କର ଟେଲିଗ୍ରାମ ଆସି ପହଞ୍ଚିଲା ।

ଅନ୍ୟସମୟ ହୋଇଥିଲେ ଚିତ୍ରଲେଖା ହୁଏତ ଶାଶୁର ଏପରି ବେହଡା ବ୍ୟବହାରରେ ରାଗରେ ଜଳିଉଠିଥା'ନ୍ତା କିନ୍ତୁ କଲିକତା ଫେରିଯିବା ପାଇଁ ଏ ଗୋଟାଏ ଉପଲକ୍ଷ୍ୟ ମିଳିଗଲା ।

ଟେଲିଗ୍ରାମ୍‌ଟା ଦୁଇତିନିଥର ପଢ଼ି ମନୀନ୍ଦ୍ର ବୋଧହୁଏ ମା' ଅସୁଖର ଗୁରୁତ୍ୱଟା ନିର୍ଣ୍ଣୟ କରିବାକୁ ଚେଷ୍ଟା କରୁଥିଲେ । ଚିତ୍ରଲେଖା ପଚାରିଲା ତାହେଲେ ଯିବନା କ'ଣ ?

— ଯିବି ନାହିଁ ! ମନୀନ୍ଦ୍ର ଅବାକ୍ ହୋଇ ଚାହିଁଲେ । ଅବଶ୍ୟ କିଛି ବୀରକ୍ତିର ସୂଚନା ପ୍ରଶ୍ନରୁ ଜଣାପଡୁଥିଲା ।

– ହଁ ଯିବିତ ନିଶ୍ଚୟ, ପ୍ରଶ୍ନ କରିବାଟା ମୋର ଅନ୍ୟାୟ ହୋଇଛି । ମୁଁ ଭାବୁଛି ଏବେ ଚାଲିଗଲେ ହୁଅନ୍ତା । ମତେ କଲିକତାରେ ଛାଡ଼ିଦେଇ ତମେ ଅନ୍ୟ ଟ୍ରେନ୍‌ରେ ଚାଲିଯାଆନ୍ତ ।

ମନୀନ୍ଦ୍ର ବୋଧହୁଏ ସାଧାରଣଭାବେ ଆଶା କରିଥିଲା ମାଆର ମୃତ୍ୟୁଶଯ୍ୟା ନିକଟରେ ସସ୍ତ୍ରୀକ ଉପସ୍ଥିତ ହେବ କିନ୍ତୁ ଚିତ୍ରଲେଖାର ପ୍ରସ୍ତାବ ଶୁଣି ସେ ହତାଶ ହେଲା । କର୍ତ୍ତବ୍ୟବୋଧ ଜାଗ୍ରତ କରିବାର ଦୂରାଶା ଅବଶ୍ୟ ନାହିଁ । ତଥାପି କ୍ଷୀଣ କଣ୍ଠରେ ପ୍ରତିବାଦ କଲା ତୁମେ ଥରେ ନ ଯବାଟା କ'ଣ ଭଲ ହେବ ? ଯଦି ମାଆର କିଛି ହୋଇଯାଏ.... ଯେତେହେଲେ ମାଆତ ! ମାଆ ସଂପର୍କରେ ଅକଲ୍ୟାଣକର କଥା ଉଚ୍ଚାରଣ କରିବାକୁ ମନୀନ୍ଦ୍ରକୁ ବାଧିଲା ।

ଚିତ୍ରଲେଖାର ଅବଶ୍ୟ ଜାଣିବାକୁ ବାକି ନାହିଁଯେ ମନୀନ୍ଦ୍ରର ପ୍ରାଣଟା କାହାପାଇଁ ଛଟପଟ ହେଉଛି । ଯେହେତୁ ଚିତ୍ରଲେଖା ସହିତ ମା'ର ସଂପର୍କଟା ଆଦୌ ମଧୁର ନୁହେଁ ସେଇଥିପାଇଁ ନିଜ ସ୍ତ୍ରୀ ଆଗରେ ମାଆ' ଉଚ୍ଚାରଣ କରିବାକୁ ଭଲ ମନେ କରେ ନାହିଁ । ତେବେ ଚିତ୍ରଲେଖାର ଶାଶୁ ପ୍ରତି ସେତେ ସହାନୁଭୂତି ନାହିଁ । ଅଗ୍ରାହ୍ୟର ଭଙ୍ଗୀରେ ଚିତ୍ରଲେଖା କହିଲା ତୁମେ ଯେତେ ସିରିୟସ ଭାବୁଛ ମୁଁ ତ କାହିଁକି ସେପରି କିଛି ଭାବି ପାରୁନାହିଁ । ନରମା ଲୋକ ଟିକିଏ କଥାରେ ବ୍ୟସ୍ତ ହୋଇପଡ଼ିବା ସ୍ୱଭାବ । ହୁଏତ ସାମାନ୍ୟ କିଛି ହୋଇଛି ସେଥିରେ ଏକାଥରକେ ଟେଲିଗ୍ରାମ !

– ବେଶୀ ଯେ କିଛି ହୋଇ ନାହିଁ ତାର କ'ଣ ତୁମେ ପ୍ରମାଣ ପାଇଛ ?

– ପ୍ରମାଣ ଆଉ କ'ଣ ? ନିଜ ଧାରଣାରୁ ମୁଁ ଜାଣି ପାରୁଛି । ତମର କେବଳ ତର୍କ, ସବୁ କଥାରେ ତର୍କ । ତୁମ ମାଆ କଥାଟା ତୁମେ ଭଲ ବୁଝିପାର ଆଉ କେହି ବୁଝିପାରନ୍ତି ନାହିଁ । ଏତେ ଯଦି ବ୍ୟଗ୍ର ହେଉଛ ତାହେଲେ ବର୍ଦ୍ଧମାନରେ ଓହ୍ଲେଇ ପଡ଼ି କୁସୁମହାଟ ଚାଲିଯିବ । ହାଓଡ଼ା ଷ୍ଟେସନରୁ ଟ୍ୟାକ୍ସି ଖଣ୍ଡେ ଭଡ଼ା କରି ଘରକୁ ଚାଲିଯିବା ମୋ ପକ୍ଷରେ ବିଶେଷ କଷ୍ଟକର ନୁହେଁ ।

– ତାହେଲେ ଗାଆଁକୁ ତମେ ଯିବ ନାହିଁ ବୋଲି ଠିକ୍ କରି ନେଇଛ । କାମଟା କେମିତି ହେବ ସେଇକଥା ଭାବୁଛି ।

ଚିତ୍ରଲେଖା ଟିକିଏ ନରମ ସ୍ୱରରେ କହିଲା ତୁମେ ଗାଆଁରେ ପହଞ୍ଚି ଅବସ୍ଥା ଦେଖି ଗୋଟାଏ ଟେଲିଗ୍ରାମ କରିଦେବ । ଦରକାର ହେଲେ ମୁଁ ଯାଇ ପହଞ୍ଚିଯିବି । ପହଞ୍ଚିବାଟା ବିଶେଷ କିଛି କଷ୍ଟକର କଥା ନୁହେଁ । ତମେ ଯେ କହୁଛ ଏଇ ସାଙ୍ଗେ ସାଙ୍ଗେ ବାହାରିଯିବାକୁ ସେଟା ମୋ ପକ୍ଷରେ ଏତେ ସହଜ ନୁହେଁ । ଦୁନିଆ ଜିନିଷ ପତ୍ର ଅଛି ତାକୁ ସବୁ ବନ୍ଧା ବନ୍ଧି କରି ନେବାକୁ ପଡ଼ିବ ।

ଦୋଷାରପ କରିବା ଭଙ୍ଗିରେ ମନୀନ୍ଦ୍ର କହିଲା ମୁଁ ସେତେବେଳେ କହୁଥିଲି ପିଲାଛୁଆତ ଯିବେ ନାହିଁ ଏତେଗୁଡ଼େ ଜିନିଷ କାହିଁକି ନେବା । ଦିଜଣଙ୍କ ପାଇଁ ସାତଟା ସୁଟକେଶ୍, ଦିଟା ବେଡ଼ହୋଲ୍ଡର ।

— ସେ କଥା ତୁମେ କହିବ ଜାଣେ, ସାନକକାଙ୍କ ଘରେ ରହିଲେ ବୋଲିସିନା, ସବୁ ଲଗେଜଗୁଡ଼ା ତୁମକୁ ବହୁତ ଜଣାପଡୁଛି । ଗୋଟାଏ ସଂସାର ମ୍ୟାନେଜ କରିବାକୁ ହେଲେ କେତେ କ'ଣ ଲାଗେ ସେ କଥା ତୁମେ କ'ଣ ଜାଣ ? ତା ଛଡ଼ା ଛୋଟଲୋକଙ୍କ ପରି ଖଣ୍ଡିଏ ବ୍ଲାଉଜକୁ ପ୍ରତିଦିନ ପିନ୍ଧୁଥିବି ସେଟା ମୋର ପ୍ରକୃତି ନୁହେଁ । ସେ କଥା କ'ଣ ତୁମକୁ ଅଜଣା ଅଛି ? ସ୍ୱାମୀ ସାଙ୍ଗରେ ଦିମିନିଟ୍ ପ୍ରେମାଳାପ କରିବାକୁ ଚିତ୍ରଲେଖା କଥା ଆରମ୍ଭ କଲାବେଳେ, ସ୍ୱାମୀର କଥା ଶୁଣିଲେ ତା ଦେହ ଜଳି ଉଠେ । ଲୋକଟା ଉପରେ ଯେତେ ଆଧୁନିକ ପୋଷାକ ପିନ୍ଧିଲେ କ'ଣ ହେବ ଭିତରେ ଭିତରେ ଗୋଟାଏ ଗାଁଉଲିଆ ଭାବ ରହିଯାଇଛି । ଯାହାକି ବେଳେ ବେଳେ ଉଙ୍କିମାରେ ବିଶେଷ କରି ଚିତ୍ରଲେଖାର ଆଖିରେ ଧରାପଡ଼ିଯାଏ ।

ଚିତ୍ରଲେଖା ଉଠି ଚାଲିଯିବାର କିଛି ସମୟପରେ ସାନଖୁଡ଼ୀଙ୍କର । ଆବିର୍ଭାବ ଘଟିଲା ବୟସରେ ଚିତ୍ରଲେଖା ଠାରୁ ସାମାନ୍ୟ କିଛି ବର୍ଷ ବଡ଼ । ତେବେ ଚାଲିଚଲଣ ପୋଷାକ ପରିଚ୍ଛଦରୁ ବୟସଟା ଜଣାପଡ଼େନାହିଁ । ଚଷମା କାଚ ପୋଛୁ ପୋଛୁ ସେ ଆସି ମନୀନ୍ଦ୍ର ସାମନାରେ ଠିଆ ହେଲେ ।

ପୂଜନୀୟା ଖୁଡ଼ୀଶାଶୁ - ମନୀନ୍ଦ୍ର ଧଡ଼ ପଡ଼ ହୋଇ ନିଜ ଆସନରୁ ଉଠିବାର ଭାବ ପ୍ରଦର୍ଶନ କଲେ କିନ୍ତୁ ଉଠିଲେ ନାହିଁ । ମଜା-ଘଷା ଗଳାରୁ ଅନୁଯୋଗର ସ୍ୱର ଝଙ୍କୃତ ହେଲା — ଏଟା ତୁମର ଅନ୍ୟାୟ ମନୀନ୍ଦ୍ର । ବେଶୀ ହେଉ କମ ହେଉ ତୁମ ମାଆଙ୍କର ଦେହ ଖରାପ- ତୁମେ ଯିବ, ଯିବା ତ ଉଚିତ କିନ୍ତୁ ସେ ବିଚାରିକି ନିପଟ ମଫସଲକୁ ଟାଣିନେବା କି ଦରକାର ? ମନୀନ୍ଦ୍ର ଗମ୍ଭୀର କଣ୍ଠରେ କହିଲା- ମୁଁ ତ ତାକୁ ଯିବା ପାଇଁ କହିନାହିଁ ।

— ଇଚ୍ଛା ପ୍ରକାଶ କରିଛ ତ ! ସେଇଟା ମଧ୍ୟ କହିବା ସହିତ ସମାନ । ଆମର ଇଚ୍ଛା ନୁହେଁ ସେ ଏଠୁ ଶୀଘ୍ର ଚାଲିଯାଉବୋଲି କାରଣ ଏଠିକି ଆସିବା ପରେ ତା ସ୍ୱାସ୍ଥ୍ୟ ଟିକିଏ ଇମ୍‌ପ୍ରୁଭ କରିଛି । ତେବେ ତୁମର ମତାମତ ଉପରେ କୌଣସି ହସ୍ତକ୍ଷେପ କରିବାକୁ ମୁଁ ଚାହେଁ ନାହିଁ । ତୁମ କକାବାବୁ କହୁଥିଲେ - ପରେ ଆମ ସାଙ୍ଗରେ ଗଲେ ଭଲ ହୁଅନ୍ତା ।

ବୁଝାଗଲା କକାବାବୁଙ୍କର ଦୂତ ହିସାବରେ ସେ ଆସିଛନ୍ତି । ନିତ୍ୟାନ୍ତ କର୍ତ୍ତବ୍ୟର ତାଡ଼ନାରେ । ତା ନହେଲେ ଏ ସବୁ ଝଞ୍ଜାଳକୁ ମୁଣ୍ଡେଇବାକୁ ତାଙ୍କୁ କ'ଣ ଭଲ ଲାଗୁଛି । ଅବଶ୍ୟ ଆଶ୍ଚର୍ଯ୍ୟଜନକ ! ପୂର୍ବରୁ ସାନଖୁଡ଼ୀଙ୍କ ପ୍ରତି ଚିତ୍ରଲେଖାର ଦୃଷ୍ଟିଟା ଥିଲା ବିମୁଗ୍ଧ,

ମନୋହର ସେତେବେଳେ ଦେଢ଼ଶୁରର ଝିଅକୁ ଖୁବ୍ ପସନ୍ଦ କରୁଥିଲେ ଭଦ୍ର ମହିଳା । କିନ୍ତୁ ବର୍ତ୍ତମାନ ଚିତ୍ରଲେଖା ଖୁଡ଼ୀ ସାଙ୍ଗରେ ପ୍ରତିଯୋଗିତା ଆରମ୍ଭ କରିଦେଇଛି । ଯାହାଫଳରେ ପସନ୍ଦଟା ବଜାୟ ରଖିବା ଦୁଷ୍କର । ତେବେ ଉପର ଦେଖାଣିଆ ସଭ୍ୟତାଟା ତାହାର ବହୁତ ଅଛି । ଯେଉଁଟା କି ଚିତ୍ରଲେଖା ଖୁଡ଼ୀପାଖରୁ ଶିଖିନେଇପାରେ ।

ଶାଶୂ-ଜନୋଚିତ ମର୍ଯ୍ୟାଦା ରକ୍ଷା କରନ୍ତି ଜ୍ୱାଇଁ ପାଖରେ—ଝିଅକୁ ଆଉ କିଛି ଦିନ ଏଠାରେ ରହିବା ପାଇଁ ଅନୁରୋଧ କରି ।

ମନୀନ୍ଦ୍ର ଏତେବେଳଯାଏ ଅତିଷ୍ଠ ବୋଧ କରୁଥିଲେ । ଏଥର ପୂର୍ଣ୍ଣଛେଦ ପକାଇବା ପାଇଁ କହିପକେଇଲେ ଭଲହେଲା ସେ ଆପଣମାନଙ୍କ ପାଖରେ ଥାଉ ସେଥିରେ ଆପତ୍ତି କରିବାର କ'ଣ ଅଛି । ଆଜି ରାତି ଗାଡ଼ିରେ ମୁଁ ଚାଲିଯିବି ।

ଖୁଡ଼ୀଶାଶୁ ଅବଶ୍ୟ ଦ୍ୱନ୍ଦ୍ୱରେ ପଡ଼ିଲେ । ଦୂତ ହିସାବରେ ଆସିଥିଲେ, ତା ବୋଲିତ ନିଜସ୍ୱ ଇଚ୍ଛାଟାକୁ ତ ଆଉ ବିସର୍ଜନ ଦେଇ ଆସି ନାହାନ୍ତି । ସେଇଥିପାଇଁ ଆହୁରି ମଧୁର ଆହୁରି ଆମାୟିକ ସ୍ୱରରେ କହିଲେ- ଅବଶ୍ୟ ଜୀବନ-ମରଣର କଥା କିଛି କହିହେବ ନାହିଁ । ଚିତ୍ରସଙ୍ଗରେ ତୁମ ମାଆଙ୍କର ଯେ ଶେଷସାକ୍ଷାତ ହେବନାହିଁ - ଏଟା ଯେପରି ନ ହୁଏ, ଜୋର ଜରି ମୁଁ ଅଟକେଇବାକୁ ଚାହୁଁନାହିଁ ।

— ନାଁ ଆପଣଙ୍କର ଆଉ ଦୋଷକ'ଣ, ସେ ନିଜେ ଯାହା ବିବେଚନା କରିବେ । ଏତକ କହି ମନୀନ୍ଦ୍ର ଚୁରୁଟ୍ ପାଇପ୍‌ଟାକୁ ଟେବୁଲ ଉପରେ ଅନ୍ୟମନସ୍କଭାବେ ଠକ୍ ଠକ୍ କରିବାକୁ ଲାଗିଲେ । ଚିତ୍ରଲେଖା କ'ଣ ଖାଲି କହେ ଭିତରେ ଭିତରେ ଗାଉଁଲିଆ ଭାବ ଯାଇନାହିଁ ବୋଲି । ଶାଶୂ ଶ୍ୱଶୁରଙ୍କ ସାମନାରେ ଚୁରୁଟ୍‌ପାଇପ୍ ଧରିବାକୁ କିଏ ଶିଖେଇଛି ?

ଟେଲିଗ୍ରାମ୍‌ଟା ପଠେଇଦେଇ ହେମପ୍ରଭା ଘରୁ-ବାହାର ବାହରୁ-ଘର ହେଉଥା'ନ୍ତି । କ'ଣ କହିବେ କ'ଣ କରିବେ ? ଆସିବାମାତ୍ରେ କାନ୍ଦିକାଟି ପୁଅବୋହୂଙ୍କ ହାତଧରି କ୍ଷମା ଚାହିଁବେ ? ନାଁ ରୋଗରେ ପଡ଼ିଛନ୍ତି ବୋଲି ପେଖନା କାଢ଼ି ବିଛଣାରେ ଶୋଇ ରହିବେ ? ନହେଲେ ତାପସୀ ମଥାର ସିନ୍ଦୁରକୁ ଢ଼ାଙ୍କି ପକେଇଲା ଭଳିଆ ବଙ୍କା ସିନ୍ଥି କାଟିଦେବେ । ନହେଲେ ପୁଅମାନଙ୍କୁ ଆଉ ଚାକର ବାକରଙ୍କୁ ଶିଖେଇ ଦେବେ ସେମାନେ ଯେପରି କୌଣସି କଥା ପ୍ରକାଶ କରିବେ ନାହିଁ । ଧୀରେ ଧୀରେ ମିଂଜାସ ବୁଝି.... କିନ୍ତୁ ତାପରେ ? ତା' ପରେ କ'ଣ କହିବେ ହେମପ୍ରଭା ଏକଥା ଭାବିଲାବେଳକୁ ତାଙ୍କର ବୁଦ୍ଧିବୃତିସବୁ ନିସ୍ତେଜ ହୋଯାଏ ।

ବର୍ତ୍ତମାନ ଯୁଗରେ ଦେବାତମାନେ ଯେ ବଧିର ଏ ବିଷୟରେ ଆଉ ସନ୍ଦେହ କ'ଣ ? ହେମପ୍ରଭାର ଏତେ ପ୍ରାର୍ଥନା ବିଫଳ ହୋଇ ସ୍ୱାଭାବିକ ନିୟମରେ ଦିନରାତି

ଆବର୍ତ୍ତିତ ହେବାକୁ ଲାଗିଲା, ହେମପ୍ରଭାର ହାର୍ଟଫେଲ୍ ହେଲା ନାହିଁ, ଦୈବ ଦୁର୍ଘଟଣା ଘଟିଲାନାହିଁ । ସାମାନ୍ୟ ଜ୍ୱର ପର୍ଯ୍ୟନ୍ତ ବି ହେଲାନାହିଁ ।

ସମ୍ଭାବ୍ୟ ସମୟରେ ଷ୍ଟେସନକୁ ଗାଡ଼ି ଗଲା ଏବଂ ସେହି ଖବର ପାଇବା ସଙ୍ଗେ ସଙ୍ଗେ ଯଥାର୍ଥ ରୋଗିଣୀ ପରି ହେମପ୍ରଭା ବିଛଣାରେ ନିର୍ଜ୍ଜୀବ ହୋଇ ଶୋଇ ରହିଲେ ।

ଏପରି ନିରାଟ ସାବଧାନତା ମଝିରେ କିପରି ଯେ ଛିଦ୍ର ରହିଗଲା ସେ କଥା କାହାରି ହୋସ୍ ନାହିଁ । ସର୍ବପ୍ରଥମେ ଯାହା ସହିତ ଦେଖାହେବ, ସେହି କୋଚ୍‌ମ୍ୟାନକୁ ହେମପ୍ରଭା ସାବଧାନ କରିବାକୁ ଏକବାରେ ଭୁଲିଯାଇଛନ୍ତି ।

ସମୟ ଯେତେ ନିକଟବର୍ତ୍ତୀ ହେଉଥାଏ ଛାତିର ସ୍ପନ୍ଦନ ସେତେ ଦ୍ରୁତ ହେଉଥାଏ । ଅବଶେଷରେ ଗାଡ଼ି ଚକର ଶବ୍ଦ, ଗେଟ୍ ଖୋଲିବାର, ଆଉ ବନ୍ଦ କରିବାର ଶବ୍ଦ, ପରିଚିତ ଜୋତାର ଶବ୍ଦ ଯେମିତି ଛାତି ଉପରେ ହାତୁଡ଼ି ପିଟିବାକୁ ଲାଗିଲା– କିନ୍ତୁ ଚିତ୍ରଲେଖା କାହିଁ ? କେବଳ ଗୋଟାଏ ଭାରି ଜୋତାର ଶବ୍ଦ ? ନାଁ ଚିତ୍ରଲେଖା ଆସିନାହିଁ ।

'ଈଶ୍ୱର ଅଛନ୍ତି' ଏତକ ମାତ୍ର ଚିନ୍ତାକରି ହେମପ୍ରଭା ପୁଅର ମୁହଁକୁ ଚାହିଁ ଦେଲେ । ଚାରିଆଡ଼େ ତାଙ୍କୁ ଯେପରି ଅନ୍ଧକାର ଦେଖାଗଲା । ନା ଆଉ ଗୋପନ ହୋଇନାହିଁ । ସେହି ଭୟଙ୍କର କଥାଟା ପ୍ରକାଶ ହୋଇଯାଇଛି । ମୁହଁରୁ ଜଣାପଡୁଛି । ସନ୍ଦେହ କରିବାର କିଛି ନାହିଁ । ଏକ ମିନିଟ୍.... ଦୁଇ ମିନିଟ୍.......ପ୍ରତ୍ୟେକଟି ମିନିଟ୍ ଗୋଟିଏ ଗୋଟିଏ ବର୍ଷ । ଜଳଦ ଗମ୍ଭୀର ସ୍ୱରରେ ମନୀନ୍ଦ୍ର ଗୋଟିଏ ଶବ୍ଦ ଉଚ୍ଚାରଣ କଲେ 'ମା' !

ଗୋଟିଏ ଶବ୍ଦ ମଧ୍ୟରେ କେତେ ଅଜସ୍ରଭାବ !

ହେମପ୍ରଭା ଆଉ ନିଜକୁ ସମ୍ଭାଳିପାରିଲେ ନାହିଁ । ଭୋ-ଭୋ କରି କାନ୍ଦି ଉଠିଲେ– ମତେ ତୁ ସଜା ଦେ ମନି, ତୋର ଯାହାଇଚ୍ଛା ତାହା ଶାସ୍ତି ଦେ ଝିଅଟାକୁ କିଛି କହନା ।

କହିବା ପାଇଁ ତ ଆଉ କିଛି ରଖିନାହଁ ମା', କହିବା ପାଇଁ ଭାଷା ମୁଁ ଖୋଜି ପାଉନାହିଁ । ମନୀନ୍ଦ୍ରର କଣ୍ଠ ସ୍ୱରରେ, କ୍ରୋଧ, କ୍ଷୋଭ,ହତାଶା, ନିରୂପାୟର ବେଦନା ସବୁ କିଛି ଯେମିତି ଅଜାଡ଼ି ହୋଇ ପଡ଼ିଲା ।

– ମନି ତୁ ମତେ ମାର୍ - ଜୀବନରୁ ମାରିଦେ ।

– ପାଗଳାମୀ ଆଉ କରନା ମା' ଈଶ୍ୱର ରକ୍ଷା କରିଛନ୍ତି ଯେ ଚିତ୍ରଲେଖା ଆସିବାକୁ ଚାହିଁଲା ନାହିଁ । କିନ୍ତୁ କ'ଣ କଲ ମା' ? ବେବିଟାକୁ ଚିରଦିନପାଇଁ ମାଟି କରିଦେଲ ।

– ମୋର ନିଜର ଦୋଷକୁ ଅସ୍ୱୀକାର କରୁନାହିଁ ମନି । ହେମପ୍ରଭା ଯେପରି କେଉଁଠୁ ବଳ ସଂଚୟ କରି ଉଠି ବସିଲେ । ଅପେକ୍ଷାକୃତ ଧୀର କଣ୍ଠରେ କହିଲେ - ଜାଣେ ମୋର ସବୁଦୋଷ, ତଥାପି ତତେ ଗୋଟିଏ କଥା କହିବି ମୁଁ – ତାପସୀ ଅପାତ୍ରରେ ପଡ଼ିନାହିଁ । ହୁଏତ ତୁ ସେ ପୁଅକୁ ଦେଖିଲେ ....... ।

ଥାଉ ଥାଉ ସେ କଥାଗୁଡ଼ା ଆଉ ମୋ ଆଗରେ କୁହନା ମା' । ଗୋଟାଏ ଛୋଟ ଛୁଆ ସେଥିରେ ପୁଣି ଅପାତ୍ର-ସୁପାତ୍ରର ବିଚାର !

କାନ୍ତି ମୁଖାର୍ଜୀ କୋଇଲାଖଣି କିଣି ଅନେକ ପଇସା କମେଇଛି ହେଲେ, ବାପା-ମାଆ ଛେଉଣ୍ଡ ନାତିଟାକୁ କ'ଣ ସୁଶିକ୍ଷା ଦେଇଛି ସେ ବିଷୟରେ କିଛି ଖବର ରଖିଛ ? ମ୍ୟାଟ୍ରିକ୍ ପାଶ୍ କରିଛି କି ନାହିଁ ତା ବୋଧହୁଏ ଜାଣିନାହଁ ? ଉଃ ମୋର ସମସ୍ତ ଆଶା ଧ୍ୱଂସ ହୋଇଗଲା । ତୁମବୁଦ୍ଧି ଉପରେ ମୋର ଗୋଟାଏ ଆସ୍ଥା ଥିଲା କିନ୍ତୁ ତୁମକୁ ଯେ ଲୋକେ ଏତେବଡ଼ ଠକାମୀରେ ପକାଇପାରିବେ ତାହା ମୁଁ ଧାରଣା କରିପାରି ନଥିଲି ।

ହେମପ୍ରଭା ସମସ୍ତ ଅଭିମାନ ବିସର୍ଜନ ଦେଇ ଶାନ୍ତଭାବରେ କହିଲେ - ଠକିଛି କି ଜିତିଛି ତୁ ନିଜେ ଥରେ ପରୀକ୍ଷା କରି ଦେଖ । ସେ ଭଦ୍ରଲୋକ ନିଶ୍ଚିନ୍ତ ହୋଇ ମରିଛନ୍ତି ଯେ ବାପ–ମା ଛେଉଣ୍ଡ ଗୋଟାଏ ପିଲାର ଉପଯୁକ୍ତ ଅଭିଭାବକ ଠିକ୍ କରି ଦେଇଛନ୍ତି ବୋଲି । ସେଇ ଅଭିଭାବକର କାମଟା ତୁ ଏବେ କର । ପିଲାଟା ଯେପରି ମଣିଷ ପରି ମଣିଷ ହୋଇପାରେ । ଟଙ୍କା ପଇସାର ତ ଅଭାବ ନାହିଁ ତାର ।

– ବୁଝିଛି ମା' ପଇସାର ଲୋଭଟା ତୁମେ ସମାଳି ପାରିଲ ନାହିଁ । ମନୀନ୍ଦ୍ର ନୀରବସ୍ୱରରେ ମନ୍ତବ୍ୟ ଦେଲା ତୁମ ଉପରେ ଧାରଣାଟା ଖୁବ୍ ଉଚ୍ଚଥିଲା, ଛାଡ଼ ସେ କଥା ପରର ପିଲା ଉପରେ ଅଭିଭାବକ ହେବାର ସ୍ପୃହା ମୋର ନାହିଁ । ବେବି, ଅଭି ପ୍ରଭୃତିଙ୍କୁ ପ୍ରସ୍ତୁତ ହେବା ପାଇଁ କହିଦଅ, ଆଜି ସଂଧାଗାଡ଼ିରେ ଚାଲିଯିବି ।

– ଆଜି ଚାଲିଯିବୁ ମନି ? ତା'ର ଟିକିଏ ଖୋଜ ଖବର ନେବୁ ନାହିଁ ? ବୁଢ଼ୀ ମା'ଟାକୁ କ୍ଷମା ନଦେ ପଛେ କିନ୍ତୁ ଝିଅ କଥାଟା ତ ଟିକିଏ ଚିନ୍ତାକର । ଶୁଣିଛି ପାଶ୍ ଖବର ପାଇଲେ କଲିକତାରେ ହଷ୍ଟେଲରେ ରହି ପଢ଼ିବାର କଥା, ଏବେ ଜେଜେବାପା ମରିଯିବା ପରେ କି ଅବସ୍ଥାରେ ଅଛି ବିଚରା, ସେ ଖବର ଆଉ ମୁଁ ରଖିପାରି ନାହିଁ । ତୁ ଥରେ ଖବର ନେଇ ଦେଖ୍... ।

ସେ ଅନୁରୋଧ ରଖିପାରିବ ନାହିଁ, ସେପରି ଅସଙ୍ଗତ ଅନୁରୋଧ କରନା ମା' ।

ଅଭି.......ଅଭି......ଆରେ ତୁମେ ସବୁ ପ୍ରସ୍ତୁତ ହୋଇଯାଅ ସନ୍ଧ୍ୟା ଗାଡ଼ିରେ କଲିକତା ଫେରିବାକୁ ପଡ଼ିବ । ମା' ଯିବାକଥା ମୁହଁରେ ଧରିଲା ନାହିଁ ମନୀନ୍ଦ୍ର । ପିଲାଙ୍କୁ ତାଗିଦ କରିଦେଇ ଗମ୍ଭୀର ଭାବେ ଉଠିଗଲା ।

ହେମପ୍ରଭା ମୂକ ହୋଇ ବସି ରହିଲେ । ନାଃ ମନୀନ୍ଦ୍ର ତାଙ୍କୁ ତୀରସ୍କାର କରିନାହିଁ, ଗାଳି ଦେଇନାହିଁ, କିନ୍ତୁ ଚିତ୍ରଲେଖା ଏହାଠାରୁ ବହୁତ ବେଶି ଅପମାନ ଦେଇଥା'ନ୍ତା ।

ଭୟ ! ଭୟ !

ଛୋଟ ମନଟିକୁ ଆଛନ୍ନ କରିଛି ଏକ କରାଳ ଦୈତ୍ୟ । ଅପରାଧଟା ତା ଆଡୁ କେତେବେଳେ ହେଲା ସେ କଥା ଜାଣେ ନାହିଁ ତାପସୀ । ତେବେ ସେହି ଅଜ୍ଞାତ ଅପରାଧର ଭାରରେ ଯେମିତି ଜଡ଼ସଡ଼ ହୋଇପଡ଼ିଛି । କିନ୍ତୁ ବାପା ସେମାନଙ୍କ ଭିତରୁ କାହାକୁ ଜଣେ ହେଲେ ବି ଏତେ ଟିକିଏ ତୀରସ୍କାର କଲେ ନାହିଁ ।

ଜେଜେମା ସଙ୍ଗେ କ'ଣ ଯେ କଥାବାର୍ତ୍ତା ହେଲା! କିଏ ଜାଣେ ? କିନ୍ତୁ ଜେଜେମାଙ୍କ ଘରୁ ବାପା ଯେତେବେଳେ ପଦାକୁ ବାହାରିଲେ ସେତେବେଳେ ତାଙ୍କ ମୁହଁ ଅସ୍ୱାଭାବିକଭାବେ ଗମ୍ଭୀର ଆଉ ଥମ୍ ଥମ୍ ଦେଖି ଭୟରେ ତାପସୀ ଆଉ ଦୁଇଭାଇ ବିରାଟ ଘରର କେଉଁ କୋଣରେ ଯାଇଁ ଲୁଚିଗଲେ ।

ସାନଭାଇ ସିଦ୍ଧାର୍ଥ ଯେମିତି ଅନୁଭବ କରିପାରିଛି ଯାହା ଘଟିଗଲା ତାହା ଅନ୍ୟାୟ ଓ ଅସଙ୍ଗତ । ନ ଘଟିଥିଲେ ହୁଏତ ବଂଚିଯାଇ ହୋଇଥା'ନ୍ତା । ଏଇ ଅସଙ୍ଗତ ଆଚରଣର କୈଫିୟତ ହୁଏତ ସମସ୍ତଙ୍କୁ ଦେବାକୁ ପଡ଼ିବ । କେତେବେଳେ ସେହି ଭୟଙ୍କର ମେଘ ଖଣ୍ଡ ଅଜାଡ଼ି ହୋଇ ପଡ଼ିବ, ସେହି ଆଶଙ୍କାରେ ତିନିଜଣଯାକ ସ୍ତବ୍ଧ ହୋଇଯାଇଛନ୍ତି ।

କିନ୍ତୁ ଭୟଙ୍କର ମେଘ ଅଜାଡ଼ି ହୋଇପଡ଼ିଲା ନାହିଁ । ପୁଅଝିଅ ମାନଙ୍କୁ ଡାକି କେବଳ ଏତିକି ଜଣେଇ ଦେଲେ ଯେ ସନ୍ଧ୍ୟାଗାଡ଼ିରେ କଲିକତା ଫେରିଯିବାକୁ ହେବ ।

କିନ୍ତୁ ମେଘ ଯେ ଅଜାଡ଼ି ହେଲାନାହିଁ ସେଟା କ'ଣ ସ୍ୱସ୍ତିର ? ବରଂ କିଛି ତୀରସ୍କାର ଶୁଣିଥିଲେ ସେଥିରେ ସେମାନେ ଶାନ୍ତ୍ୱନା ପାଇଥା'ନ୍ତେ । ବାପାଙ୍କର ମୂର୍ତ୍ତିଟା କିନ୍ତୁ ତୀରସ୍କାର କରିବା ପାଇଁ ଉଦ୍ୟତ ହୋଇ ରହିଲା ।

ଭୟ ! ଭୟ !

ଟ୍ରେନ୍‌ର ଗତି ଦ୍ରୁତ ହେବାକୁ ଲାଗିଛି – ନିକଟବର୍ତ୍ତୀ ହୋଇ ଆସୁଛି କଲିକତା – ଯେଉଁଠି ଚିତ୍ରଲେଖା ଅଛନ୍ତି । ମା'ସାଙ୍ଗରେ ସେ ଯଦି ମସୌରୀ ଚାଲିଯାଇଥା'ନ୍ତା ତାହେଲେ ଏତେ କାଣ୍ଡ ଘଟି ନଥା'ନ୍ତା । କାହିଁକି ଯେ ଗାଆଁକୁ ଯିବା ପାଇଁ ଏତେ ପ୍ରବଳ ଇଚ୍ଛା ହେଲା ? ଆଛା ସେଇ ପିଲାଟି ଏଇ ଗାଡ଼ିରେ କଲିକତା ଆସୁନାହିଁ ତ ? କଲିକତାରେ ରହି ପଢ଼ିବାର କଥା ଥିଲା । ବୁଢ଼ା ତ ମରିଗଲେ- ଘରେ କାଳେ କେହି ଆଉ ଲୋକ ନାହିଁ । କି ଆଶ୍ଚର୍ଯ୍ୟ କଥା ଏତେ ଟିକିଏ ଛୋଟପିଲା ଏତେବଡ଼ ଘରଟାରେ ଏକଲା ରହିବ କେମିତି ? କିଏ ଜଣେ କହୁଥିଲା ସେମାନେ ରାଣୀଗଂଜରେ ବୋରାବୋରି ରହନ୍ତି ବୋଲି । ସେଠି ତାହେଲେ ଅଛି କିଏ ? ମା' ବାପା, ଭାଇ ଭୋଉଣୀ କେହି ନାହାନ୍ତି, ଏ ପୁଣି କେମିତିକା କଥା । ଜଣେ ମାତ୍ର ଜେଜେ ସେ ପୁଣି ମରିଗଲେ । ଦିନସାରା ସେ ପୁଣି କଥାବାର୍ତ୍ତାକରେ କାହା ସାଙ୍ଗରେ ? ଚାକର, ପୂଜାରୀ ? ଦୂର୍ ! କଲିକତାରେ କେତେ କଲେଜ, ସବୁ କଲେଜର କ'ଣ ହଷ୍ଟେଲ ଅଛି ? ତାପସୀ ମଧ ମ୍ୟାଟ୍ରିକ୍ ପାଶ୍‌ପରେ କଲେଜରେ ଭର୍ତ୍ତିହେବ । ଓଃ ସେତ ବହୁତ ଦିନ ଡେରି । ତିନି ତିନିଟା ବର୍ଷ, ତାପରେ ଯାଇ ମ୍ୟାଟ୍ରିକ ପରୀକ୍ଷା ।

-- ବେବି ଝରକାପାଖରୁ ମୁହଁ କାଢ଼ି ଆଣ ଆଖିରେ କୋଇଲା ଗୁଣ୍ଡ ପଡ଼ିବ । ବାପାଙ୍କର କଣ୍ଠସ୍ୱରରେ ଏତେ ଚମକିବାର କାରଣ କ'ଣ ଥିଲା ?

ଯେମିତି ଚୋରି କରିବାକୁ ଯାଇ ତାପସୀ ଧରା ପଡ଼ିଯାଇଛି । ସେହି ଭୟଟା ଛାତି ଉପରେ ଚାପି ହୋଇଯାଇଛି । ଶ୍ରୀରାମପୁର, ଉତ୍ତରପଡ଼ା, ଲିଲୁୟା ଏ ସବୁ ନାଆଁଗୁଡ଼ା ନୂଆ ନା କ'ଣ ? ଛାତି ଭିତରଟା ଏପରି ଧଡ଼ ପଡ଼ ହେଉଛି କାହିଁକି ? ଚିତ୍ରଲେଖା ନିକଟବର୍ତ୍ତୀ ହେଉଛନ୍ତି ବୋଲି ବୋଧହୁଏ ?

ପୁଅଝିଅ ଆଉ ସ୍ୱାମୀଙ୍କର ବିଷର୍ଣ୍ଣ ମୁହଁ ଦେଖି ଶାଶୁଙ୍କର ମୃତ୍ୟୁ ସମ୍ବନ୍ଧରେ ଆଉ କୌଣସି ସନ୍ଦେହ ରହିଲା ନାହିଁ ଚିତ୍ରଲେଖାର । ତେବେ ଏତେ ତରବର ହୋଇମରିବା କ'ଣ ଦରକାର ଥିଲା ? ଚିତ୍ରଲେଖାର ବଦନାମ୍ କରିବା ଛଡା ଆଉ କ'ଣ ? ମନର ଅତ୍ୟାଧିକ ଦୁଃଖପାଇଁ ହେଉ କି ଅନ୍ୟ କାରଣରୁ ହେଉ ମନୀନ୍ଦ୍ର ଜୋତା ଖୋଲି ଖାଲିପାଦରେ ଆସି ସ୍ତ୍ରୀ ପାଖରେ ହାଜର ହେଲେ ନାହିଁ । ସ୍ୱାମୀ ପାଖରୁ ଅନ୍ତତଃ ଏତିକି ସଭ୍ୟତା ଜ୍ଞାନର ପରିଚୟ ନ ପାଇ ରୁଷ୍ଟ ହେଲେ ଚିତ୍ରଲେଖା ।

ସ୍ୱାମୀଙ୍କୁ ପଚାରିବାକୁ ସାହାସ କୁଳେଇଲା ନାହିଁ । ବଡ଼ ବଡ଼ ପୁଅଝିଅଙ୍କୁ ପଚାରିବାକୁ ମଧ ଲଜ୍ୟାଲାଗୁଛି । ସେଇଥିପାଇଁ ସାନ ପୁଅ ସିଦ୍ଧାର୍ଥକୁ ଡାକି ଚୁପ୍ ଚୁପ୍

ପଚାରିଲେ ତୁମର ନାନୀ କେବେ ମଲେ ? ନାନୀ ! ଦୁଇ ଆଖିକୁ ବଡ଼ ବଡ଼ କରି ନିଜ ମାଆର ମୁହଁକୁ ଚାହିଁଲା ସିଦ୍ଧାର୍ଥ । ମା' କ'ଣ ହଠାତ୍ ପାଗଳ ହୋଇଗଲା ନା କ'ଣ ? ନାନୀ ମରିବ କାହିଁକି ?

— ଓଃ ମରିନି ତା ହେଲେ, ଧନ୍ୟବାଦ, ଆଚ୍ଛା ଅସୁସ୍ଥ ମଣିଷଟାକୁ ଛାଡ଼ିଦେଇ ତମେ ସବୁ ଚାଲି ଆସିଲ କାହିଁକି ? ଟିକିଏ ବୋଧହୁଏ ଦେହ ଭଲ ଅଛି ?

ଟେଲିଗ୍ରାମ୍ କଥା ସିଦ୍ଧାର୍ଥ ଜାଣିନାହିଁ । ପିଲାଲୋକ ଜାଣିବା କଥାବି ନୁହେଁ । ଟିକଏ ଅଟକି ଯାଇ କହିଲା— ନାନୀର ଦେହ କାହିଁକି ଖରାପ ହେବ କେବଳ ମନଟା ଖରାପ !

ଗୋଟିଏ ମୁହୂର୍ତ୍ତରେ କଠିନ ହୋଇ ଉଠିଲେ ଚିତ୍ରଲେଖା । ଓଃ ତା ହେଲେ ଦେହ ଖରାପଟା ଗୋଟାଏ ଛଳନା ! ଛଳନା କରି ବୋହୂକୁ ଗାଆଁକୁ ଟାଣିନେବାର ଗୋଟାଏ ଫିକର । ତେବେ ମାଆ ଉପରେ ରାଗିକରି ପୁଅଝିଅଙ୍କୁ ଧରି ଫେରିଆସିଛନ୍ତି ମନୀନ୍ଦ୍ର । ପ୍ରଳୟ ଗମ୍ଭୀର ମୁହଁର କାରଣଟା ଏବେ ବୁଝାପଡ଼ିଲା । ଭଲହେଲା ଏତେଦିନକେ ମାଆର ପ୍ରକୃତ ସ୍ୱରୂପଟା ଚିହ୍ନଲେ ମନୀନ୍ଦ୍ର । ଭଲ ! ଭଲ ! ଉଭୟ ପକ୍ଷ ବେଶ୍ ଜବଦ ହୋଇଛନ୍ତି ।

ନିଜର ଚାପା ହସକୁ ଚାପିରଖି ଛୋଟ ପୁଅଟିକୁ ବିଦ୍ରୂପବ୍ୟଞ୍ଜକ ଭଙ୍ଗୀରେ ପ୍ରଶ୍ନକଲେ ଚିତ୍ରଲେଖା — ତେବେ ହଠାତ୍ ତା ମନଟା ଖରାପ ହେବାର କାରଣ କଣ ?

ବାପାଙ୍କ ପାଖରେ ହଠାତ୍ ଏସବୁ ପ୍ରକାଶ ନକରିବା ପାଇଁ ସେଠାରେ ଏକ ନିଷେଧ ଆଜ୍ଞାଥିଲା । କିନ୍ତୁ ମାଆଙ୍କ ପାଖରେ ପ୍ରକାଶ ନ କରିବାକୁ କୌଣସି ନିଷେଧ ଆଦେଶ ନଥିଲା ସେଇଥିପାଇଁ ସିଦ୍ଧାର୍ଥ ଉତ୍ସାହ ସହକାରେ କହିଲା — ତା ମନ ଖରାପ ହେବ 'ନାହିଁ- ଦିଦିର ବାହାଘର ହେଇଗଲା, ତମେସବୁ ଦେଖିପାରିଲ ନାହିଁ— କିଛି ଉତ୍ସବ ହେଲା ନାହିଁ, ନିମନ୍ତ୍ରଣପତ୍ର ବଣ୍ଟାଗଲାନାହିଁ, ଭୋଜିଭାତ ହେଲାନାହିଁ ।

ପିଲାଟା ମେଲ୍‌ଟ୍ରେନର ଗତିରେ ଏତେଗୁଡ଼ାଏ କଥା କହିପକେଇଲା । ପ୍ରଥମାଂଶଟା ଶୁଣିବା ପରେ ଚିତ୍ରଲେଖା ଟାଙ୍କ ଛିଡ଼ି ଯାଇଥିବା ଧନୁପରି ସିଧା ହୋଇ ପଡ଼ିଲେ ।

— କ'ଣ କହିଲୁ ? କ'ଣ ହେଇଗଲା ? ଦିଦିର କ'ଣ ହେଲା ? ମା'ର ମୂର୍ତ୍ତି ଦେଖି ପିଲାଟାର ଉତ୍ସାହର ଗତିଟା ହଠାତ୍ ମନ୍ଥର ହୋଇଗଲା । ଡରି ଡରି କହିଲା ଦିଦିର ବାହାଘର ହୋଇଗଲା ! ସେହି ବୁଢ଼ା ଭଦ୍ରଲୋକ ଶୀଘ୍ର ମରିଗଲେ ଯେ । ଆଜି ବାହାଘର ହେଲା - କାଲି ମରିଗଲେ ।

ଚିତ୍ରଲେଖା ସିଦ୍ଧାର୍ଥ ପାଖରେ ଛିଡ଼ା ହୋଇ ଆଉ ସମୟ ନଷ୍ଟ କରିବାର ପ୍ରୟୋଜନ ଅନୁଭବ କଲା ନାହିଁ । ତାହାର ଯେ ହାର୍ଟ ଡିଜିଜ୍ ରହିଛି ସେ କଥା ଭୁଲି ସେ ମନୀନ୍ଦ୍ରର ବସିବାଘରେ ବିଦ୍ୟୁତ ବେଗରେ ଆସି ଛିଡ଼ା ହୋଇଗଲା ।

– ବାପ, ଝିଅ ଦିଜଣ ଅଛନ୍ତି – ଚମତ୍କାର ! ବିଦ୍ୟୁତ ବେଗରେ ଆସି ବାଜପକ୍ଷୀ ପରି ଝାମ୍ପଦେବାର ଉପକ୍ରମ ।

– ଘଟଣାଟା କ'ଣ ହୋଇଛି ଶୁଣିପାରେ କି ? ମନୀନ୍ଦ୍ର ଗମ୍ଭୀରଭାବେ ସେହି ଅଗ୍ନିମୟ ମୁହଁଆଡ଼କୁ ଚାହିଁଦେଇ ଧୀର କଣ୍ଠରେ କହିଲା - ଶୁଣିବା ପରି ନୁହେଁ ।

– କହିବାକୁ ଲଜ୍ୟା ଲାଗୁନାହିଁ । ପ୍ରକୃତ ଘଟଣା ଶୀଘ୍ର ମୋତେ କୁହ । ତୁମେ କ'ଣ ସବୁ ଭାବିଛ କି ମତେ ?

ପ୍ରକୃତ ଘଟଣା, ମୁଁ ଯେତିକି ଜାଣିଛି ତା ହେଲା - ଜଣକର ପ୍ରରୋଚନାରେ ପଡ଼ି ମା' ବେବିର ବାହାଘର କରିବାକୁ ବାଧ୍ୟ ହୋଇଛନ୍ତି.... ବେବୀ ତୁ ଉପରକୁ ଯା ଅଭି ସାଙ୍ଗରେ ଖେଳିବୁ ।

ଚିତ୍ରଲେଖାର ଲିପିଷ୍ଟିକ୍ ରଂଜିତ ଓଷ୍ଠାଧାର ପଥ ଦେଇ ଲାଭା ସ୍ରୋତ ପ୍ରବାହିତ ହେବ ଏକଥା ଅନୁମାନ କରି ବାଳିକା କନ୍ୟା ପ୍ରତି କରୁଣା ହେଲା ମନୀନ୍ଦ୍ରର । କିନ୍ତୁ ଚିତ୍ରଲେଖା ଏତେ ଭାବପ୍ରବଣ ନୁହେଁ । ସେଇଥିପାଇଁ ଚିଲପରି ତୀକ୍ଷ୍ଣ କଣ୍ଠରେ ଚିତ୍କାର କରି ଉଠିଲା - ନା ସେ ଯିବା ଦରକାର ନାହିଁ, ସବୁକଥାଟା ମୁଁ ପରିଷ୍କାରଭାବେ ଶୁଣିବାକୁ ଚାହେଁ । ଜାଣି ରଖ ତୁମ ମା'ର ଏସବୁ ସ୍ୱେଚ୍ଛାଚାର ମୁଁ କୌଣସି ପ୍ରକାରେ ସହ୍ୟ କରିପାରିବି ନାହିଁ । ତୁମର ମା' ବୋଲି ଛାଡ଼ି ଦେବି ନାହିଁ ।

– କ'ଣ କରିବ ମା' ନାଆଁରେ ଚାର୍ଯସିଟ୍ କରିବ ?

– ଦରକାର ହେଲେ ତା ମଧ୍ୟ କରିବାକୁ କୁଣ୍ଠିତ ହେବି ନାହିଁ ଏଟା ଜାଣିଥାଅ । ଏ ବେବି ଆସିଲୁ ଏଠିକି - ଆ ଏଠିକି କହୁଛି - ସିନ୍ଦୂର ପିନ୍ଧିଛୁ ? ଲାଜମାତ୍ର ନାହିଁ । ଉଠିଆ କହୁଛି !

ବେବି କପାଳରେ ସିନ୍ଦୂରରେଖା ଟିକିଏ ଥିଲା, କ'ଣ ହୋଇଗଲା ସେଥିରେ । ନବୋଢ଼ାର ଗୌରବଦୀପ୍ତ ଉଜ୍ଜ୍ୱଳ ରେଖାନୁହେଁ, ଭୀରୁ କୁଣ୍ଠିତ କ୍ଷୀଣ ଏକ ଆଭାସ...। ଚିତ୍ରଲେଖାର ରୁମାଲର ଘର୍ଷଣରେ ସେତକ ପୋଛି ହୋଇଗଲା, କେବଳ ଗୋଟାଏ ବେଦନାମୟ ଆଭାସ ରଖି ।

ତାପସୀ ବୋକୀଙ୍କ ପରି ଚାହିଁ ରହିଲା ମାଆର ମୁହଁକୁ । ଘନ ପଲ୍ଲବ ବେଷ୍ଟିତ ଦୁଇଟି ବଡ଼ ବଡ଼ ଚକ୍ଷୁରୁ ଅଶ୍ରୁବିନ୍ଦୁ କେଉଁଆଡ଼େ ଉଭେଇଗଲା କେଜାଣି ?

– ଯା' ସାବୁନ ଦେଇ ଧୋଇପକା, ଦ୍ୱିତୀୟ ଦିନ ଯେମିତି ଏ ଅସଭ୍ୟତା ମୁଁ ଆଉ ନ ଦେଖେ ।

ମାଆର ଆଦେଶରେ ଅନ୍ତତଃ ଏତିକି ଲାଭ ହେଲା ତାପସୀର, ସେ ମାଆ ସାମ୍ନାରୁ ଚାଲିଯିବାକୁ ସୁଯୋଗ ପାଇଲା ।

ମନୀନ୍ଦ୍ର ଗୋଟାଏ ତୀକ୍ତ ହସ ହସି କହିଲା ଚିହ୍ନଟା ଅନ୍ତତଃ ଲିଭେଇ ଦେଇପାର କିନ୍ତୁ ଘଟଣାଟା ଲିଭିଯିବା ସମ୍ଭବ ନୁହେଁ ।

ବିରକ୍ତିଟା କେବଳ ଚିତ୍ରଲେଖା ଉପରେ ନୁହେଁ, ମାଆ ଉପରେ ନ ହେଲେ ମଧ ନିଜ ଭାଗ୍ୟ ଉପରେ ।

ଚିତ୍ରଲେଖା ମୁହୂର୍ତ୍ତକ ଭିତରେ ରାଗିଯାଇ ଉତ୍ତର ଦେଲା ତୁମେ କ'ଣ ଆଶା କରୁଛ ପିଲାଖେଳର ଏଇ ବାହାଘରକୁ ମୁଁ ସମର୍ଥନ କରିବି ବୋଲି ! କଦାପି ନୁହେଁ ।

– ଖେଳଘର ବୋଲି କେମିତି କହିବ, ଅନୁଷ୍ଠାନରେ ତ କିଛି ତ୍ରୁଟି ହୋଇନାହିଁ । ଶୁଣିଲି କୁଶଣ୍ଡିକା, ସପ୍ତପଦୀ ପର୍ଯ୍ୟନ୍ତ ହୋଇଯାଇଛି ।

– କନ୍ୟାଦାନ ବୋଲି ତ ପୁଣି ଗାଟାଏ କଥା ଅଛି ? ତୁମ ଅନୁପସ୍ଥିତିରେ ତୁମ କନ୍ୟାକୁ ଅନ୍ୟଲୋକ ଦାନ କରିବ ଏ କେଉଁ ଆଇନ୍‌ରେ ଅଛି । କେଉଁ ଅଧିକାର ବଳରେ ଅନ୍ୟକାହା ପକ୍ଷରେ ଏ କାମ ସମ୍ଭବ ?

– ହିନ୍ଦୁ ଆଇନ ବଳରେ ହୋଇପାରିବ । ମୋ ପରିବର୍ତ୍ତେ ମୋ ମା' କନ୍ୟାଦନ କଲେ ସେଟା ଆଇନ୍ ଆଖିରେ ଅସିଦ୍ଧ ନୁହେଁ ।

– ତୁମେ ତାହାହେଲେ ଏଟାକୁ ବାହାଘର ବୋଲି ମାନିନେବାକୁ ରାଜିଅଛ ।

– ଉପାୟ କ'ଣ ଅଛି ? ଆମେ ଉପରେ ଯେତେ ମୟୂରପୁଚ୍ଛ ଘୋଡ଼େଇ ହେଲେ ମଧ ଭିତରେ ଆମେ ହିନ୍ଦୁ ଛଡ଼ା ଅନ୍ୟ କିଛି ନୁହଁନ୍ତି । ଅଗ୍ନି, ଶାଳଗ୍ରାମ, ସାକ୍ଷୀ ରଖି ଯେଉଁ ବାହଘର ହୋଇଛି ତାକୁ ନାକଚ କରିବ କେଉଁ ବଳରେ ।

– କେଉଁବଳରେ ନାକଚ କରାଯିବ ସେ କଥା ତମକୁ ଶିଖେଇବାକୁ ମୋର ରୁଚି ନାହିଁ, କିନ୍ତୁ କିପରି ନାକଚ ହେବ ତାହା ମୁଁ ଦେଖେଇ ଦେବି ।

ଯଦି ବେବିର ଉପଯୁକ୍ତ ସମୟରେ ଉପଯୁକ୍ତ ବିବାହ ନ ଦେଇ ପାରେ ତାହେଲେ ମୁଁ...... ସଭ୍ୟତା ଭବ୍ୟତ ବର୍ହିଭୂତ ଗୋଟାଏ କଟୁ ବାକ୍ୟ କହି ଚିତ୍ରଲେଖା ଘରୁ ବାହାରିଗଲା ।

ନିଷ୍ଠୁର ପରି ମନୀନ୍ଦ୍ର ଘର ଛାଡ଼ି ଚାଲିଯିବାଟା ହେମପ୍ରଭାଙ୍କୁ ବଜ୍ରାହତ ପରି ନିସ୍ତେଜ କରି ଦେଇଥିଲା । କିନ୍ତୁ କ୍ରମଶଃ ନିଜକୁ ସେ ପ୍ରସ୍ତୁତ କରିନେଲେ । ଭଲ ହେଲା । ମାୟାବନ୍ଧନରୁ ମୁକ୍ତ କରିବା ପାଇଁ ଭଗବାନ ସାହାଯ୍ୟ କଲେ । କି ମିଛ ଉପରେ ଏ ସଂସାର ଗଢ଼ା ହୋଇଛି । ସେ ସଂସାର ଯଦି ଭାଙ୍ଗିପଡ଼ିବ ପଡୁ । ହୁଏତ ସେଟା ଈଶ୍ୱରଙ୍କ ଆଶୀର୍ବାଦ ।

ପଇସାଟା ବୋଧହୁଏ ସବୁଠାରୁ ଆକର୍ଷଣୀୟ ।

ପଇସା ଲୋଭରେ ହେମପ୍ରଭା ଗୋଟାଏ ଅସଙ୍ଗତ କାର୍ଯ୍ୟ କରିପାରନ୍ତି – ଏତେ ଅନାୟସରରେ ଏତେବଡ଼ କଥାଟା କହି ପକେଇଲା ମନୀନ୍ଦ୍ର । ପୁଅ ଉପରେ ଦୁରନ୍ତ ଅଭିମାନଟା ବୈରାଗ୍ୟ ବେଶରେ ଆସି ଦେଖା ଦେଇଛି ।

ନିଜର କଥାଟା ଏତେବଡ଼ ହେଲା ଯେ ମା' ମନକଥାକୁ ସେ ଟିକିଏ ବି ଆଡ଼ ଆଖିରେ ଚାହିଁଲା ନାହିଁ । କି ଲଜ୍ୟାରେ କୁଣ୍ଠାରେ ନିଜେ ମରିଯାଉଛନ୍ତି ! ତାର ତ ଚାରା ନାହିଁ, କିନ୍ତୁ ଏତେ ଅଗ୍ରାହ୍ୟ କରିବାରେ ଲାଭ କ'ଣ ? ସତେ ଯେପିର ଅପାତ୍ରରେ ଝିଅ ଚାଲିଯାଇଛି ? ନିଜେ ଟିକିଏ ଭଲ କରି ଦେଖାଶୁଣା କର । ମ୍ଳେଚ୍ଛ ଖୀରସ୍ତାନ ହେଇଛ କି ଝିଅକୁ ଆଉଥରେ ବାହା କରେଇଦେବ ! ଅଳ୍ପ ବୟସରେ ବାହାଦେଇ ଅନେକ ଲୋକ ତ ପୁଣି ପୁଅକୁ ଜ୍ୱାଇଁକୁ ବିଲାତ ପଠେଉଛନ୍ତି । ସେଇ କଥାଟା କାହିଁକି ମନରେ ଭାବୁନା । ନହେଲେ ପାଞ୍ଚ ସାତବର୍ଷ ପରେ ତ କରିଥା'ନ୍ତ । ବାରବର୍ଷ ଝିଅର ଯୌବନ ଆସିବାକୁ କେତେ ଯୁଗ ଏମିତି ଲାଗିବ କି ? ପରିପୁଷ୍ଟ ଦେହରେ କ'ଣ ଏବେ ଯୌବନର ସ୍ପର୍ଶ ଲାଗିନାହିଁ ?

ବେଶ୍ ଭଲକଥା ନବ୍ୟ ଫେସନର ଆଳରେ ନବଯୌବନା ଝିଅକୁ ଶିଶୁକରି ରଖ - କିନ୍ତୁ ହେମପ୍ରଭା ଯଦି ମନ-ପ୍ରାଣରେ ନିଷ୍ପାପ ରହେ ତାହେଲେ ଦିନେ ନା ଦିନେ ତୁମେ ସବୁ ନିଜର ଭୁଲ ବୁଝିପାରିବ ।

ଭଗବାନଙ୍କ ପାଖରେ ବାରମ୍ବାର ପ୍ରାର୍ଥନା କରନ୍ତି ହେମପ୍ରଭା । ଅଗ୍ରାହ୍ୟ ଅବହେଳାରେ ଯା'ର ନାମ ପର୍ଯ୍ୟନ୍ତ ଶୁଣିବାକୁ ଇଚ୍ଛା କଲାନାହିଁ ମନୀନ୍ଦ୍ର ସେହିପିଲା ଶିକ୍ଷାରେ-ଦୀକ୍ଷାରେ ଚରିତ୍ରରେ ଗୌରବରେ ଯଦି ଉଜ୍ଜ୍ୱଳ ହୋଇ ଉଠେ, ଲୋଭନୀୟ ହୋଇଉଠେ ? ସ୍ନେହମୟୀ ତାପସୀର ଭାଗ୍ୟ ସଙ୍ଗେ ଜଡ଼ିତ ନହୋଇଥିଲେ, ହେମପ୍ରଭା ଅଭିସଂପାତ ଦିଅନ୍ତେ ମନୀନ୍ଦ୍ର ଆଉ ଚିତ୍ରଲେଖାକୁ । କାୟମନବାକ୍ୟରେ ହେମପ୍ରଭା ଆଶୀର୍ବାଦ କରୁଛନ୍ତି ତାପସୀକୁ ତାର ଭାଗ୍ୟ ଯେପରି ଅନ୍ଧକାରାଛନ୍ନ ନହୁଏ । ତେବେ ଏଥର ହେମପ୍ରଭା ମୃତ୍ୟୁ ଚାହୁଁଛନ୍ତି ।

ନିଜର ସମସ୍ତ ସମ୍ପତ୍ତି ଘରବାଡ଼ି ତାପସୀ ନାମରେ ଦାନପତ୍ର କରିଦେଇ ଆଷାଢ଼ର ଏକ ବର୍ଷଣମୁଖର ରାତ୍ରିରେ ସର୍ବତୀର୍ଥସାର ବାରାଣାସୀ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କଲେ । ତାପସୀ ଉପରେ ସେ ଯେଉଁ ଅନିଚ୍ଛାକୃତ ଅପରାଧ କରିଛନ୍ତି ତା'ର କ୍ଷତିପୂରଣ ବୋଧହୁଏ ଏଇ ଦାନପତ୍ର ।

ଶାଶୁଙ୍କର ଏ ପ୍ରକାର କାର୍ଯ୍ୟକଳାପରେ ଚିତ୍ରଲେଖା ସ୍ତମ୍ଭିତ ହୋଇଗଲା । ଏ କି ଘୋର ଶତ୍ରୁତା ! ବେବିକୁ ସମସ୍ତ ସମ୍ପତ୍ତିର ମାଲିକ କରିବାର ଉଦ୍ଦେଶ୍ୟ କ'ଣ ? ଏକେତ ଝିଅ ମା'ର ଆଦୌ ବାଧନୁହେଁ, ସେଥିରେ ପୁଣି ଏତେଗୁଡ଼ାଏ ବିଷୟ ସମ୍ପତ୍ତିର ମାଲିକ ହେଲେ ରକ୍ଷା ମିଳିବ ? ହେମପ୍ରଭାଙ୍କର ଚିତ୍ରଲେଖା ବିରୁଦ୍ଧରେ ଏ ଯେମିତି ଯୁଦ୍ଧ ଘୋଷଣା । ଶାଶୁଙ୍କର କାଶୀଧାମରେ ରହିବାର ସଂବାଦରେ ସେ ସେପରି ଆନନ୍ଦିତ ହୋଇପାରିଲା ନାହିଁ ।

ତେବେ ଯାହା ହେଲେବି ଗୋଟେ ଦିଗରୁ ନିଷ୍କଣ୍ଟକ ।

ଏତେଦିନ ପରେ ପୁଅଝିଅଙ୍କୁ ସୁ ଶିକ୍ଷିତ କରିବାରେ ଲାଗିପଡ଼ିଲା ଚିତ୍ରଲେଖା । ସଦ୍ୟ ଦେଖିଆସିଥିବା ସାନଖୁଡ଼ୀ ଓ ତାଙ୍କ ଭଉଣୀଙ୍କର ପୁଅଝିଅ ମାନଙ୍କ ଦୃଷ୍ଟାନ୍ତ ତ ଅଛି, ତା ଛଡ଼ା ନିଜର ପୁଣି ସ୍ୱପ୍ନଲାଳସା । ଶାଶୁଙ୍କର ଜ୍ୱାଳାରେ ଯାହା ସଂପୂର୍ଣ୍ଣ ଭାବେ ବିକଶିତ ହୋଇପାରୁ ନଥିଲା ।

ଗଭୀର ରାତ୍ରୀରେ ସ୍ୱାମୀ ସ୍ତ୍ରୀଙ୍କ ଭିତରେ ଏ ସଂପର୍କରେ ପ୍ରେମାଳାପ ହେଉନଥିଲା- ତର୍କ ବିତର୍କହିଁ ଚାଲିଥିଲା ।

ସ୍ୱଭାବ ଅନୁଯାୟୀ ଚିତ୍ରଲେଖାର ସ୍ୱର ତୀକ୍ଷ୍ଣ ଓ ଅସହ୍ୟ, ମନୀନ୍ଦ୍ର ଗମ୍ଭୀର କିନ୍ତୁ ଅନେକ ପରିମାଣରେ ଅସହାୟ । ତର୍କର ବିଷୟ ହେଲା ତାପସୀ । ମନୀନ୍ଦ୍ରର ଧାରଣା ତାପସୀ ପିଲା ହେଲେ ମଧ୍ୟ ବିବାହ ସଂପର୍କରେ ତା ମନରେ ହୁଏତ କିଛି ପରିମାଣରେ ରେଖାପାତ କରିଛି । ସେ ରେଖା ସିନ୍ଥିର ସିନ୍ଦୂର ପରି ଏତେ ସହଜରେ ପୋଛି ଦିଆଯାଇ ପାରିବା ସମ୍ଭବ ନୁହେଁ । ଚିତ୍ରଲେଖାର ହିସାବରେ ହୁଏତ ଭୁଲ ଅଛି, ଝିଅକୁ ଆଧୁନିକ ଶିକ୍ଷା ଦୀକ୍ଷାରେ ବଡ଼କରି ଯଥାସମୟରେ ବିବାହ ଦେବା ଇଚ୍ଛାଟା ଟିକିଏ ଯେମିତି ଅସଙ୍ଗତ,ଜିଦ୍ କଲାପରି । କିନ୍ତୁ ଚିତ୍ରଲେଖା କଥା ଉପରେ ସେମିତି ଜୋହର ଦେଇ କଥା କହିବାର କ୍ଷମତା ମନୀନ୍ଦ୍ରର କାହିଁ ?

ସେଇଥିପାଇଁ ବୋଧହୁଏ ଦ୍ୱିଧାଗ୍ରସ୍ତଭାବେ କହିଲା— ହୁଏତ ଶେଷ ପର୍ଯ୍ୟନ୍ତ ସେହି ବିବାହଟାକୁ ମାନିନେବାକୁ ହେବ । ଅବଶ୍ୟ ବର୍ତ୍ତମାନ ନୁହେଁ - ଯାଉ ଦିଚାରି ବର୍ଷ ହୁଏତ ପିଲାଟା.....

ଏତେ ସମୟ ଯାଏ ଚିତ୍ରଲେଖା ଖଟ ଉପରେଥିଲା । କିନ୍ତୁ ଏପରି ସଙ୍ଗୀନ ଅବସ୍ଥାରେ ସେ ଯେଉଁ ଅସ୍ତ୍ର ନିକ୍ଷେପ କରିବ ତା ହୁଏତ ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରିବ

ନାହିଁ ଆଶଙ୍କା କରି, ସେ ଖଟଉପରୁ ଉଠିଆସି ସ୍ୱାମୀର ଶଯ୍ୟା ପାଖରେ ବସିପଡ଼ିଲା । ସ୍ୱାମୀ ବଦଳରେ ତକିଆ ଉପରେ ଗୋଟାଏ ଢୋହର ଚାପୁଡ଼ା ମାରି ତୀଖା ସ୍ୱରରେ କହିଲା – କ'ଣ ହେଲା ସେହି ଦ୍ୱାଚେର ସାଙ୍ଗରେ ବଂଧୁ ! ତା ଠୁଁ ବରଂ ଭଲ ମନେ କରିବି ବେବି ମୋର ବିଧବା, ମୂର୍ଖ ହିନ୍ଦୁଘରର ବାଲୁତ ବିଧବା !

– ଛି ଚିତ୍ରା !

– ଛି, ପୁଣି କେଉଁଥି ପାଇଁ ? ଏହା ମୋର ସଫା କଥା । ତୁମର ସେହି କଣ୍ଢେଇ ଖେଳର ବର ଯଦି ରାଜପୁତ୍ର ହୁଏ ସେ ବାହା ଘରକୁ ମୁଁ ମାନିବି ନାହିଁ, ମାନିବି ନାହିଁ ।

– ଦେଖା ମୁଁ ମା' ପକ୍ଷ ନେଇ ଓକିଲାତି କରିବାକୁ ଚାହୁଁନାହିଁ । କିନ୍ତୁ ଭାବି ଦେଖ ବେବିର ମନ ଉପରେ ଯଦି ଏହାର କିଛି ପ୍ରଭାବ ପଡ଼ିଥାଏ ?

– ତୁମକଥା ଶୁଣିଲେ ମୋର ସୁଇସାଇଡ୍ କରିଦେବାକୁ ଇଚ୍ଛା ହେଉଛି । ଏଡ଼େ [illegible]ବୋଲି ଦୁଧଖିଆ ଛୁଆ, ଦୁନିଆ ବିଷୟରେ କିଛି ଜାଣେ ନାହିଁ । ତା ସଂପର୍କରେ ତୁମ [illegible] କଥା କିମିତି ଭାବୁଛ ତାହାହିଁ ଆଶ୍ଚର୍ଯ୍ୟ ! ଗୋଟାଏ ଚକଲେଟ ଭାଗ ପାଇଁ ଯିଏ [illegible] ବାବୁଲି ସାଙ୍ଗରେ ଧସ୍ତାଧସ୍ତି କରେ...... !

– ସେ କଥା [illegible] ! ଶୁଣିବାକୁ ପାଇଛି ଯେ ମୋର ଶୁଭ ଜନ୍ମଦିନରେ ମୋ ମା' ଗୋଟେ ମାଟି କଣ୍ଢେଇ ପାଇଁ ସାରାଦିନ କାନ୍ଦିଥିଲା ।

– ଥାଉ ଥାଉ ପ୍ରତ୍ୟେକ କଥାରେ ତୁମ ମା'ର ଉଦାହରଣ ଶୁଣିବାର ସୌକ ମୋର ନାହିଁ । ସେମାନଙ୍କ ଅମଳପରି ଓଳିଆରୁ ଗଜା ପୁଅଝିଅ ଆଜିକାଲି ନାହାନ୍ତି । ଏ କଥା ତୁମେ ଭଲଭାବେ ଜାଣିଥାଅ ଯେ ଏଇ ବାଜେ କଥାରେ ବେବି ମୋଟେ ମନଦେଇ ନାହିଁ । ଯାହାଦ୍ୱାରା ଏକଥା ବିଲକୁଲ ତା ମନରେ ରହିବ ନାହିଁ, ସେ ବ୍ୟବସ୍ଥା ମତେ କରିବାକୁ ପଡ଼ିବ । ଆଉ ସବୁକଥା ଛାଡ଼ ବେବି ପାଇଁ ଯେଉଁ ଟିଉସନ ମାଷ୍ଟର କଥା କହିଥିଲି ତାର ବ୍ୟବସ୍ଥା କ'ଣ କଲ ? ଛୁଆଟା ମ୍ୟାଥମେଟିକ୍ସରେ ଏକବାର କଚା ଏକଥାଟା ଭୁଲିଗଲେ ଚଳିବନାହିଁ ।

ମୁଁ ଆଉ କ'ଣ ଖିଆଲ ରଖିବି । ତୁମେ ତ ସେ କଥା ସବୁ ବୁଝିବ । କ'ଣ ସେ ଭଦ୍ରଲୋକଙ୍କ ନାଆଁ ହିମାଂଶୁ ନା; ସେ କ'ଣ ଆଉ ପଢ଼େଇବେ ନାହିଁ ?

– ଓଃ ତୁମ ସାଙ୍ଗରେ କଥାବାର୍ତ୍ତା କରିବାକୁ ମତେ ବଡ଼ ବୀରକ୍ତ ଲାଗେ । ସେ ଦିନ ଏତେ କଥା କହିଲି ସବୁ ଭୁଲିଗଲ । ହିମାଂଶୁ ବାବୁ ଇଂଲିସ୍‌ଟା ଛଡ଼ା ଅନ୍ୟକୌଣସି ବିଷୟ ଭଲକରି ଦେଖୁନାହାନ୍ତି । ଅବଶ୍ୟ ଇଂଲିସ୍‌ଟା ମେନ୍ ସବ୍‌ଜେକ୍ଟ ତା ବୋଲି ଯେ ଅନ୍ୟ ସବଜେକ୍ଟରେ କଚା ରହିବ ତାହା ମୁଁ ଚାହେଁ ନାହିଁ । ପେ'ଟା ଟିକିଏ ବଢ଼େଇବାକୁ ପଡ଼ିବ ।

— ନା

— ନା ମାନେ ?

— 'ନା' ମାନେ ନା । ଏହାର ଆଉ କିଛି ମାନେ ନାହିଁ । ଛୋଟ ଲୋକଙ୍କ ପରି ଗୋଟିଏ ଟିଉଟର ଇଂଲିଶ୍ ଦେଖିବ, ମ୍ୟାଥମେଟିକ୍ସ ଦେଖିବ, ହିଷ୍ଟ୍ରି, ଜିଓଗ୍ରାଫି, ବେଙ୍ଗଲି, ଗ୍ରାମାର ସବୁ ଦେଖିବ ଏଟା କାହିଁକି ମୋତେ ବଡ଼ ଜଘନ୍ୟ ମନେ ହୁଏ । ତାହାହେଲେ ଅଭି ଆଉ ବାବୁଲ ପାଇଁ ଅଲଗା ଟିଉଟର ଅ କ'ଣ ଦରକାର ? ସାଧାରଣ କିରାନୀ ଘରେ ଯେମିତି ଟିଉସନ ହୁଏ ସେମିତି ଗୋଟାଏ ଟିଉଟର ତିନିଜଣଙ୍କୁ ଧରି ସବୁ ସବଜେକ୍ଟର ମିଶ୍ରର ଗିଳେଇ ଦେଲେ ଚମତ୍କାର ହୁଅନ୍ତା !

— ସେ କଥା ହେଉ ନାହିଁ । ହତାଶ ଭଙ୍ଗୀରେ ମନୀନ୍ଦ୍ର କହିଲା, ସେ ବିଚରା କେତେବେଳେ ଆଉ ସମୟ ପାଇବ ? ସପ୍ତାହକ ମଧ୍ୟରୁ ତିନିଦିନ ତୁମର ନାଚଗୀତ, ଏସ୍‌ରାଜଶିଖା, ଡେନ୍‌ସିଂ ମାଷ୍ଟରର ଡ୍ୟାନ୍‌ସ ଶିକ୍ଷା, ବାକି ଚାରିଦିନ ପାଇଁ ତ ହିମାଂଶୁବାବୁ ଅଛନ୍ତି । ସପ୍ତାହଟା ତ ରବର ନୁହେଁ ଯେ ଟାଣି ଟୁଣି ବଢ଼େଇ ଦେବ ।

— କାହିଁକି ସକାଳେ ? ରୁଟିନ୍ ହିସାବରେ ଚାଲିଲେ ଅନାୟସରେ ଏକ ଘଣ୍ଟା କରି ସମୟ ବାହାରି ପଡ଼ିବ !

— ସକାଳେ ? ଆହା !

— ଏଇ ସବୁ ବାଜେ ସେଣ୍ଟିମେଣ୍ଟର କୌଣସି ମାନେ ନାହିଁ । ଆହା ପୁଣି କାହିଁକି ? ଏଇଟାତ ଶିକ୍ଷାର ସମୟ । ଜଗତରେ ଯାହା କିଛି ଶିକ୍ଷଣୀୟ ବିଷୟ ଅଛି ସବୁଗୁଡ଼ିକୁ ଦେଖିବାକୁ ହେବ । ଚେଷ୍ଟା କରିବାକୁ ହେବ ।

ମନୀନ୍ଦ୍ର ମନେ ମନେ କହିବାକୁ ଲାଗିଲେ ନିଜ ଜୀବନର ସୁଯୋଗରେ ଅଭାବ ବୋଧହୁଏ ତୁମକୁ ଏମିତି ଜ୍ଞାନୀ କରି ଗଢ଼ିଛି ! ମୁହଁରେ କହିବାକୁ ସାହସ ହେଲାନାହିଁ କେବଳ ଭାବିବାକୁ ଚେଷ୍ଟାକଲେ - ଚିତ୍ରଲେଖାର ଭାଗ୍ୟରେ ଯଦି ସେ ସୁଯୋଗ ଘଟିଥା'ନ୍ତା ତାହେଲେ ମନୀନ୍ଦ୍ରର ଭାଗ୍ୟ କ'ଣ ହୋଇଥା'ନ୍ତା !

ଝିଅକୁ ସର୍ବବିଦ୍ୟାରେ ପଣ୍ଡିତ କରିବାର ଦୂରନ୍ତ ସାଧନାରେ ଝିଅର ଜୀବନଟାକୁ ଚିତ୍ରଲେଖା ଯେ ଦୁଃସହ କରିଦେଉଛି ଏଥିପାଇଁ ଭାରି ଗୋଟାଏ କ୍ଷୋଭ ଥିଲା ମନୀନ୍ଦ୍ରର କିନ୍ତୁ ସହସା ନୂତନତ୍ୱର ସ୍ୱାଦରେ ଚଞ୍ଚଳ ହୋଇ ଉଠିଲା ଝିଅଟି ।

ସପ୍ତାହର ସବୁ ଦିନକୁ ରବିବାର ପରି ଟାଣି ଟୁଣି ବଢ଼ାଇବାର ଅପୂର୍ବ କୌଶଳ ସେ ଆୟତ୍ତ କରିଥିଲା । ରବିବାରର ସକାଳ ପ୍ରହରଟାକୁ ଉଦାର ଉଦାସୀନତା ଠାରୁ ବାଦଦେଇ ରଖିଥିଲା ଚିତ୍ରଲେଖା । ସେହି ଦୁର୍ଲଭ ମୁହୂର୍ତ୍ତିଟିକୁ କାମରେ ଲଗେଇବାର ବାହାନା ନେଇ ବାପାଙ୍କ ଦରବାରରେଉପସ୍ଥିତ ହେଲା ବେବି ।

ମା' ପାଖରେ ସବୁ ବିଷୟ ପ୍ରକାଶ କରିବାକୁ କୁଣ୍ଠା କିନ୍ତୁ ବାପାଙ୍କ ପାଖରେ ନିଶ୍ଚିତ ପ୍ରଶ୍ରୟର ବିଶ୍ୱାସ ରହିଛି । ଅତଏବେ ଜଗତରେ ଯାବତୀୟ ଶିକ୍ଷଣୀୟ ବସ୍ତୁ ସଂବନ୍ଧରେ ମା'ର ଯେତେ ଉତ୍ସାହ ଥାଉନା କାହିଁକି ବେବି କିନ୍ତୁ ବାପାଙ୍କୁ ଆସି ଧରିଲା କହିଲା ସେ ଗାଡ଼ି ଚଳେଇ ଶିଖିବ ।

କନ୍ୟାର ଅଭିନବ ଇଚ୍ଛା ଶୁଣି ସସ୍ନେହେ ହସିଦେଇ ମନୀନ୍ଦ୍ର କହିଲେ କାହିଁକି କହତ ? ଅକ୍ଷୟ ରିଟାୟାର କରିବାକୁ ଚାହେଁନା କ'ଣ ?

ତାପସୀ ହସିଦେଇ ବାପାଙ୍କ ଚେୟାରରେ ଆଉଜିପଡ଼ି କହିଲା ବାଃ ସେ କଥା କାହିଁକି ହେବ ? ଶିଖିବାଟା କ'ଣ ଭଲନୁହେଁ ? ମୋଟର ଡ୍ରାଇଭିଂ କ'ଣ ମଣିଷମାନେ ଶିଖନ୍ତି ନାହିଁ ?

କହିବା ବାହୁଲ୍ୟ, ବାପାଙ୍କ ଦରବାରରେ ନିଜର ଇଚ୍ଛାଟା ଆବେଦନ କରିବା ପାଇଁ ଟିକିଏ ନିର୍ଜନ ଅବସରପାଇଁ ଯେତେ ଯେତେ ଚେଷ୍ଟା କଲେ ମଧ୍ୟ ଅମିତାଭ ତାର ସାଙ୍ଗ ଛାଡ଼େନାହିଁ । ଭଉଣୀର କଥା ଶେଷ ହେବା ସଙ୍ଗେ ସଙ୍ଗେ ନିତାନ୍ତ ଅବଜ୍ଞାଭାବେ ଅମିତାଭ କହିଉଠିଲା ମଣିଷମାନେ ଶିଖନ୍ତି ନିଶ୍ଚୟ, ଦରକାର ମଧ୍ୟ ଅଛି କିନ୍ତୁ ଝିଅ ପିଲାମାନେ ଶିଖିବେ କାହିଁକି ?

— ଅଭି ! ତୀବ୍ରଚାହାଣୀରେ ଅଗ୍ନିବୃଷ୍ଟିକରି ରାଗରେ ବାପାଙ୍କ ପାଖରେ ଅଭିଯୋଗ କଲା — ବାପା ଦେଖୁଛ ? ମତେ ଝିଅପିଲା ବୋଲି କହି ଅଭି କେମିତି ଥଟ୍ଟା କରୁଛି !

ଅର୍ଥାତ୍ ବୁଝାଗଲା ଥଟ୍ଟା ଟା ପୂର୍ବ ନିଷିଦ୍ଧ । କିନ୍ତୁ ଅମିତାଭ ଟିକିଏ ହେଲେ ଦବିଲା ନାହିଁ ସେ ବଡ଼ ପାଟିରେ କହିଲା ଯିଏ ଯାହା, ତାକୁ ସେଇଆ କହିଲେ ଥଟ୍ଟା ହୁଏ ବୋଧ ହୁଏ । ମତେ ପୁଅପିଲା ବୋଲି କହୁନୁ କିଛି ହେଲେ ରାଗ କରିବି ନାହିଁ । ଯାହା ସତ୍ୟ ତାକୁ କହିବାରେ ଦୋଷ କ'ଣ ଅଛି ?

ତାପସୀ ନିରୂପାୟ ଆକ୍ରୋଶରେ ଉତ୍ତେଜିତ ହୋଇ କହିଲା କାହିଁକି ଦୋଷ ହେବ ନାହିଁ ? କଣାକୁ 'କଣା' ବୋଲି କହିଲେ ଦୋଷ ହେବ ନାହିଁ ? ଛୋଟାକୁ ଛୋଟା ବୋଲି କହିଲେ ଦୋଷ ହେବ ନାହିଁ ? ଗରିବକୁ...... ?

ଅମିତାଭ ସହସା ଜୋରରେ ହସିଉଠିଲା ଉଦାହରଣଗୁଡ଼ା ଦାଖଲକରିବା ସମ୍ଭବ ହେଲା ନାହିଁ ତାପସୀ ପକ୍ଷରେ ।

ଝିଅ ଯୁକ୍ତିର ମୌଳିକତା ଉପରେ ମନୀନ୍ଦ୍ର ହସିପକାଇଲେ ତଥାପି ଦୁର୍ବଳର ପକ୍ଷ ଗ୍ରହଣ କରିବା ନୀତିରେ ପୁଅର ହସିବାଟାକୁ ପ୍ରତିବାଦ କଲେ ଆରେ ଅଭି ହସୁଛୁ କାହିଁକି ? ବେବି ତ ଠିକ୍ କଥା କହିଛି । ଝିଅମାନଙ୍କୁ ଝିଅ କହିଲେ ତୋ ମା' ଚିଡ଼େନାହିଁ ?

— ମା' ତ ସବୁକଥାରେ ଚିଡ଼େ । ମା କଥା ବାଦ ଦିଅ । ମା' ସମ୍ବନ୍ଧରେ ଏହି ନିର୍ଭିକ ମନ୍ତବ୍ୟଟି ଉଚ୍ଚାରଣ କରି ଅମିତାଭ ନିତାନ୍ତ ବିଚକ୍ଷଣ ପରି କହିଲା, ମୁଁ କହି ରଖୁଛି ଦିଦି ଯଦି ଏଇ ବୁଦ୍ଧି ନେଇ ଗାଡ଼ି ଚଳାଏ ତାହେଲେ ପ୍ରତିଦିନ ଏକସିଡେଣ୍ଟ ଘଟେଇବ ।

— କାହିଁକି ଶୁଣେ ? ଝିଅମାନେ ଗାଡ଼ି ଚଳେଇବା ତୁ କ'ଣ କେବେ ଦେଖୁ ନାହୁଁ ? ସେମାନେ କ'ଣ ପ୍ରତିଦିନ ଏକ୍ସିଡେଣ୍ଟ କରନ୍ତି ? ତାପସୀ ଏଥର ପାଇଲା ।

— ସେମାନେ ତୋ ଭଳି କାଉଁଦା ଝିଅ ନୁହଁନ୍ତି । ତୋ ପକ୍ଷରେ ଟଂ ଟଂ କରି ସୀତାରାବଜେଇବା ଆଉ ଚିଁ ଚିଁ କରି ଗୀତ ଶିଖିବା ହିଁ ଭଲ ।

ମନୀନ୍ଦ୍ର କୌତୁକ ସହକାରେ ପୁଅ ଝିଅମାନଙ୍କର ବାକ୍ ବିତଣ୍ଡା ଉପଭୋଗ କରୁଥିଲେ । ଏଥର ହସି ହସି କହିଲେ - ଓଃ ତାହେଲେ ଅଭିବାବୁଙ୍କ ମତରେ ଗାଇବା, ବଜେଇବା ଶିଖିବା କାଉଁଦା ଝିଅମାନଙ୍କର ଉପଯୁକ୍ତ କାର୍ଯ୍ୟ ! ମୋର ତ ଏକଥା ଧାରଣା ନଥିଲା ।

ଅଭି ବେକାଇଦାରେ ପଡ଼ି ଇଷତ୍ ଅପ୍ରତିଭ ଭାବେ କହିଲା ତା କାହିଁକି ହେବ । ଦିଦିପରି ଝିଅମାନେ ଆଉ କ'ଣ କରିବେ ?

— ସବୁ କରିବେ । ମନୀନ୍ଦ୍ର ସସ୍ନେହେ ଗାମ୍ଭୀର୍ଯ୍ୟ ସହକାରେ କହିଲେ । ଇଛା କଲେ ଚେଷ୍ଟା ଥିଲେ ସମସ୍ତେ ସବୁକାମ କରି ପାରନ୍ତି ବୁଝିଲୁ ଅଭି ? ଝିଅପିଲା ବୋଲି ତଫାତ୍ କରିବାର କିଛି ନାହିଁ । ହୁଏତ ଇମିତି ବି ହୋଇପାରେ ବେବି ତୋ ଠାରୁ ଭଲ ଡ୍ରାଇଭିଂ ଶିଖିବ ।

ଅମିତାଭ ଏକ ଅବିଶ୍ୱାସର ହସ ହସି ଦିଦି ଆଡ଼କୁ ଦୃଷ୍ଟିପାତ କଲା । ଅର୍ଥାତ୍ ଏଇ ଆନନ୍ଦରେ ହିଁ ରୁହ । ମନୀନ୍ଦ୍ର ଝିଅଆଡ଼େ ଚାହିଁ କହିଲେ ସପ୍ତାହରେ ତୋର ବେଳାଏ ମାତ୍ର ଛୁଟି ସେତକ ତୁ ଖର୍ଚ୍ଚ କରିଦେବାକୁ ଚାହୁଁଛୁ ।

ବେବି ଉତ୍ସାହ ସହକାରେ କହିଲା ଏଥିରେ ତ ଛୁଟି ପରି ମଜା । ଛୁଟି ଠୁଁ ଆହୁରି ଭଲ । ମା'କୁ କହି ବୋଲି ଟିକିଏ ଅର୍ଡ଼ର କରିଦିଅ ବାପା ।

— ହଁ ସେ ବି ଗୋଟାଏ ଦିଗ ଅଛି । ଦେଖେ ସେ କ'ଣ କହୁଛି ?

ଅମିତାଭ ନିଶ୍ଚିନ୍ତ ସ୍ୱରରେ କହିଲା — କ'ଣ ଆଉ କହିବ, ମା ତ ଏଇଆହିଁ ଚାହେଁ । ଝିଅଟି ଖାଲି ଫେସନ ଶିଖୁ । ମୁଁ ଯଦି ଏକଥାଟା କହିଥା'ନ୍ତି ମା' କହିଥାନ୍ତା ତୋର ତ ବର୍ତ୍ତମାନ ଲେଖାପଢ଼ାର ସମୟ ଏସବୁ ଥାଉ ।

ନିଜର କଣ୍ଠସ୍ୱରରେ ସେ ମା'ର କଣ୍ଠସ୍ୱରକୁ ନକଲ କରି ହସି ଉଠିଲା ।

— କିନ୍ତୁ ଶିଖେଇବ କିଏ ? ଅକ୍ଷୟ ? ଅକ୍ଷୟ ରାଜିହବତ ? ମାନେ ତାର ସମୟ ହେବତ ?

ବେବି ଆଗ୍ରହେରେ କହି ଉଠିଲା  ବହୁତ - ବହୁତ ସମୟ ତାର । ଅକ୍ଷୟକୁ ପଟାପଟି କରି ରଖିଛି କେବଳ ମା'ର ହୁକୁମ ମିଳିଲେ ହେଲା ।

ମଝିରେ ହିଁ କଥା ଅଟକିଗଲା ସ୍ୱୟଂ ମାତୃଦେବୀଙ୍କର ଆର୍ବିଭାବରେ । କଥା ବନ୍ଦକରି ବାପାଙ୍କ ଚେୟାର ସାଙ୍ଗରେ ଆଉ ଯିକିଏ ଘନିଷ୍ଠ ହୋଇ ଛିଡ଼ା ହେଲା ତାପସୀ । ତାର ଚାହାଣି ଭୀତ ଚଞ୍ଚଳ, – କ'ଣ କେଉଁ ବିଷୟରେ ବର୍ତ୍ତମାନ ପରାମର୍ଶ ଚାଲିଛି  ତମ ମାନଙ୍କର ।

– ବିଶେଷ କିଛି ନୁହେଁ, ନିତାନ୍ତ ଲଘୁଭାବେ ମନୀନ୍ଦ୍ର କହିଲେ- ବେବିର ବର୍ତ୍ତମାନ ସୌକ ହେଇଛି ସେ ଗାଡ଼ି ଚଳେଇବା ଶିଖିବ ।

ଚିତ୍ରଲେଖା ଶ୍ଳେଷ ମିଶ୍ରିତ ଏକ ହସହସି କହିଲେ ତେବେ ଭଲ ! 'ସୌକ' ବୋଲି ଗୋଟାଏ ଜିନିଷ ତୁମ ଝିଅର ଅଛି ତା ହେଲେ ? ମୁଁ ତ ଜାଣେ ସବୁ କଥା ମୋରି ସୌକ ଯୋଗୁ ହୁଏ । ଶିଖେଇବ କିଏ ? ତୁମେ ନା ଆଉ କିଏ ?

– ମୁଁ ? ମୋର ଅଭ୍ୟାସ ତ ଅକ୍ଷୟ ଖରାପ କରି ଦେଇଛି  । ସେଇ ଅକ୍ଷୟ ହିଁ ଶିଖେଇବ । ଅବଶ୍ୟ ଅଭିର ମତ ଅନୁସାରେ ।

– ଥାଉ ଥାଉ ବାଳକ ବୃଦ୍ଧ ସମସ୍ତଙ୍କର ମତାମତ ଶୁଣିବାର ସମୟ ମୋର ନାହିଁ । ମୁଁ କହିବାକୁ ଆସିଥିଲି... ।

କଥାର ଠିକ୍ ମଝା ମଝିରେ କାଳବୈଶାଖୀର ଏକ ଝଡ଼ ପରି ମାଡ଼ିଆସିଲା ସିଦ୍ଧାର୍ଥ । ଭାଇ, ଦିଦି ତମେ ସମ୍ଭ ଏଠି କ'ଣ କରୁଛ । ସେଠିଯାଇ ଦେଖନା ଅକ୍ଷୟ ଗୋଟେ ଚଢ଼େଇ ଧରିଛି ଏକଦମ ସବୁଜ  । କି ସୁନ୍ଦର ଲାଲ ଲାଲ ପାଦ ! ଗୋଟିଏ ପାଛିଆ ତଳେ ତାକୁ ଢ଼ାଙ୍କିଦେଇ ଏବେ କଞ୍ଚିରେ ଗୋଟିଏ ପଞ୍ଜୁରୀ ତିଆରି କରୁଛି । ମୁଁ ଧରିଥିଲି ତୁମେ ସବୁ ଦେଖିପାରିବ ନାହିଁବୋଲି ଦୌଡ଼ିଆସିଲି ଡାକିବାକୁ । ଦେଖିବ ଯଦି ଚାଲିଆସ ।

ଅମିତାଭ ଅବଶ୍ୟ 'ଏକଦମ ସବୁଜ' ପର୍ଯ୍ୟନ୍ତ ଛିଡ଼ା ହୋଇ ଶୁଣିବାର ଧୈର୍ଯ୍ୟ ରଖିନାହିଁ । ସମ୍ବାଦଦାତାର ସମ୍ବାଦଦାନ କାର୍ଯ୍ୟ ସଂପୂର୍ଣ୍ଣ ହେବା ଆଗରୁ ଘଟଣା ସ୍ଥଳକୁ ସେ ଦୌଡ଼ି ଦୌଡ଼ି ପଳେଇଲା । ବେବି ମଧ ନିଜକୁ ସମାଳି ପାରିଲା ନାହିଁ । ସିଦ୍ଧାର୍ଥର ସାଙ୍ଗରେ ସେ ମଧ ଦୌଡ଼ି ଦୌଡ଼ି ସେଠିକୁ ପଳେଇଲା । ଅକ୍ଷୟ ସେମାନଙ୍କର ବହୁଦିନର ପୁରୁଣାଲୋକ । ଅଧସ୍ତନ ବ୍ୟକ୍ତିମାନଙ୍କ ସାଙ୍ଗରେ ମିଳାମିଶା କରିବାକୁ ଚିତ୍ରଲେଖା ଅତ୍ୟନ୍ତ ଅପସନ୍ଦ କରନ୍ତି, ହେଲେ ମଧ ଅକ୍ଷୟ ସମ୍ବନ୍ଧରେ ପିଲାମାନଙ୍କୁ ଆକଟ କରି ପାରନ୍ତି ନାହିଁ । ''ଅକ୍ଷୟଟି ହେଉଛି ସେମାନଙ୍କ ଦୁଷ୍ଟବୁଦ୍ଧିର ପରାମର୍ଶଦାତା'' ଏହାଠାରୁ ଅଧିକ କିଛି କୁହାଯାଇ ପାରିବ ନାହିଁ ।

ଶ୍ୱଶୁର ଘରକୁ ବୋହୂହୋଇ ଆସିଲା ଦିନଠୁ ସେ ଅକ୍ଷୟକୁ ଦେଖୁଛନ୍ତି । ପୁରୁଣାଲୋକ ବୋଲି ସ୍ୱାମୀଙ୍କର କେମିତି ଗୋଟିଏ ସ୍ନେହଭାବ । ଦେଖିଲେ ହସମାଡ଼େ, ବେଳେ ବେଳେ ବି ଦେହ ଜଳି ଉଠେ । ଗ୍ରାମ୍ୟ ମନୋଭାବ ତା ଛଡ଼ା ଆଉ କ'ଣ ?

ଚିତ୍ରଲେଖା ଭାଗ୍ୟର ସବୁଆଡ଼େ ଯେମିତି କଣ୍ଟାର ବାଡ଼ ଘେରା ହୋଇଛି । ପଗଡ଼ିଧାରୀ ଛ'ଫୁଟ ଉଚ୍ଚାର ହୃଷ୍ଟପୁଷ୍ଟ ପଞ୍ଜାବୀ ଡ୍ରାଇଭର ଗାଡ଼ିରେ ରହିଲେ ସେ ଗାଡ଼ିର ଚେହେରାଟା କେମିତି ଆଭିଜାତ୍ୟପୂର୍ଣ୍ଣ- ସେ ଜାଗାରେ ଅଧାମଇଳା ଛିଟକନାର ହାଓ୍ୟାନି ପିନ୍ଧା ଏଇ ଦୁର୍ବଳ ଅକ୍ଷୟ !

ଛି !

ସ୍ତ୍ରୀଙ୍କ ମୁଖ ମୁଣ୍ଡଳରେ ନାନାବର୍ଣ୍ଣର ରେଖା ଯେ ଫୁଟିଉଠୁଥିଲା ତା ବୋଧହୁଏ ମନୀନ୍ଦ୍ରର ଆଖିରେ ପଡ଼ି ନଥିଲା ।

ହାଲୁକା ସ୍ୱରରେ କହିଲେ - ବେବି ବର୍ତ୍ତମାନ ଚିନ୍ତାରେ ପଡ଼ିଛି ସେଇଥିପାଇଁ ତୁମ ପାଖରେ ଆପତ୍ତି ।

— ଆପତ୍ତିରେ ଆଉ କ'ଣ ଅଛି ! ପିଲାଲୋକର ସୌକ, କେତେଦିନ ବା ସେ ଆଉ ରହିବ ?

ଝିଅପକ୍ଷ ନେଇ ଓକିଲାତି କରିବାର ଆବଶ୍ୟକତା ବେଶିନଥିଲା ।

ଚିତ୍ରଲେଖାର ଆପତ୍ତି କରିବାର କଥା ନୁହେଁ । ତେବେ ପ୍ରସ୍ତାବଟା ଅପରପକ୍ଷରୁ ଆସିଥିବାରୁ ବେଶି ଉତ୍ସାହ ଦେଖେଇବାର ଆବଶ୍ୟକତା ନାହିଁ ।

ନିଜେ ଯେ ବେଶୀ କିଛି ଶିଖିବାର ସୁଯୋଗ ପାଇନାହିଁ, ଏଇଥି କାରଣରୁ ମନରେ ଦାରୁଣ କ୍ଷୋଭ ସେଇଥିପାଇଁ ସନ୍ତାମାନଙ୍କ ଉପରେ ଈର୍ଷାଭାବ ଆସେ ।

ବେବି ସେଠାରୁ ଦୌଡ଼ି ପଳେଇବାପରେ ଅନ୍ୟ ଗୋଟିଏ କଥାର ଖିଅଧରି ସ୍ୱାମୀ ସାଙ୍ଗରେ କଥା କଟାକଟି ଲାଗେ ଏବଂ ଝିଅର ଏହି ସୌକ ପ୍ରସ୍ତାବର ସପକ୍ଷରେ ବା ବିପକ୍ଷରେ ବି ଯୁକ୍ତି ଦର୍ଶାଯାଇ ପାରେ ମନେ ମନେ ତାହାର ହିସାବ କରିବାକୁ ଲାଗେ ଚିତ୍ରଲେଖା ।

ସ୍ୱାମୀର ସଂସାରକୁ ଆସିବା ପର୍ଯ୍ୟନ୍ତ କ୍ରମାଗତ ଲଢ଼େଇ କରି କରି ସ୍ୱଭାବଟା ଯେମିତି 'ଯୁଦ୍ଧଂ ଦେହି'ରେ ପରିଣତ ହୋଇଯାଇଛି ।

ବୁଢ଼ୀଶାଶୁକୁ ଆଉ କୁସଂସ୍କାରାଚ୍ଛନ୍ନ ସ୍ୱାମୀର ହାତରେ ପଡ଼ି ଜୀବନଟା ଯେମିତି ଅକାରଣ ହୋଇଗଲା ।

ବାହାରୁ ମନୀନ୍ଦ୍ର ଯେତେ ସ୍ତ୍ରୀ ଅନୁଗତ ପତ୍ନୀସର୍ବସ୍ୱ ଦେଖାଗଲେ ମଧ୍ୟ ଅସଲରେ ସେ ଯେ କେତେ ଗାଉଁଲି ଚିତ୍ରଲେଖା ଛଡ଼ା ଆଉ କିଏବା ଜାଣେ ?

ଅଥଚ ଅଦୃଶ୍ୟ ବସ୍ତୁ ସହିତ ଲଢ଼େଇ ଚଳେନା । ମନୀନ୍ଦ୍ରର ବାହାରର ଅଭିନୟଟା ନିତାନ୍ତ ପକ୍ଷେ ଆତ୍ମସମର୍ପଣର ଅଭିନୟ ।

ସେଥିପାଇଁ ତ ଚିତ୍ରଲେଖାର ଏ ଜ୍ୱାଳା !

ଝିଅକୁ 'ଚୌକସ' କରି ଗଢ଼ିବାର ଯେଉଁ ଇଚ୍ଛାଟା ନିହାତି ପ୍ରବଳ ସେଥିପାଇଁ ଝିଅପକ୍ଷରେ ହିଁ ରାୟ ଦେବାକୁ ପଡ଼େ ।

ସମ୍ମତି ଦେବା ପରେ ଝିଅର ପାଦ ଆଉ ଭୂଇଁରେ ଲାଗେନାହିଁ । ମନେହୁଏ ଯେମିତି ସେ ପବନରେ ଭାସୁଛି । ସବୁକଥାଟା ତ ବୁଢ଼ୀ ପରି । କିନ୍ତୁ ଗୋଟାଏ ବିଷୟରେ ଚିତ୍ତ-ଚାଞ୍ଚଲ୍ୟ ଦେଖା ଦେଇଛି !

ନିର୍ଦ୍ଦିଷ୍ଟ ଦିନରେ ବେବି ଆଉ ଅଭି ଗାଡ଼ିପାଖରେ ଆସି ଛିଡ଼ାହେବା ମାତ୍ରେ ଭଲମଣିଷ ପରି ଅକ୍ଷୟ ପଛସିଟ୍‌ରେ ଯାଇ ବସିପଡ଼ିଲା । ଯେମତି ତାହାର ଆଉ କିଛି କାମ ନାହିଁ । ହାତଗୋଡ଼ ଯୋଡ଼ି ସେ ବସିବ ।

– ଏ କ'ଣ ତୁମେ ଚୁପ ଚାପ୍ ଭିତରେ ବସିଲ ଯେ ? ତାପସୀ ସବିସ୍ମୟରେ ପ୍ରଶ୍ନ କଲା ।

– କାହିଁକି ଆଜିତ ତୁମେ ଚଳେଇବ । ମୋର ଛୁଟି !

– ବାଃ ବଢ଼ିଆ କଥା କହୁଛ ମୁଁ ପରା ଆଜିଠାରୁ ଶିଖିବା ଆରମ୍ଭ କରିବି । ମୁଁ କ'ଣ ଚଳେଇ ପାରିବି ?

– ଓଃ ବୁଝିଲି ଇମିତି କଥା ମୁଁ ଭାବିଲି ବିବି ଦିଦି ମତେ ଆଜି ଛୁଟି ଦେଇଦେଲେ ।

– ଓଃ ଭାରିତ କାମ, ମୁଁ ଖୁବ୍ ପାରିବି । ଅମିତାଭ ସଗର୍ବେ ଚାଳକର ଆସନରେ ଯାଇ ବସିଲା ଏବଂ ଷ୍ଟିୟରିଂରେ ହାତରଖି ଗଭୀର କ୍ଷୋଭ ପ୍ରକାଶ କରି କହିଲା ଆରେ ଲାଇସେନ୍ସ ତ ନାହିଁ ଏବି ଭାରି ମୁସ୍କିଲ !

– ଏ ଅଭି, ଦୁଷ୍ଟପିଲା - ଯା ଭିତରେ ଯାଇ ବସ ଆଜି ମୁଁ ଶିଖିବି । ଅକ୍ଷୟ ଆସିଲ ମୋ ସୁନାଭାଇଟା ମା'ର ମତ ନହେଲେ ଘଡ଼ିକେ ବଦଳିଯିବି ।

– ବାଃସେ ମୁଁ ତାହାହେଲେ ଶିଖିବି ନାହିଁ ନାକକାନ୍ଦୁରା ସ୍ୱରରେ କହିଲା ଅଭି । ଝିଅମାନଙ୍କର ଶିଖିବାଟା ଭାରି ଦରକାର ନୁହେଁ । ଝିଅମାନଙ୍କର କେବଳ ସୌକ ପୁଅମାନଙ୍କର କିଛି ନାହିଁ ।

– ଆରେ ତୁମେ କ'ଣ ଆଉ ଶିଖିବ ତୁମେତ ସବୁ ଶିଖିଛ ଅକ୍ଷୟ ହସି ହସି ନିଜ ସ୍ଥାନରେ ଆସି ବସିଲା ।

ଆଗରୁ ବେବି ବୋଲି କହୁଥିଲା । ଆଜିକାଲି କ'ଣ ଭାବି କେଜାଣି 'ଦିଦି' ବୋଲି ଡାକୁଛି । ଅମିତାଭ ଅନିଚ୍ଛାସତ୍ୱେ ମନ୍ଥର ଗତିରେ ପଛ ସିଟ୍‌ରେ ଯାଇ ବସିଲା ଏବଂ ତାପସୀ ମହା ଉତ୍ସାହରେ ଆଗସିଟ୍‌ରେ ଯାଇ ବସିପଡ଼ିଲା ।

– ଆଜି ଖାଲି ମନଦେଇ ଦେଖିନିଅ ବୁଝିଲ ? କୁଆଡ଼କୁ ଯିବା ?

– କାହିଁକି ରେସ୍ କୋର୍ସ !

ଅମିତାଭ କହିଲା ସେଇଠିତ ଗାଡ଼ି ବୁଲେଇବା ସୁବିଧା ।

– ତା କାହିଁକି ? ତାପସୀ କ୍ଷୀଣ କଣ୍ଠରେ ଆପତ୍ତି ଜଣେଇଲା - ଏମିତି ଯୁଆଡ଼େ ଇଛା ହେଉଛି ଚାଲ ।

– ହଁ ଯୁଆଡ଼େ ଇଚ୍ଛା, ଅମିତାଭ ପୁରୁଷୋଚିତ ତୀବ୍ରକଣ୍ଠରେ ମନ୍ତବ୍ୟ ଦେଲା ଦିଗ-ବିଦିଗ ଜ୍ଞାନଶୂନ୍ୟ ହୋଇ ଯିବାକୁ ହେବନା କ'ଣ ? ଅକ୍ଷୟ ତୁମେ ଦିଦି କଥା କିଛି ଶୁଣନା, ତା'ର କ'ଣ କିଛି ବୁଦ୍ଧି ଶୁଦ୍ଧି ଅଛି ?

– ନା, କୌଣସି ବୁଦ୍ଧିନାହିଁ, ଯେତେ ବୁଦ୍ଧି ସବୁ ତୋରି ମୁଣ୍ଡରେ ଭର୍ତ୍ତି ହୋଇଛି । ତାପସୀ ଉଚ୍ଚସ୍ୱରରେ ଏତକ କହିଲା । କଲିକତାରେ ସବୁକଥା ଯେମିତି ଆମେ ଦେଖିଛୁ । କଲିକତାରେକେଇଟା କଲେଜ ଅଛି ଜାଣୁ ? ସବୁ ଦେଖିଛୁ ?

– କଲେଜ ? ଆହାରେ ! କି ସବୁ ଦର୍ଶନୀୟ ସ୍ଥାନ ! କହିଲୁ ନାହିଁ କଲିକତାରେ କେଇଟା ଗୁହାଳ ଅଛି ସବୁ ବୁଲି ଦେଖିଆସିବି ।

ତାପସୀର କଣ୍ଠ ଟିକିଏ ନରମ ହୋଇ ଆସିଲା ସେ କହିଲା ଗୁହାଳ ଆଉ କଲେଜ କ'ଣ ଏକା ? ଖୁବ୍ ତ ବିଚକ୍ଷଣ ବୁଦ୍ଧି ! ମ୍ୟାଟ୍ରିକ୍ ଦେବାପରେ ମତେ ବୋଧହୁଏ ଆଉ ପଢ଼ିବାକୁ ହେବ ନାହିଁ ।

– ସେଇଥିପାଇଁ କହୁଛି ଏବେ ଠାରୁ ଦରଜା ଚିହ୍ନି ରଖିବି ।

ଭାଇ ଭଉଣୀଙ୍କର ବାକ୍ ବିତଣ୍ଡା ଭିତରେ ଗାଡ଼ି ଅନେକ ଦୂର ଅଗ୍ରସର ହୋଇଯାଇଥିଲା ।

– ଏଇତ ଆସିଗଲା ପ୍ରେସିଡେନ୍‌ସି କଲେଜ ଅକ୍ଷୟ ମନ୍ତବ୍ୟ କଲା ।

ତାପସୀ ଚାଲେଞ୍ଜର ସ୍ୱରରେ କହିଲା - ଆଚ୍ଛା ଅଭି କହିଲୁ ଦେଖି ପ୍ରେସିଡେନ୍‌ସି କଲେଜରେ କେତେ ପିଲା ପଢ଼ନ୍ତି ?

– କେତେ ? ଇଃ କିଏ ଯେମିତି ଜାଣି ନାହିଁ - ପାଞ୍ଚଶହ ।

କିହବା ବାହୁଲ୍ୟ ଦିଦି ପାଖରେ ଅପମାନିତ ହୋଇଯିବା ଭୟରେ କୌଣସି ଚିନ୍ତା ନ କରି ଚଟ୍ କରି ଉତ୍ତର ଦେଲା ଅମିତାଭ । ସଙ୍ଗେ ସଙ୍ଗେ ତାପସୀ ବେପରୱା ଭାବେ ହସି ଉଠିଲା ।

— ଖୁବ୍ ଜାଣିଛୁ ? ମୁଁ କହୁଛି ଏକହଜାର କିମ୍ବା ଦୁଇହଜାର ଏଇ.... ଏଇ ଅକ୍ଷୟ ଅଟକାତ ଟିକିଏ ଗାଡ଼ିଟା । ଟିକିଏ ଛିଡ଼ାହୋଇଗଲେ ଦେଖିହେବ କେତେ ପିଲା କଲେଜକୁ ଆସୁଛନ୍ତି । ଏବେ ତ ଦଶଟା ବାଜିବ ।

— ଆଜି ଆଉ ଦଶଟା ବାଜିବ ନାହିଁ ବେବି ଦିଦି ! ଅକ୍ଷୟ ଭାଇ ଉଉଣୀର କଳିକଜିଆ ଉପଭୋଗ କରୁ କରୁ ହସିଦେଇ କହିଲା ଆଜି ଯେ ରବିବାର ।

ରବିବାର ! ରବିବାର ! ଓଃ ସତେତ ଏଇ ପ୍ରଚଣ୍ଡ ସତ୍ୟଟା ଭୁଲିଯାଇଥିଲା ତାପସୀ ! କି ଆଶ୍ଚର୍ଯ୍ୟ !

— ଦିଦି ଏଥର ପାଗଳ ହୋଇଯିବ । ଅମିତାଭ ଗମ୍ଭୀରଭାବେ ମତବ୍ୟକ୍ତ କଲା । ଦିନକୁ ଦିନ ତା ମୁଣ୍ଡର ଅବସ୍ଥା ଯା ହେଉଛି ଏବେ କ୍ଲାସ ନାଇନ୍‌ରେ ପଢୁଛି, ସେଥିରେ 'କଲେଜ' କଲେଜ' ପାଣି ପିଉନାହିଁ । କଲେଜ ପଢ଼ିଲାବେଳକୁ ଇଏ ହଷ୍ଟେଲରେ ରହିବ ଅକ୍ଷୟ ଜାଣିଛ ?

— ହଁ ରହିବି ବୋଲି କହିଛି ତତେ ?

— ସେଦିନ କହିଲୁ ନାହିଁ । ଯେଉଁଦିନ ତୋ ଗୀତମାଷ୍ଟର ଆସି ନଥିଲେ, ଆମେ ସବୁ ବଗିଚାକୁ ଯାଇଥିଲେ । ସେଦିନ କହୁନଥିଲୁ ।

— ହଁ ସେଦିନ କହିଲି ଘର ଅପେକ୍ଷା ହଷ୍ଟେଲରେ ରହିଲେ ପଢ଼ାପଢ଼ି ଭଲ ହେବ ।

— ଅକ୍ଷୟ ଭଲ ହୁଏ ନାହିଁ ? ଘର ଭଳିଆ ସେଠି କ'ଣ ଗୋଳମାଳ ଅଛି ?

— କେମିତି ଜାଣିବି ଦିଦି ? ମୋଡ଼ ଉପରେ ସାବଧାନରେ ଗାଡ଼ି ବୁଲୋଉ ବୁଲୋଉ ଅକ୍ଷୟ ଉତ୍ତର ଦେଲା ।

— କଲେଜ୍‌ରେ ପଢ଼ିନାହିଁ କି ହଷ୍ଟେଲରେ ରହିନାହିଁ ।

— ପଢ଼ିଲନାହିଁ କାହିଁକି ? ଅମିତାଭ ଗମ୍ଭୀରଭାବେ କହିଲା - ଶିକ୍ଷା ହିଁ ଜୀବନର ମୂଳଧନ ବୁଝିଲ । ଅନେକ ଅନେକ ପାଶ୍‌କଲେ ଜୀବନର ଉନ୍ନତି ହେବ । ଅକ୍ଷୟ କ୍ଷୁର୍ଣ୍ଣଭାବେ କହିଲା- କୋଉଠି ଆଉ ପାଠ ପଢ଼ି ପାରିଲି ଭାଇ, ବାପା, ଜେଜେବାପା, ଜେଜେ ସବୁ ମରିଗଲେ । ତାପସୀ ଉତ୍ସୁକ ଭାବେ କହିଲା - ସବୁ ମରିଗଲେ ବୋଧହୁଏ ପଢ଼ି ହୁଏ ନାହିଁ । ଖୁବ୍ ମନ ଖରାପ ହୋଇଯାଏ ! ଅକ୍ଷୟ ହସିପକେଇଲା - ମନ ଖରାପ ପାଇଁ ନୁହେଁ ଦିଦି, ଟଙ୍କା ଦରକାର ହେବ ନାହିଁ ?

— ଓଃ ଟଙ୍କା ! ଭାରି ଆଶ୍ୱସ୍ତଭାବରେ କହିଲା ତାପସୀ ବହୁତ ଟଙ୍କା ଥିଲେ ଯାଇ ପଢ଼ିହେବ ନୁହେଁ ?

— ଦିଦି ତୁ ଚୁପ୍ କର ! ଅମିତାଭ ବୀରକ୍ତ କଣ୍ଠରେ କହିଲା - ଏମିତି ବୋକାଙ୍କ ଭଳିଆ କ'ଣ କଥା କହୁଛୁ, ଏସବୁର କିଛିମାନେ ଅଛି ! ଅକ୍ଷୟ ବରାହନଗର ଆଡ଼େ ଚାଲ ଯିବା । ସେଦିନ କହୁଥିଲ ଯେ ତୁମ ଘର ଦେଖେଇ ଆଣିବ ବୋଲି ।

— ଅମାଘର ? ଗରିବର ଘର ସେଠି କ'ଣ ଦେଖିବ ଅଭିବାବୁ ମା' ଶୁଣିଲେ ରାଗ କରିବେ ।

— ମା'ତ ସବୁକଥାରେ ରାଗ କରନ୍ତି, ମା' କଥା ଛାଡ଼ିଦିଅ, ତୁମେ ଚାଲ । ଗାଡ଼ି ଚାଲିଥାଏ । ତାପସୀ ଅନେକ ସମୟ ଚୁପଚାପ ବସିବା ପରେ ବିଷର୍ଣ୍ଣ ମୁଖରେ କହିଲା- ଅଭି ତୁ ଏଠି ଆସି ବସ ମତେ ଭଲ ଲାଗୁନାହିଁ ।

ଛୋଟପିଲାର କଣ୍ଠରେ ଏ ଅବସାଦର ସ୍ୱର କାହିଁକି ?

— ଅକ୍ଷୟ ଆଶ୍ଚର୍ଯ୍ୟ କଣ୍ଠରେ କହିଲା ଦେହ ଖରାପ ଲାଗୁଛି ନା କ'ଣ ବେବିଦିଦି ? ଘରକୁ ଫେରିଯିବା ?

— ନା ନା ଘରଟା ବାଜେ୍ୟ ।

ବାଜେ୍ୟ ହେଲେ ବି ଘରକୁ ଫେରିବାକୁ ପଡ଼ିବ ।

ମନୀନ୍ଦ୍ର ହସ ହସ ମୁହଁରେ ପଚାରିଲେ- ତୁମେ ସବୁ କେତେଦୂର ଆଗେଇଲ ?
— ନିଆଁ ପାଉଁଶ ଆଗେଇଲେ । ଅମିତାଭ କହିଲା ଦିଦି କେବଳ ମୁହଁରେ ଓସ୍ତାଦି । ଶିଖିପାରିଲେ ତ ! ଖୋଲା ଜାଗାକୁ ଯାଇ ଶିଖିବାକୁ ହେବତ ! ତା ନକରି ନିଜର ସୌକ କଥାଟା ଦେଖୁଛି କ'ଣ ନା କଲିକତାରେ କେଇଟା କଲେଜ ଅଛି ଦେଖିବି ? ମନୀନ୍ଦ୍ରନାଥ ଚମକିଲା ଭଳି ପଚାରିଲେ କ'ଣ କେତେଟା ଅଛି ?

— କଲେଜ । ଦି ବର୍ଷପରେ ପାଶ୍ କରିବ ତ ସେଇଥିପାଇଁ କଲେଜ ଖୋଜି ବୁଲୁଛି । ମା' ଯେମିତି ଶାଢ଼ୀ ଦୋକାନ ଖୋଜି ବୁଲେ - କୌଣସିଟା ପସନ୍ଦ ହୁଏ ନାହିଁ, ତା ନୁହେଁ ବାପା ?

ବାପା କିନ୍ତୁ କଥାର ଉତ୍ତର ଦେଲେ ନାହିଁ, ତୀକ୍ଷ୍ଣଭାବେ ସ୍ତ୍ରୀର ମୁହଁକୁ ଚାହିଁ ଗୁମ୍ ହୋଇ ବସିଗଲେ । କନ୍ୟାର ଦେଖାଦର୍ଶନ ନାହିଁ । ସେ କୁଆଡ଼େ ଚାଲିଯାଇଛି ତାର ପତ୍ତା ନାହିଁ ।

ଅମିତାଭ ବାପାଙ୍କ ପାଖରେ ବସି ହସି ହସି ତର ତର କହିବାକୁ ଲାଗେ- ଆଜକାଲି ଦିଦିଟା କାହିଁକି ବୋକା ହୋଇଯାଉଛି ବାପା ! ଆଜି ରବିବାର ଖିୟାଲ

ନାହିଁ କଲେଜର କେତେ ପିଲାପଢ଼ନ୍ତି ଶୁଣିବା ପାଇଁ ବସିଥିଲେ ବାବୁ ! ଆଚ୍ଛା ବାପା ପ୍ରେସିଡେନ୍‌ସି କଲେଜ୍‌ରେ କେତେ ପିଲା ଅଛନ୍ତି । ଦିଦି କହୁଥିଲା ଏକ ହଜାର । ଏତେ ପିଲା କେଉଁଠି ଧରିବେ ବାପା !

ଦିନ ଗଡ଼ିଚାଲେ ।

ଏଇପରି ଭାବରେ ପ୍ରତିଦିନ ଛୋଟ ଭାଇ ପାଖରେ ଅପଦସ୍ତ ହୁଏ ତାପସୀ । ଅମିତାଭ ପିଲାଲୋକ ସତ ; କିନ୍ତୁ ଅକ୍ଷୟ ପାଖରେ ବସି ହାତ ପକ୍କା କରିବାକୁ ଲାଗେ ଲାଇସେନ୍ସ ପାଇବାକୁ ଆଉ କେତେଦିନ ଲାଗିବ ଦୀର୍ଘଶ୍ୱାସ ଟାଣି ତାର ହିସାବ କରେ ।

ଅଥଚ ତାପସୀ ଗାଡ଼ିରେ ଉଠି ଅନର୍ଥକ ଇଆଡ଼େ ସିଆଡ଼େ ବୁଲି ଅକ୍ଷୟକୁ ହଇରାଣ କରେ । କଲିକତାର ପ୍ରତ୍ୟେକଟି ରାସ୍ତାଘାଟ, ସ୍କୁଲ-କଲେଜ, ପାର୍କ, ସିନେମାହଲ ଦେଖିବାର ଗୋଟାଏ ବାଜେ ଖିୟାଲ ତା ମୁଣ୍ଡରେ ପଶିଛି ।

ଅମିତାଭ ସାଙ୍ଗରେ ତର୍କହେଲେ ସେ ଯୁକ୍ତି କରି ବସେ । କଲିକତାରେ ବାସକରି ଯଦି କଲିକତାର ସବୁ କିଛି ଦେଖି ନହେଲା ତବେ ଗାଡ଼ି ରଖିବାର ଲାଭ କ'ଣ ? କିନ୍ତୁ ଗୋଟିଏ ଜାଗାକୁ ବାରମ୍ବାର ଦେଖିବାର କାରଣ ସଂପର୍କରେ ସେ କୌଣସି ଯୁକ୍ତି କରିପାରେନା । ସାନଭାଇର ଜେରାରେ ସେ ଉତ୍ତର ନଦେଇ କାନ୍ଦିକି ଭସାଏ ।

ଚିତ୍ରଲେଖା ଏ ସବୁର ଖବର ରଖନ୍ତି ନାହିଁ, ରଖନ୍ତି ମନୀନ୍ଦ୍ର, କାହିଁକି କେଜାଣି ମନେ ମନେ ଶଙ୍କିତ ହେଇପଡ଼ନ୍ତି ।

ବର୍ଷଟିଏ, ଅତିକ୍ରାନ୍ତ ହେବାକୁ ଡେରି ହୁଏନା । ମନୀନ୍ଦ୍ର ଭାବି ଚିନ୍ତି ଦିନେ ପ୍ରସ୍ତାବ ଦେଲେ ଏଥର ଗ୍ରୀଷ୍ମଛୁଟିରେ ମା'ଆ ପାଖକୁ କାଶୀ ଯିବାକୁ ହେବ । ପିଲାମାନେ ଆନନ୍ଦରେ ଅଧିର ହୋଇଗଲେ ସମସ୍ତେ । ତାପସୀ ଅଧୀର ଆଗ୍ରହରେ ଚିତ୍ରଲେଖାର ମୁହଁକୁ ଚାହିଁ ଅପେକ୍ଷା କରେ ମା' କ'ଣ ରାୟ ଦେଉଛି, କିନ୍ତୁ ଚିତ୍ରଲେଖା ଯେପରି ଏକ ଝଡ଼ପରି ଉନ୍ମୁଖ ହୋଇ ସମସ୍ତ ପରିକଳ୍ପନାକୁ ଛିନ୍‌ଭିନ୍ କରିଦେଲେ ।

– ଆହୁରି ସମର ଭେକେସନରେ ମା' ପାଖକୁ କହିବାକୁ ଲଜ୍ୟା ଲାଗିଲା ନାହିଁ ତମକୁ । ପାଟିରୁ କଥା ବାହାରିଲା କେମିତି ? ଠିକ୍ ଅଛି ଯାଇପାର କିନ୍ତୁ ମନେରଖ ତମେ ସବୁ ଯିବାପୂର୍ବରୁ ମୁଁ ପଟାସିୟମ୍ ସାଇନାଇଡ୍ ଖାଇବି । ତାପରେ ତୁମର ଖୁସି ଯାହା ହେଉଛି କର ।

ଅତଏବ ପ୍ରସ୍ତାବଟା ଏତିକିରେ ବାତିଲ ହୋଇଗଲା ।

ଚିତ୍ରଲେଖା, ଝିଅକୁ ଢିଲା ପାଇଜାମା ଆଉ ହାଫସାର୍ଟ ପିନ୍ଧେଇ ପୁଅମାନଙ୍କ ସାଙ୍ଗରେ ସମାନ କରି ଗଢୁଥାଏ ଆଉ ନିଜ ବୁଦ୍ଧିମତ୍ତାର ଆତ୍ମ ଗୌରବ ନିଜେ ଅନୁଭବ କରୁଥାଏ ।

ଦିନରାତି ଗଡ଼ିଚାଲେ ।

ସୂର୍ଯ୍ୟ ଆଉ ଚନ୍ଦ୍ର ନିଜ ନିୟମରେ ଆବର୍ତ୍ତିତ ହେଉଥା'ନ୍ତି । ପୃଥିବୀର ବୟସ ବଢ଼ିବା ସାଙ୍ଗରେ ମଣିଷର ବି ବୟସ ବଢୁଥାଏ । ରାତ୍ରିର ଯବନିକା ଆଲୋକିତ ପୃଥିବୀକୁ ଢାଙ୍କେ ମୃତ୍ୟୁର ଯବନିକା ମଣିଷକୁ ଢାଙ୍କେ । କିନ୍ତୁ ପୃଥିବୀ ଜୀବନରେ ଘଟେ ନୂତନ ସୂର୍ଯ୍ୟୋଦୟ, ଘଟେ ଋତୁଚକ୍ରର ଆବର୍ତ୍ତନ । ଦୀର୍ଘ ଅବସରର ସୁଯୋଗରେ ଫୁଲର ପ୍ରତିଟି ପାଖୁଡ଼ାରେ ଝଲସି ଉଠେ ରଙ୍ଗର ସମାରୋହ, ପ୍ରଜାପତିର ଡେଣାରେ ନିତ୍ୟନୂତନ ବୈଚିତ୍ର୍ୟ, ତ୍ରୁଟିହୀନ ପ୍ରକୃତି ଦେବୀର ପ୍ରତିଟି କାମ ସମାପ୍ତି-ମଧୁର ।

ହାୟ ମଣିଷ ଏଠି ହାର୍ ମାନିଯାଇଛି । ତା' ଜୀବନରେ ଅବସର ନାହିଁ । ସେଇଥିପାଇଁ ତା'ର ତ୍ରୁଟିବହୁଳ ଜୀବନରେ ସବୁ କିଛି ଅସମାପ୍ତ ।

ଝିଅର ଭବିଷ୍ୟତ କଥା ଭାବି ମନୀନ୍ଦ୍ରନାଥ ଯେତେ ଚିନ୍ତିତ ହୋଇଛନ୍ତି ତା'ର ଶତାଂଶରୁ ଯଦି ଏକ ଅଂଶ କାର୍ଯ୍ୟକାରୀ ହୋଇଥା'ନ୍ତା । ତା'ହେଲେ ତାପସୀର ଜୀବନ ଇତିହାସ ଅନ୍ୟରୂପ ଧାରଣ କରିଥା'ନ୍ତା । କିନ୍ତୁ ମନୀନ୍ଦ୍ର କିଛି କରିପାରିଲେ ନାହିଁ । ଅନେକ କିଛି ପରିକଳ୍ପନା ମୁଣ୍ଡରେ ଧରି ଦିନେ ଚିର ଅନ୍ଧକାର ପଥରେ ଯାତ୍ରୀ ହୋଇଗଲେ ।

ହେମପ୍ରଭା ସଂସାର ତ୍ୟାଗ କରି କାଶୀବାସିନୀ ହୋଇଥିଲେ ସତ୍ୟ, କିନ୍ତୁ ଏଠାରେ ପୁଣି ଯେପରି ଧୀରେ ଧୀରେ ଏକ ନୂଆ ସଂସାର ଗଢ଼ି ଉଠୁଥିଲା ସଂସାର ଆଉ ଭିନ୍ନ କ'ଣ ? ମଣିଷର ସଂସାର । ଯେଉଁମାନେ ନିର୍ଭରଶୀଳ ଯେଉଁମାନେ ଆଶ୍ରିତ ସେମାନଙ୍କ ପାଇଁ ନିଜ ସ୍ୱାମୀ-ପୁତ୍ରର ସଂସାର ପରି ଖଟିବାକୁ ହୁଏ । ହେମପ୍ରଭାଙ୍କୁ କେନ୍ଦ୍ର କରି ଏହିପରି ଆଶ୍ରିତମାନଙ୍କର ଗୋଟିଏ ସଂସାର ଗଢ଼ି ଉଠିଥିଲା ।

ପିତୃ-ମାତୃହୀନ ଯେଉଁ ପିଲା ଦୁଇଟି ସ୍କୁଲକୁ ଯାଆନ୍ତି ସେମାନଙ୍କୁ ଖାଇବାର ବନ୍ଦୋବସ୍ତ କରିସାରି ହେମପ୍ରଭା ଗଙ୍ଗାଘାଟକୁ ସ୍ନାନ କରିବାକୁ ଯାଇଛନ୍ତି, ଏହି ସମୟରେ ପୂଜାରୀ ନନା ଦୌଡ଼ି ଦୌଡ଼ି ଆସି କହିଲା– ମା' ଗାଧୁଆ ସରିଗଲାଣି ? କଲିକତାରୁ ଲୋକ ଆସିଛନ୍ତି ଆପଣଙ୍କୁ ନେବାପାଇଁ ।

—ନ୍ବାକୁ ଆସିଛନ୍ତି ? କାହିଁକିରେ ? କିଏ ଆସିଛି ?

— ଜାଣେ ନାହିଁ ମା' ନାଆଁ କହିଲା ଲାଲ ବିହାରୀ ।

—ହଁ ହଁ.... କଲିକତା କୋଠିର ଗୁମାସ୍ତା ।

କ'ଣ କହୁଛି ସେ ? ଅଜଣା ଏକ ଆଶଙ୍କାରେ ଛାତିଟା ଥରିବାକୁ ଲାଗିଲା ହେମପ୍ରଭାଙ୍କର ।

— କିଛି କହିଲା ନାହିଁ- କେବଳ କହିଲା— ଠାକୁମା'କୁ ନେବାକୁ ଆସିଛି ।

ପ୍ରଶ୍ନ କରିବାକୁ ହେମପ୍ରଭା ଆଉ ସାହସ କଲେ ନାହିଁ । ଧୀରେ ଧୀରେ ଘରକୁ ଫେରିଲେ । ବାହାରଘରେ ଲାଲବିହାରୀ ଚୁପଚାପ୍ ବସିଥିଲା । ହେମପ୍ରଭା ଆସି ଛିଡ଼ାହେବା ମାତ୍ରେ ପାଦ ଉପରେ ଲୋଟିପଡ଼ି ଭୋ ଭୋ କରି କାନ୍ଦି ଉଠିଲା । ଆପାତତଃ ସତ୍ୟ ଖବର ଗୋପନ କରି ମନୀନ୍ଦ୍ରର ଗୁରୁତର ଅସୁସ୍ଥ କଥା କହି ହେମପ୍ରଭାଙ୍କୁ ନେଇଯିବାର ଯେ କଳ୍ପନା କରିଥିଲା, ସେ କଳ୍ପନା କଳ୍ପନାରେ ହିଁ ରହିଗଲା ସେ କିଛି କହି ପାରିଲା ନାହିଁ, କେବଳ ସ୍ତ୍ରୀ ଲୋକଙ୍କ ପରି ଭୋ ଭୋ ହୋଇ କାନ୍ଦିବାକୁ ଲାଗିଲା ।

ନାଃ, ସନ୍ଦେହର ଆଉ ଅବକାଶ ନାହିଁ ।

ହେମପ୍ରଭାଙ୍କ ପାଇଁ ଚରମ ଦଣ୍ଡାଦେଶ ଉଚ୍ଚାରଣ କରିଗଲା ମନୀନ୍ଦ୍ର । ଭାରାକ୍ରାନ୍ତ ହେମପ୍ରଭା ନିଜେ ତ ନିଜ ପାଇଁ ନିର୍ବାସନ ଦଣ୍ଡ ବାଛି ନେଇଥିଲେ, ତଥାପି ସେଥିରେ ତୃପ୍ତି ହେଲା ନାହିଁ ? ଆହୁରି ଶାସ୍ତିର ଆବଶ୍ୟକ ପଡ଼ିଲା ?

କାନ୍ଦିଲେ ନାହିଁ, ମୂର୍ଚ୍ଛା ଗଲେ ନାହିଁ, କାନ୍ଥକୁ ଭାରାଦେଇ କାଠ ପୁଣି ବସି ରହିଲେ ହେମପ୍ରଭା ।

ଅନେକ କ୍ଷଣ କାନ୍ଦିବା ପରେ ଲାଲବିହାରୀ ସ୍ଥିର ହେଲା, ଆଖିପୋଛି କହିଲା ମୋ ସାଙ୍ଗରେ ଯିବାକୁ ହେବ ଜେଜେମା ।

—ଯିବାକୁ ହେବ ? ହେମପ୍ରଭା ଚମକି ପଡ଼ିଲେ ।

—କାହା ପାଖକୁ ଲାଲବିହାରୀ ?

—ମା'ଙ୍କ ପାଖକୁ, ନାତି ନାତୁଣୀଙ୍କ ପାଖକୁ, ଆମ ପାଖକୁ । ଆପଣ ନ ଗଲେ ଆମେ କେଉଁଠି ଠିଆ ହେବୁ ଜେଜେ ମା' ?

ହେମପ୍ରଭା ଏକ ମିନିଟ୍ ନୀରବ ରହି ପଚାରିଲେ ମତେ କ'ଣ ନେଇଯିବାପାଇଁ ବୋହୂ ତୁମକୁ ପଠେଇଛି ?

ଲାଲବିହାରୀ ଢୋକ ଗିଳି କହିଲା— ତାଙ୍କର କ'ଣ ମୁଣ୍ଡ ଆଉ ଠିକ୍ ଅଛି ଜେଜେ ମା' ? ସେଇ ତ ମତେ ପଠେଇଛନ୍ତି ଖବରଟା ଦେଇଦେବାପାଇଁ ।

ହେମପ୍ରଭା ମ୍ଳାନ ହସ ହସି କହିଲେ ଖବର ଦେବାକୁ କହିଥିବ ସେ କଥା ମୁଁ ଜାଣେ । ସମସ୍ତଙ୍କ ଆଗରୁ ମୋର ଏ ଖବର ପାଇବା ଉଚିତ । କିନ୍ତୁ ଲାଲବିହାରୀ ମୁଁ ତ ସେଠିକୁ ଯାଇପାରିବି ନାହିଁ । ବୋହୂକୁ ମୋର ଏ ମୁହଁ ଦେଖେଇ ପାରିବି ନାହିଁ ।

—କିନ୍ତୁ ଜେଜେମା ନାତି ନାତୁଣୀ ମାନେ ?

—ସେମାନଙ୍କର ମୁଁ ଆଉ କ'ଣ କରିପାରିବି ଲାଲବିହାରୀ ? ହୁଏତ ଅନିଷ୍ଟ ହିଁ କରି ବସିବି ।

ସତକଥା ହେଲା— ଚିତ୍ରଲେଖା, ଲାଲବିହାରୀକୁ କହିଥିଲା କେବଳ ଟେଲିଗ୍ରାମଟା କରିଦେବାପାଇଁ । କିନ୍ତୁ ଲାଲବିହାରୀ ନିଜର ବୁଦ୍ଧି ଖଟେଇ ସିଧା ସଳଖ ଏଠିକି ଚାଲି ଆସିଛି । ହେମପ୍ରଭାଙ୍କର ସ୍ଥିର ମନୋଭାବ ଦେଖି ତା'ର ଆଉ ଭରସା ହେଲାନାହିଁ ତଥାପି କାତରକଣ୍ଠରେ କହିଲା ତେବେ କ'ଣ ଏକଲା ଫେରିଯିବି ଜେଜେମା ?

—ଏକଲା ତ ସମସ୍ତଙ୍କୁ ଫେରିବାକୁ ହେବ ଲାଲବିହାରୀ । ହେମପ୍ରଭା ଆଉ ଥରେ ମ୍ଳାନ ହସ ହସିଲେ । ନୀରବତାରେ କିଛି ସମୟ କଟିଲା, ହେମପ୍ରଭା କହିଲେ— ଲାଲବିହାରୀ ଏଥର ଉଠ ଗାଧୁଆ ପାଧୁଆ କର, ପାଟିରେ ଟିକିଏ କ'ଣ ଦେଇଦିଅ ।

ଲାଲବିହାରୀ ଆଉ ଥରେ ପୁଣି ହା-ହାକାର କରି ଉଠିଲା । ଜେଜେମା ଏ ପ୍ରକାର ଅନୁରୋଧ ମତେ କରିବେ ନାହିଁ ।

ହେମପ୍ରଭା ସ୍ଥିର କଣ୍ଠରେ କହିଲେ— କରିବି ତ ନିଶ୍ଚୟ । ମୁଁ ନିଜେ କ'ଣ ଏକ୍ଷଣି ସ୍ନାନ- ଆହାର କରିବି ନାହିଁ ? ଆଜି ନ ପାରିଲେ କାଲି କରିବି । 'ମନି' ଯେତେବେଳେ ମା' ବୋଲି ଟିକିଏ ଦୟା ମାୟା କଲାନାହିଁ, ମୁଁ କେଉଁ ଲଜ୍ଜାରେ ଅଭିମାନ କରିବି, ଶୋକ କରିବି ?

ଯେଉଁ ବିବାହ ଘଟଣାକୁ କେନ୍ଦ୍ର କରି ଏତେ କାଣ୍ଡ, ତାପସୀ ଛଡ଼ା ଆଉ ଯେ ଜଣେ ତାହାର ଅଂଶୀଦାର ଅଛି ସେ କଥା ଭୁଲିଗଲେ ଚଳିବ କେମିତି ? ବିଚରା ବୁଲୁ ଆଡ଼େ ତ ଟିକିଏ ଚାହିଁବାକୁ ହେବ । ଅଚଳାଚଳ ସମ୍ପତ୍ତିର ମାଲିକ ହେଲେ ମଧ୍ୟ ପିତୃମାତୃହୀନ ଅସହାୟ କିଶୋର ଯେଉଁଦିନ ଯୌବନର ଏକମାତ୍ର ନିର୍ଭରସ୍ଥଳ ପିତାମାତାଙ୍କୁ ଅକସ୍ମାତ ହରାଇ ବସିଲା, ସେଦିନ ସେହି ଅଚଳାଚଳ ସମ୍ପତ୍ତି ଆଡ଼େ ଚାହିଁ କିଛିମାତ୍ର ଯେ ଭରସା ପାଇଥିଲା ଏମିତି ମନେ କରିବାର କାରଣ ନାହିଁ ।

ଚାରିଆଡ଼କୁ ଚାହିଁ ଗୋଟିଏ ନିଶ୍ୱାସ ରୋଦ୍ଧକାରୀ ଗୁରୁ ଦାୟିତ୍ୱ ଛଡ଼ା ଅନ୍ୟ କିଛି ଦେଖିବାକୁ ପାଇଲା ନାହିଁ ।

ସ୍ୱପ୍ନପରି କ'ଣ ଯେ ଗୋଟାଏ କାଣ୍ଡ ଘଟିଯାଇଛି ସେ ଚିତ୍ର ଆଉ ସ୍ପଷ୍ଟ ମନେ ପଡୁନାହିଁ । ଭଲଭାବରେ ବୁଝିସୁଝି ବିବାହରେ ଅସମ୍ମତି ପ୍ରକାଶ କରିବାର ବୟସ ସେତେବେଳେ ହୋଇନାହିଁ, ତା'ଛଡ଼ା ସମୟ ମଧ୍ୟ ନଥିଲା । ଘଟଣାଟା ଯେ ସତରେ 'ବିବାହ' ଏକଥା କ'ଣ ସେ ବୁଝିପାରିଛି ? ବିବାହ ଏବଂ ଜେଜେବାପାଙ୍କର ମୃତ୍ୟୁ ଏ ଦୁଇଟି ଯାକ ଘଟଣା ଅପ୍ରତ୍ୟାଶିତ, ଦୁହେଁଯାକ ଯେପରି ସହି ସଙ୍ଗାତ ହୋଇ ଉପରକୁ ମାଡ଼ି ଆସିଲେ । ନିଃସଙ୍ଗ ଭାବରେ ରାସ୍ତାରେ ଯାଉ ଯାଉ କେଉଁଠୁ ଯେପରି ଗୋଟାଏ ପାହାଡ଼ର ଚୂଡ଼ା ଝଡ଼ ବତାସରେ ଉଡ଼ିଆସି ମୁଣ୍ଡ ଉପରେ ଅଜାଡ଼ି ପଡ଼ିଲା । ଅପ୍ରତ୍ୟାଶିତ ଏତେବଡ଼ ଆଘାତରେ ମୂଢ଼, ବିପର୍ଯ୍ୟସ୍ତ ଦିଗହରା ହେଲେ ମଧ୍ୟ ତଥାପି ସେ କାନ୍ତି ମୁଖାର୍ଜୀର ନାତି ଯେ ! ଦିଗଭ୍ରଷ୍ଟ ହେଲେ ମଧ୍ୟ କର୍ତ୍ତବ୍ୟହରା ହୋଇନାହିଁ । ଶ୍ରାଦ୍ଧର ଆୟୋଜନରେ କୌଣସି ଟିକିଏ ତ୍ରୁଟି ହେଲାନାହିଁ । ଦାନ ଧ୍ୟାନ, ବ୍ରାହ୍ମଣ ବିଦାକି, ଦରିଦ୍ର ନାରାୟଣ ଭୋଜନ ଉଚିତ ପ୍ରକାରରେ ହେଲା । ଅର୍ଥବଳ, ଲୋକବଳ କୌଣସିଟାର ଅଭାବ ନଥିଲା, କେବଳ ଇଚ୍ଛା ପ୍ରକାଶର ଅପେକ୍ଷା ।

ନିମନ୍ତ୍ରଣ କାର୍ଡ଼ ବାଣ୍ଟିବା ସମୟରେ ପିଉସୀ ରାଜଲକ୍ଷ୍ମୀ କଥାଟା ଉଠାଇଲେ କହିଲେ ବିବାହ ଯେତେବେଳେ ହୋଇଛି ଉଡ଼େଇଦେବାର ଉପାୟତ ନାହିଁ । ଶ୍ୱଶୁରଙ୍କୁ ନିମନ୍ତ୍ରଣ କରି ବୋହୂକୁ ନେଇଆସୁ ବୁଲୁ । ସ୍ୱାମୀ ସ୍ତ୍ରୀଙ୍କୁ ଗୋଟିଏ ତୁଠରେ ଗାଧୋଇବାକୁ ହେବ ଏକଥା କେଉଁ ହିନ୍ଦୁ ଲୋକ ନ ଜାଣେ ? ଏଥିରେ ତାପସୀ ହେରିକାଙ୍କ ପକ୍ଷରୁ ଆପତ୍ତି କରିବା ବାଟ କାହିଁ ?

ନିଜର ପିଉସୀ ନୁହେଁ, କାନ୍ତି ମୁଖାର୍ଜୀର ଦୂର ସମ୍ପର୍କୀୟା ଭଉଣୀ । ତେବେ ବୁଲୁର ମା' ମରିଯିବା ପରେ ବୁଲୁର ସମସ୍ତ ଦାୟିତ୍ୱ ସେ ବହନ କରିଛନ୍ତି । ନିଜ ପିଉସୀଠାରୁ ଅଧିକ ଆତ୍ମୀୟ ହୋଇ ଏଇ ଘରେ ସେହିଦିନଠାରୁ ରହିଯାଇଛନ୍ତି । କାନ୍ତି ମୁଖାର୍ଜୀ ମଧ୍ୟ ନିଜର ଝିଅପରି ସ୍ନେହ ଶ୍ରଦ୍ଧା କରି ଆସିଛନ୍ତି । ଘର ଭିତରର ଯାହା ଭଲ ମନ୍ଦ, ବନ୍ଧୁ ବାନ୍ଧବ, ଭାର ବେଭାର ଏସବୁ ବିଷୟରେ ଉପଦେଶ, ପରାମର୍ଶ ଦେବାର ଅଧିକାର ତା'ର ଅଛି ।

ବୁଲୁକୁ ନୀରବ ରହିବାର ଦେଖି ସେ ସାମାନ୍ୟ ଜୋରକରି କଥାର ପୁନରାବୃତ୍ତି କଲେ ।

—ଶୁଣ୍ ବାବା, ବର୍ତ୍ତମାନଠାରୁ ତୋତେ ସବୁକଥା ମୁଣ୍ଡକୁ ନେବାକୁ ହେବ, ସେଇଥିପାଇଁ କୌଣସି କଥାକୁ ଏଡ଼େଇ ଗଲେ ଚଳିବ ନାହିଁ । ଶୁଣିବାକୁ ହେବ, ବୁଝିବାକୁ ହେବ । ବୋହୂକୁ ନ ଆଣିଲେ ଚଳିବ ନାହିଁ ।

କିନ୍ତୁ ନିଜର ଗୁରୁଦାୟିତ୍ୱ ସମ୍ବନ୍ଧରେ ବୁଲୁ ଯେତେ ଅବହିତ ଥିଲେ ମଧ୍ୟ, ପିଉସୀ କଥାରେ ଉତ୍ତର ଦେଲା ନାହିଁକି, ମୁହଁ ବି ଖୋଲିଲା ନାହିଁ । ରାଜଲକ୍ଷ୍ମୀ ପୁଣିଥରେ କହିଲେ ମୁଁ ଶୁଣିଛି ସେମାନେ କଲିକତା ଚାଲିଗଲେଣି । ସେମାନଙ୍କର ଏଇଟା ନିହାତି ଅଭଦ୍ରାମି । ତଥାପି ଆମର କର୍ତ୍ତବ୍ୟ ଆମ ପାଖରେ ଅଛି । ମୁଁ ସରକାରବାବୁଙ୍କୁ କହି ସବୁ ଠିକ୍ କରିଦେଉଛି, କାଲି ସକାଳ ଗାଡ଼ିରେ ତୁ ସରକାରବାବୁଙ୍କ ସାଙ୍ଗରେ ଚାଲିଯା, ବୁଝିଲୁ ? ଦିନଟିଏ କଲିକତାରେ ରହି ପହରଦିନ ବୋହୂଙ୍କୁ ସାଙ୍ଗରେ ଧରି ଫେରି ଆସିବୁ ।

ଏତେବେଳେକେ ବୁଲୁ ମୁଣ୍ଡ ହଲେଇ କଥା କହିଲା– ଏସବୁ ମୁଁ ପାରିବି ନାହିଁ, ଚିହ୍ନି ନାହିଁକି ଜାଣି ନାହିଁ ।

ରାଜଲକ୍ଷ୍ମୀ ହସି ପକେଇ କହିଲେ– ଚିହ୍ନିବାକୁ ତ ହେବ ! ନା ହେବ ନାହିଁ ? ତତେ କିଛି କହିବାକୁ ବୋଲିବାକୁ ପଡ଼ିବ ନାହିଁ ବାବୁ ଖାଲିଥରେ ଯାଇ ଛିଡ଼ା ହେବାକୁ ପଡ଼ିବ ଲୋକାଚାର ଦୃଷ୍ଟିରୁ । ଯା କହିବାର କଥା ସରକାରବାବୁ କହିବେ ।

—ସରକାର ବାବୁ ନିଜେ ଯାଉ ନାହାନ୍ତି !

—ନାଁରେ ବାବୁ ତା ହୁଏନା । ଏସବୁ ସମାଜ ଆଉ ସାମାଜିକତାର କଥା, ଯାହା ନିୟମ ତା' କରିବାକୁ ହୁଏ । ତୋର ଯେତେବେଳେ ଦାୟିତ୍ୱ–

—ହଁ ଦାୟିତ୍ୱ– ଭାରି ଗୋଟାଏ ଦାୟିତ୍ୱ ! ମତେ କେହି ଚିହ୍ନେ ?

—ନାଃ ଏ ପୁଅଟା ଅଚିହ୍ନା ଭୟରେ ସରମି ଯାଉଛି ଖାଲି । ଆରେ ବାବୁ ଏଇ ସୂତ୍ରରେ ଚିହ୍ନା ପରିଚୟ କରିବାକୁ ତ ହେବ । ଆକସ୍ମିକ ଭାବେ କାମଟା ହୋଇଯାଇଛି ଝିଅର ବାପ ମା' ଜାଣି ପାରିନାହାନ୍ତି । କଥାଟା ଅଧାସିଝା ଖେଚୁଡ଼ି ପରି ହୋଇ ରହିଛି ତାକୁ ପରିଷ୍କାର କରିଦେବା ଦରକାର ତ ! ମୁଁ ଅବଶ୍ୟ ତାଙ୍କୁ ନିନ୍ଦା କରିବି ଝିଅର ଜେଜେ ମା' ଯେତେବେଳେ ନିଜେ ବସି କନ୍ୟାଦାନ କରିଛନ୍ତି, ସେଥିରେ ମା' ବାପର କହିବାର କ'ଣ ଅଛି ? ତା'ଛଡ଼ା ହିନ୍ଦୁ ଘରର ଝିଅ ବାହାଘର ଫେରସ୍ତ ନେଇପାରିବେ ନାହିଁ ତ । ଇଆଡ଼େ ଏତେବଡ଼ ଗୋଟାଏ ବିପଦ ଘଟିଗଲା ଖୋଜ ଖବର ନାହିଁ । ଝିଅକୁ ନେଇ କଲିକତା ଚଲ୍ । ଝିଅ ନ ହେଲା ନାହିଁ, ତୁମେ ସବୁ ମସ୍ତ ଦାମୀ ଲୋକ, ଆଉ ଆମ ପୁଅଟା ଗୋଟାଏ ସାଉଁଟା ବୋଧହୁଏ ! କହିବା ବାହୁଲ୍ୟମାତ୍ର ରାଜଲକ୍ଷ୍ମୀ – ଦେବୀ ବୁଲୁକୁ ଯେ ଉପଯୁକ୍ତ ଶ୍ରୋତାଭାବି ଏକଥା ସବୁ ଶୁଣେଉଛନ୍ତି ତା'ନୁହେଁ, ବୁଲୁ ଉପଲକ୍ଷ ମାତ୍ର, ନିଜ ମନର ବିରକ୍ତିଟାକୁ ସେ ପ୍ରଶ୍ନୋତ୍ତର ମାଧ୍ୟମରେ ପ୍ରକାଶ କରୁଛନ୍ତି ମାତ୍ର ।

ଏସବୁ କଥା ବକି ବକି ସରକାରବାବୁଙ୍କୁ ଡାକି ପଠାଇବାର ଉଦ୍ୟମ କରିବାରୁ ବୁଲୁ ସରମରେ ଝାଳେଇଗଲା କହିଲା– ପିଉସୀ ମା' ଏସବୁ କିଛି କରିବାକୁ ହେବ ନାହିଁ । ମିଛେ... ମିଛେ–

ପିଉସୀ ମା' ସନ୍ଦିଗ୍ଧ ଭାବେ କହିଲେ ସତ୍ୟ ନୁହେଁ କ'ଣ ?

—ଏଇ ସବୁ କଥା ।

ବୁଲୁର ସୁକୁମାର ଲାବଣ୍ୟମୟ ମୁହଁଟି ଲଜ୍ଜାରେ ଲାଲ ହୋଇଗଲା ।

ତଥାପି ପିଉସୀ ମା' ବୁଝିପାରିଲେ ନାହିଁ କିମ୍ବା ବୁଝି ନ ପାରିବାର ଅଭିନୟ କଲେ, କହିଲେ କ'ଣ ସବୁ ଖୋଲି କରି କହିଲୁ ମୋ ସୁନାପୁଅଟା । ନ କହିଲେ ମୁଁ କେମିତି ବୁଝିବି ?

ମୁଣ୍ଡ ହଲେଇ ବୁଲୁ ଜୋହାରରେ କହି ଉଠିଲା— ନାଁ ତୁମେ କିଛି ବୁଝି ପାରୁନା— ସବୁ ବାଜେ କଥା— ଯଦି ବୁଝି ନ ପାରୁଛ ତ ନାହିଁ ।

—ପାରିଲି ନାହିଁ, ରାଜଲକ୍ଷ୍ମୀ ହତାଶ ଭଙ୍ଗୀରେ କହିଲେ— ନ ପାରିଲେ ଉପାୟ ଆଉ କ'ଣ ? ଏଇସବୁ  ବୁଝିବା ମୋର କାମ ନୁହେଁ ।

—ଆଃ ସେଦିନ ଯାହାସବୁ କାଣ୍ଡ କାରଖାନା ହେଲା କିଛି ହିଁ ସତ୍ୟ ନୁହେଁ, ଜେଜେ ଖାଲି ଖାଲି କାହିଁକି ଯେ ମତେ... ?

ସହସା ଜେଜେଙ୍କର କଥା ମୁହଁରେ ଆସିବାରୁ, ଅଭିମାନରେ, ବେଦନାରେ ନୀଳ ଆକାଶ ପରି ଉଜ୍ଜ୍ୱଳ ଆଖି ଦୁଇଟି ଆସନ୍ନବର୍ଷଣମୁଖୀ ମେଘ ପରି ଗଭୀର କଳା ହୋଇ ଆସିଲା । ଗୋଟାଏ ଦମ୍‌କା ଶୀତଳ ପବନକୁ ଅପେକ୍ଷା, ଝରି ପଡ଼ିବାକୁ ବିଳମ୍ୱ ହେବ ନାହିଁ ।

—ଜେଜେ, ଜେଜେ ! ଯେଉଁ ନାମ ତା'ର ଅସ୍ଥିରେ ମଜାରେ ଶିରାରେ, ରକ୍ତରେ ଏକାକାର ହୋଇ ମିଶି ଯାଇଛି, ସେ ନାମର ଅଧିକାରୀ ଯେ ତ୍ରିଭୂବନରେ କେଉଁଠି ହେଲେ ନାହିଁ, ଏ କଥା ବିଶ୍ୱାସ କରିବା କ'ଣ ସହଜ ! 'ଜେଜେ ନାହାଁନ୍ତି' ଏହି କଥା ମନେ ମନେ ଉଚ୍ଚାରଣ କରିବାମାତ୍ରେ ହିଁ ମୁଣ୍ଡ ଭିତରେ କେମିତି ଗୋଟାଏ ପ୍ରବଳ ଆଲୋଡ଼ନ ହୁଏ, ଦୁଇ ଆଖି ଲୁହରେ ଝାପ୍‌ସା ହୋଇ ଆସେ ।

ଛୁଟି ଯାଇ ଧରି ଆଣିବା ଯଦି ସମ୍ଭବ ହୁଅନ୍ତା !

ଶୋକ କି ଦୁଃଖ ତାହା ବୁଝି ପାରିଲା ନାହିଁ ବୁଲୁ, ମନ ଭିତରେ ରାଗ ହେଲା । ହଁ ରାଗ ହୁଏ, ତା' ଜେଜେ ଉପରେ । ବୁଲୁକୁ ଏମିତି ଭସେଇ ଦେଇ ଦିବ୍ୟ ଭାବରେ କେଉଁଠି ଯାଇ ବସି ରହିଲେ ବୁଲୁ ବର୍ତ୍ତମାନ କରେ କ'ଣ ?

ଖାଲି କ'ଣ ବିଷୟ ସମ୍ପତ୍ତି, କୋଲିଆରୀର ହିସାବପତ୍ର, ଅଥବା ବୁଲୁର ନିଜର ଭବିଷ୍ୟତର ଭାବନା ? ଆଉ ଗୋଟାଏ କି ମୁସ୍କିଲକାଣ୍ଡ କରି ନ ଗଲେ ! ସେଇଟାକୁ ଭଲ କରି ଭାବିବାକୁ ମଧ ସାହସ ହୁଏ ନାହିଁ ।

ତେବେ ଯାହା ହେଉ ଘଟଣାକୁ ''କିଛି ନୁହେଁ- ଖେଳ'' ବୋଲି ଭାବି ନେଇ ଏଇ ଆଠଦିନ ହେଲା ଶାନ୍ତ ହୋଇଛି ବିଚରା । ପିଉସୀ ମା' ପୁଣି ନୂଆ କରି କଥାଟାକୁ ଯୋଡ଼ି ବସିଲେ ।

—'ବୁଲୁର ବାହାଘର ହେଇ ଯାଇଛି ।'

ଏକଥା ଶୁଣିଲେ ବନ୍ଧୁମାନେ କ'ଣ କହିବେ ? କିନ୍ତୁ ବିବାହଟା କ'ଣ ସତ୍ୟ ? ଜେଜେଙ୍କର ମୃତ୍ୟୁପରି ଏହା ମଧ ନିତାନ୍ତ ଅବିଶ୍ୱାସ ଘଟଣା । କୌଣସି ପ୍ରକାରେ ମନକୁ ମନେଇ ହେଉନାହିଁ ।

ଅଥଚ ସମ୍ପୂର୍ଣ୍ଣ ଭାବେ ଭୁଲିଯିବା ମଧ କଠିନ ।

ବୁଲୁର କଥାଟା ଶେଷ ହେବା ସଙ୍ଗେ ସଙ୍ଗେ ରାଜଲକ୍ଷ୍ମୀ ଲୁଗା ପଣତରେ ଆଖି ପୋଛୁ ପୋଛୁ କହିଲେ— ଶେଷ ବେଳକୁ ମାମୁଁଙ୍କର କାହିଁକି ଯେ ଗୋଟାଏ ଜିଦ୍ ହେଲା ଜାଣେ ନାହିଁ; ସେ ଭଲ କଲେକି ମନ୍ଦ କଲେ । ସେମାନେ ମଧ କେମିତିକା ମଣିଷ କେଜାଣି— ଯାହା ତ ବ୍ୟବହାର ଦେଖାଇଲେ ! ଧର୍ମକୁ ସାକ୍ଷୀରଖି ବାହାଘର ଯେତେବେଳେ ହୋଇଯାଇଛି, 'ସତ ନୁହେଁ' ଏକଥା ତୁ କହି ପାରିବୁ ନାହିଁ ।' ଆରେ ସେଇ କଥା କହୁଛି— ବର୍ତ୍ତମାନ ତାହା ହସିବାର କଥା ହୋଇଛି, ନ ହେଲେ ଏଣ୍ଟ୍ରାନ୍ସ ପାଶ୍ କରି ବାହାଘର ! ଆଗ ଅମଳରେ ଖୁବ୍ ଥିଲା । ବାପାଟା ପରା ତୁ ଯା ଆଉ ଅମତ ହେଲେ ଚଳିବ ନାହିଁ । ସରକାରବାବୁଙ୍କ ହାତରେ ମୁଁ ଚିଠି ଖଣ୍ଡେ ଦେଇ ଦେଉଛି ପଠେଇ ଦେବା କଥା ଜୋର ଦେଇ କହିଛି । କହିବାକୁ ଗଲେ ଅଧେ ବାହାଘର ହୋଇଯାଇଛି କେବଳ ଚୌଠି, ଅଷ୍ଟମଙ୍ଗଳା ହୋଇନି ଏଠାରେ ଯେତେବେଳେ ଶ୍ରାଦ୍ଧ ପିଣ୍ଡଦାନ ହୋଇଯିବ ସେତେବେଳେ ଏକାମ ବି କରେଇ ନେବାକୁ ହେବ ।

—ଧେତ୍ ଏସବୁ ମୁଁ କିଛି କରିପାରିବି ନାହିଁ, କହିଦେଇ ଉଠି ପଳେଇଗଲା ବୁଲୁ ।

ଶେଷ ପର୍ଯ୍ୟନ୍ତ ରାଜଲକ୍ଷ୍ମୀ ବେଶ୍ କିଛି ଭଣିତା କରି ଖଣ୍ଡିଏ ଚିଠି ଲେଖି ସରକାରବାବୁଙ୍କ ହାତରେ ପଠାଇଦେଲା ଏବଂ ବୋହୂ ଆସିବା ଆଶା ଓ ଆଶଙ୍କାରେ ଦିନ ଗଣିବାକୁ ଲାଗିଲେ ।

ଆଶାର କିଛି ଜୟହେଲା ନାହିଁ, ହେଲା ଆଶଙ୍କାର ।

ସରକାରବାବୁ ସନ୍ଧ୍ୟା ଗାଡ଼ିରେ ଏକା ଫେରି ଆସିଲେ । ଆସିକରି ନୂଆବନ୍ଧୁ ସମ୍ପର୍କରେ ଏପରି ମନ୍ତବ୍ୟ କରିଲେ ଯାହା ଶ୍ରୁତି ମଧୁର ନୁହେଁ କି ସମ୍ମାନ ସୂଚକ ମଧ ନୁହେଁ ।

କେବଳ ଆଶାଭଙ୍ଗ ଓ ମନସ୍ତାପର ନୁହେଁ— ଅପମାନର ଜ୍ୱାଳାରେ ରାଜଲକ୍ଷ୍ମୀ ପାଟିରେ ଯାହା ପଶିଲା ତାହା ଗାଳି ଦେବାକୁ ଲାଗିଲେ । ଏବଂ ଶେଷରେ ଏକ କଟ

ମନ୍ତବ୍ୟ ଦେଇ କହିଲେ ଝିଅକୁ ମୁଣ୍ଡରେ ଧରି ବସିଥା'ନ୍ତୁ । ଦେଖିବି କାନ୍ତି ମୁଖାର୍ଜୀର ନାତିକୁ ବୋହୂ ମିଳିବ କି ନାହିଁ ? ବୁଲୁକୁ ମୁଁ ପୁଣି ଥରେ ବାହା କରେଇବି... କରେଇବି ।

ନିଜ ପଢ଼ାଘରେ ବସି କଥା ଶୁଣିଲା ବୁଲୁ, କିନ୍ତୁ ତାକୁ ଆଉ କେହି କିଛି କହିଲେ ନାହିଁ । ତା' ନିଜର ମଧ କ'ଣ କହିବାର ଅଛି ? ତଥାପି ମନେ ମନେ ଭାବିଲା ସରକାରବାବୁଙ୍କ ପଛେ ପଛେ ଯଦି ବୋହୂଟିଏ ଏ ଘର ଭିତରକୁ ପଶି ଆସିଥା'ନ୍ତା କେମିତି ଲାଗିଥା'ନ୍ତା ।

ମଣିଷ ନା ଛବି ?

ଜେଜେଙ୍କ ଘରେ ବୀଣା ବଜାଉଥିବା ସରସ୍ୱତୀଙ୍କର ଗୋଟିଏ ଛବି ଅଛି । ରୂପଟି ଠିକ୍ ସେହିପରି ନୁହେଁ କି ? ଅବଶ୍ୟ ସେହି ଅଦ୍ଭୂତ ରାତିର କଥା ତା'ର କିଛି ମନେ ପଡ଼େ ନାହିଁ । ମନେ ପକେଇବାକୁ ଚେଷ୍ଟା କଲେ ଦିନର ଆଲୁଅରେ ଦେଖିଥିବା ଖଣ୍ଡେ ଝକ୍ ଝକ୍ ଜରିଦାର ଲାଲ ଶାଢ଼ୀ ଆଖି ଆଗରେ ଭାସି ଉଠେ । ଭାବିବାକୁ ଗଲେ ବଲ୍ଲଭଜୀ ମନ୍ଦିରର ଛାୟାଟା କେବଳ ମନରେ ପଡ଼ିଯାଏ ।

କିଛି ପରିମାଣରେ ଆଲୋକ କିଛି ପରିମାଣରେ ଅଲୌକିକତା । ତା'ଛଡ଼ା ଆଉ କ'ଣ ?

ଶ୍ରାଦ୍ଧ-ଶାନ୍ତି ଏସବୁ ମେଣ୍ଟି ଗଲାପରେ କଲିକତା ଫେରିଯିବାକୁ ପ୍ରସ୍ତୁତ ହେଲା ବୁଲୁ । କିନ୍ତୁ ରାଜଲକ୍ଷ୍ମୀ ଗାଆଁ ଘରଛାଡ଼ି ଯିବାକୁ ରାଜି ହେଲା ନାହିଁ । ତା'ର କ'ଣ ଦରକାର କଲିକତାରେ ? ବୁଲୁ କାଲେ ହଷ୍ଟେଲରେ ରହି ପଢ଼ାପଢ଼ିର ବ୍ୟବସ୍ଥା କରିଛି । ତେବେ ତାଙ୍କର କ'ଣ ଗରଜ ପଡ଼ିଛି ଯେ କେତେ ଜଣ ଚାକର-ଚାକରାଣୀ ନେଇ କଲିକତାର ଏତେବଡ଼ ବିରାଟ ଘରଟାରେ ଆବୁରି ବସିବେ । କ'ଣ ନିଆଁ ପାଉଁଶ ଅଛି କଲିକତାରେ ? ଏଠି ତ ଭଲ, କିଛି ନ ହେଲେ ମଧ ବଲ୍ଲଭଜୀଙ୍କ ମନ୍ଦିରରେ ଦି'ଘଣ୍ଟା ବସିଲେ ମନ କେତେ ହାଲୁକା ହୋଇଯିବ । ରାଣୀଗଞ୍ଜ ଫେରିବାର ଆଶା ତାଙ୍କର ପୂର୍ଣ୍ଣ ହୋଇଛି । ମାମୁଁଙ୍କର ସେବାପାଇଁ କିଛି, ତା'ଛଡ଼ା ବୁଲୁର ଦେଖାଶୁଣା । ସବୁଠାରେ ସେ ମାମୁଁଙ୍କ ସାଙ୍ଗେ ସାଙ୍ଗେ ରହି ଆସିଛନ୍ତି । ଆଜି ସବୁ ଦିଗରୁ ମୁକ୍ତି ।

ମାତୃହୀନ ଶିଶୁ ବର୍ତ୍ତମାନ ସ୍ୱାବଲମ୍ବୀ ବୀରପୁରୁଷ ହୋଇ ଛିଡ଼ା ହୋଇଛି । ଆଉ ମାମୁଁ ତ ବେଶ୍ ସୁନ୍ଦର ଭାବରେ ନିଜର ରାସ୍ତା ବାଛି ନେଇ ଚାଲିଗଲେ । ଅତଏବ ରାଜଲକ୍ଷ୍ମୀର କର୍ତ୍ତବ୍ୟ ପୂର୍ଣ୍ଣ ହୋଇଛି ।

ତେବେ ଆଉ ଗୋଟେ କଥା ସ୍ୱାଭାବିକ ନିୟମରେ ଯଦି ସଂସାରଟା ଚାଲନ୍ତା ତାହେଲେ କଥାଟା ନିଆରା । ବୁଲୁ ହଷ୍ଟେଲରେ ପଢ଼ିରହୁ, ପଢ଼ିବାର ଯଦି ଅସୁବିଧା ହୁଏ ତାହାହେଲେ ରାଜଲକ୍ଷ୍ମୀ କ'ଣ ଆଉ ବାଧା ଦେବ ? ଏମିତି ଅବୁଝା ନୁହେଁ ସେ ପୁଅ ମୂର୍ଖ ହୋଇ ଫୁର୍ତ୍ତିମାରି ବୁଲୁ ଏ ଇଚ୍ଛା ତାର ନାହିଁ । ବୋହୂଟିକୁ ପାଖରେ ଆଣି ରଖିବା କ'ଣ ନିହାତି ଅସଙ୍ଗତ ?

କେତେ ଆଦରରେ ସ୍ନେହରେ ମମତାରେ ତାକୁ ପାଖେ ପାଖେ ରଖି ସବୁ ବିଷୟରେ ଶିକ୍ଷିତ କରି ଗଢ଼ିଥାନ୍ତି । ତାପରେ, ଯାହାର ସଂସାର ତାରି ହାତରେ ଟେକି ଦେଇ ଛୁଟି ନେଇଥା'ନ୍ତି । ବୁଲୁ ମା'ର ପରିତ୍ୟ ସଂସାରର ଦାୟିତ୍ୱକୁ ନିଜ ମୁଣ୍ଡରେ କାହିଁକି ସେ ଏତେଦିନ ହେଲା ଜାବୁଡ଼ି ବସିଛନ୍ତି । ବୁଲୁର ସ୍ତ୍ରୀ ହାତରେ ଟେକି ଦେବାର ସୁଦୂର ଆଶା ନେଇ ।

ବୋହୂଟି ଏଠାରେ ରହୁ - ଛୁଟି ଫୁଟି ପାଇଲେ ବୁଲୁ ଥରେ ଅଧେ ଘରକୁ ଆସୁ । ଯେତେହେଲେ ପିଲାଲୋକ ଏଇଟାହିଁ ଉପଯୁକ୍ତ ସମୟ ଭଲପାଇବା - ବଂଧୁତ୍ୱ କରିବା ନିବିଡ଼ଭାବେ ସଖ୍ୟତା ଦେବାର ଏ ହେଉଛି ବୟସ । ନବ ପରିଣୟର ମାଧୁର୍ଯ୍ୟ ଉପଭୋଗ କରିବାର ଅବକାଶ ତ ଏଇ ।

ବଞ୍ଚିତ ନାରୀ ହୃଦୟର ଉତ୍ସୁକା ନେଇ - କଳ୍ପନାର ଅନେକ ମଧୁମୟ ଛବି ଆଙ୍କି ବସନ୍ତି ରାଜଲକ୍ଷ୍ମୀ ଏଇ କିଶୋର ଦମ୍ପତିଙ୍କୁ କନ୍ଦ୍ରେ କରି । କିନ୍ତୁ ଛବି ସଂପୂର୍ଣ୍ଣ କରି ତୋଳିବାର ଭାଗ୍ୟ ରାଜଲକ୍ଷ୍ମୀଙ୍କର ନାହିଁ । ସେଇଥିପାଇଁ ବୋଧହୁଏ ବାରମ୍ବାର ଉଜ୍ଜ୍ୱଳ ରଙ୍ଗର ତୂଳୀ ବିବର୍ଣ୍ଣ ହୋଇ ଆସେ । ତାପସୀ ଉପରେ ଯେଉଁ ରାଗ ସେଥିରେ ବ୍ରହ୍ମାଣ୍ଡ ଜଳୁଥାଏ ।

ଅବଶ୍ୟ ଏଥିରେ ତାପସୀର ଦୋଷ ବା କ'ଣ ? ଦୋଷ ହେଉଛି ବାପ - ମା'ଙ୍କର ।

ଭାରି ପଇସାର ଜୋର ଦେଖାଉଛି ମନୀନ୍ଦ୍ର, ସେଇଥିପାଇଁ ଧରାକୁ ସରା ମଣୁଛି । ମୁହଁରେ ନାମ ଉଚ୍ଚାରଣ କରିବାକୁ ଇଚ୍ଛା ହେଉ ନାହିଁ ନହେଲେ ବୁଲୁର ଯାହା ପଇସା ସେଥିରେ ଦଶଟା ମନୀନ୍ଦ୍ର କିଣା ହୋଇ ଚାକର ରହିବେ ପୁଅଟାକୁ ଶୀଘ୍ର ବାହା ଦେବାର ସଂକଳ୍ପ ଏହି ସମୟରେ ଖୁବ୍ ପ୍ରବଳ ହୋଇ ଉଠେ, କିନ୍ତୁ ଯେତେବେଳେ ତାପସୀର ମୁହଁ ଖଣ୍ଡିକ ଦିଶିଯାଏ ସେତେବେଳ ସଂକଳ୍ପ ଶିଥିଳ ହୋଇଯାଏ ।

ଆଗକାଳରେ ବନ୍ଦିନୀ ରାଜକନ୍ୟାକୁ ଯେମିତି ରାଜପୁତ୍ରମାନେ ଉଦ୍ଧାର କରି ଆଣୁଥିଲେ ତାପସୀକୁ ସେମିତି ଉଦ୍ଧାର କରି ଆଣିବା ସମ୍ଭବ ଯଦି ହୁଅନ୍ତା ବୁଲୁ ପକ୍ଷରେ !

ଯାଃ ମଣିଷ ମନେ ମନେ କେତେ କ'ଣ ଭାବେ ବାସ୍ତବ କ୍ଷେତ୍ରରେ ସେ ସବୁ କଥାର ଦାମ ନାହିଁ । ଯେଉଁ କଥାର ଦାମ ଅଛି ସେହିକଥା ହିଁ କହିବାକୁ ପଡ଼େ । ବୁଲୁର କଲିକତା ଯିବା ସମୟରେ ରାଜଲକ୍ଷ୍ମୀ ସାବଧାନ କରେଇ ଦେଇ କହିଲେ- ଦେଖ୍ ବାବୁ ଗୋଟିଏ କଥା କହି ରଖୁଛି, କୌଣସି ଆଳରେ କୌଣସି ଉପଲକ୍ଷରେ ସେମାନଙ୍କ ଘରର ଛାଇ ମାଡ଼ିବୁ ନାହିଁ ।

ଅନ୍ୟମନସ୍କ ବୁଲୁ ଫଟ୍‌କରି ପ୍ରଶ୍ନକରେ, କାହାଘର ପିଉସୀ ମା' ?

– କାହାଘର ଆଉହେବ - ତୋର ସେହି ଗୁଣମଣି ଶ୍ୱଶୁରର । ଏବେ ତ ଅଗ୍ରାହ୍ୟ କରି ଝିଅ ନେଇ ଚାଲିଗଲେ - ଯେମିତି କୌଣସି ସମ୍ବନ୍ଧ ନାହିଁ । ଶେଷରେ ପସ୍ତେଇବେ । ସେତେବେଳ ଯେ ଚୁପ୍ କରି ସେଠାରୁ ଯା ଆସ କରି ତ୍ୱାଇଁକୁ ବଶ କରିନେବେ ସେ କଥା କରିବାକୁ ଦେବି ନାହିଁ ।

– ଧେତ୍ ପିଉସୀମା'ର ଯେତେସବୁ ବାଜେ କଥା !

ବଶ ପୁରି କ'ଣ ? ଯାଉଛି କିଏ ?

ରାଜଲକ୍ଷ୍ମୀ ମୁରୁକି ହସି କହିଲେ – ସେ କଥା କିଏ ଜାଣେ - ଅପୂର୍ବସୁନ୍ଦରୀ ବୋହୂ, ତୋର ଯଦି ଶଶୁର ଘରକୁ ଯିବାକୁ ମନ ହୁଏ ସେଇଥିପାଇଁ ତତେ ସାବଧାନ କରେଇ ଦେଉଛି । ତୋର ପଢ଼ାଶୁଣା ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବି, ଖୋସାମତ କରି ଯଦି ଝିଅ ପହଁଞ୍ଚେଇ ଦିଏତ ଭଲକଥା - ନହେଲେ ତତେ ପୁଣି ବାହା କରେଇବି ମୁଁ ।

କ'ଣ କହିବି ଆଉ - ମାମୁଁତ ନାହାନ୍ତି ନହେଲେ ତାଙ୍କର ଆଖି ଆଗରେ ଢ଼ୋଲ ବଜେଇ, ବାଣ ଫୁଟେଇ ବୋହୂ ଘରକୁ ନେଇ ଆସନ୍ତି । ତାର ମେମ୍ ସାହାବାଣୀ ମା' ବସି ବସି ଦେଖୁଥା'ନ୍ତା । କ'ଣ କରିବି ମାମୁଁ ତ ଅସମୟରେ ଚାଲିଗଲେ ।

ରାଜଲକ୍ଷ୍ମୀ ନିଜ ଆଖିର ଲୁହ ପୋଛିବା ପାଇଁ କଥା କହିବା ବନ୍ଦ କଲେ । ବୁଲୁ ତର ବର ହୋଇ ରାଜଲକ୍ଷ୍ମୀଙ୍କ ପାଦତଳେ ନମସ୍କାର କରି କହିଲା ଡେରି ହେଇ ଯାଉଛି ପିଉସୀମା' । ଏ ସବୁ କଥାର ଆଲୋଚନା ତା ପକ୍ଷରେ ଅସ୍ୱସ୍ତିକର । କିନ୍ତୁ ରାଜଲକ୍ଷ୍ମୀର ଯେପରି ଅନ୍ୟକିଛି ଚିନ୍ତା ନାହିଁ କି କଥା ନାହିଁ । ନିଜେ ଯେମିତି ଭୁଲିପାରେ ନାହିଁ ଅନ୍ୟମାନଙ୍କୁ ମଧ ଭୁଲିବାକୁ ଦିଏନା । ଅଥଚ ଭୁଲି ଯିବାଟା ହିଁ ସବୁଠୁ ଭଲ ନା କ'ଣ ?

ଟ୍ରେନ୍ ଦ୍ରୁତଗତିରେ ଛୁଟିଥାଏ । ବୁଲୁକୁ ଶେଇବାର ପରାମର୍ଶ ଦେଇ ସରକାରବାବୁ ନିଜେ ନାକ ଘୁଙ୍ଗୁଡ଼ି ମାରିବାକୁ ଲାଗିଲେ । ବୁଲୁ କିନ୍ତୁ ଅନିଦ୍ରା ହୋଇ ଖୋଲା ଝରକାରେ ବାହାର ପୃଥିବୀର ସୌନ୍ଦର୍ଯ୍ୟକୁ ଦେଖୁଥାଏ । ବସି ବସି କ'ଣ ଭାବୁଥାଏ କିଏ ଜାଣେ !

କୈଶୋର ସମୟ – ସ୍ୱପ୍ନ ଦେଖିବାର ସମୟ । ଉଜ୍ଜ୍ୱଳ ଭବିଷ୍ୟତର ସୁନେଲି ସ୍ୱପ୍ନ, ନିଜକୁ ବଡ଼ କରିବାର ଦୂରନ୍ତ ଇଚ୍ଛାର ଉଦ୍ଦାମ ସ୍ୱପ୍ନ । ଆବାହମାନ କାଳରୁ ପୃଥିବୀର ସମସ୍ତ କିଶୋର ଯେଉଁ ବେଦନାମୟ ଆନନ୍ଦର ସ୍ୱପ୍ନ ଦେଖି ଆସିଛନ୍ତି ତାହାରି ସ୍ୱପ୍ନ ।

ଆସିବାବେଳେ ପିଉସୀମା' ଏମିତି ଗୋଟାଏ କଥା କହି ବସିଲେ ଅଦ୍ଭୁତ ! ଇଆଡ଼େ ନିଜେ କହିଲେ କ'ଣ ନା ଧର୍ମ ସାକ୍ଷୀ ଅଛି । ଫେରସ୍ତ ଦେବାର ଉପାୟ ନାହିଁ, ବଦଳେଇବାର ଉପାୟ ନାହିଁ । କେତେ କ'ଣ ସବୁ କଥା ! ଏବେ ସବୁ ଓଲଟ ପାଲଟ କରି କହିବା ଆରମ୍ଭ କରିଛନ୍ତି ।

ଧେତ୍ ଜେଜେ ଯାହା କରି ଦେଇ ଯାଇଛନ୍ତି ତାହାରି ଉପରେ ମାମଲତ୍‌କାରୀ କରୁଛନ୍ତି । ଏତେ ଭାବିବାର କ'ଣ ବା ଦରକାର ? ବୁଲୁର ଯେମିତି ଲେଖାପଢ଼ା ନାହିଁ ? କଲିକତାର ପଢ଼ା ସାଙ୍ଗ କରି ବିଲାତ ଯେପରି ନଯିବ !

କଲିକତା ଆସି କଲେଜରେ ଭର୍ତ୍ତି ହେଲା ବୁଲୁ, କିନ୍ତୁ ପ୍ରଥମେ ପ୍ରଥମେ ତା ମନ ଆଦୌ ଲାଗିଲା ନାହିଁ । ତାହାର ସଦ୍ୟ ଶୋକାକୁଳ ଉଦ୍‌ଭ୍ରାନ୍ତ ମନର ଅବସ୍ଥାକୁ ସହପାଠୀ ମାନଙ୍କର ହେ ହଲ୍ଲା, ଅକାରଣ ହସ, ଅର୍ଥହୀନ ଗଳ୍ପ ଏସବୁ ନିହାତି ବାଜେ୍ୟ ଆଉ ନିରସ ଲାଗେ । ସମସ୍ତଙ୍କ ସାଙ୍ଗରେ ମିଳାମିଶା କରିବା ପରି ସପ୍ରତିଭ ସେ ନୁହେଁ । ସେଇଥି ପାଇଁ ମନ ମାରିଦେଇ ସେ ଗୋଟିଏ ପାଖରେ ବସି ଲେଖା ପଢ଼ାରେ ମନକୁ ମଜେଇ ଦିଏ ।

କିନ୍ତୁ ବୟସଟା ଷୋଳ ଆଉ ସ୍ଥାନଟା ଛାତ୍ରାବାସ । ନିଜର ସ୍ୱତନ୍ତ୍ରତା ବଜାଇ ରଖିବ ଗୋଟିଏ ପାଖରେ ପଡ଼ି ରହିବା ବେଶିଦିନ ସମ୍ଭବ ନୁହେଁ । ପ୍ରବଳ ବନ୍ୟାର ସ୍ରୋତ ଯେତେବେଳେ ମାଡ଼ି ଆସୁଛି ସେଥିରେ କିଏ କେତେଦିନ ଅଟଳ ହୋଇ ରହିପାରେ ? ଆସନ୍ନ ଯୌବନ କାଳରେ ସୁନାର କାଠି ନିଦ୍ରିତ ମନକୁ ଚିଆଁଇ ଦିଏ, ଚିତ୍ତ-ଶତଦଳରେ ଗୋଟିଏ ଗୋଟିଏ ପାଖୁଡ଼ା ବିକଶିତ ହେବାକୁ ଲାଗେ । ଉନ୍ମୁଖ ହୃଦୟ ବିରାଟ ବିଶ୍ୱକୁ ଆପଣା ଭିତରେ ଗ୍ରହଣ କରିବାକୁ ଚାହେଁ ।

ସମସ୍ତଙ୍କୁ ଭଲପାଇବାକୁ ଇଚ୍ଛାହୁଏ, ସମସ୍ତଙ୍କୁ ଆପଣାର ପରି ମନେ ହୁଏ ଅକପଟ ସରଳତାରେ ଧୀରେ ଧୀରେ ଧରାଦିଏ ବୁଲୁ ।

ଦଳ ଭିତରେ ସୁକୁମାର ନାମକ ଛାତ୍ରଟି ହିଁ ଚାଲାଖ । ସଦା ହାସ୍ୟମୟ କୌତୁକପ୍ରିୟ ଏଇ ପିଲାଟିକୁ ସମସ୍ତେ ଭଲ ପାଆନ୍ତି । କହିବାକୁ ଗଲେ ବୁଲୁ ତାହାର ପ୍ରେମମୁଗ୍ଧ ଭକ୍ତ ଏଇ ସୁକୁମାର ହିଁ ଦିନେ ତୋ ମୁଣ୍ଡକୁ ବିଗାଡ଼ି ଦେଲା ।

ବୁଲୁ ସେତେବେଳେ ଘର ଭିତରେ ନାହିଁ । କ'ଣ ଏତେ ଟିକିଏ କାଗଜ ଆଣି ହସର ଜୁଆର ସୃଷ୍ଟି କରିଛି ଘର ଭିତରେ ।

ଉପଲକ୍ଷ୍ୟଟା ଯେ ବୁଲୁ ସେଟା ଟିକଏ ଲକ୍ଷ୍ୟକଲେ ଜଣାପଡ଼େ । ବେଶ୍ କିଛି ସମୟ ହା-ହୋଲ୍ଲାର ପରେ ବୁଲୁର ଆର୍ବିଭାବ ଘଟେ । ସାଙ୍ଗେ ସାଙ୍ଗେ ହସର ଗୋଟାଏ ପ୍ରଚଣ୍ଡ ରୋଳ । ବୁଲୁ ହସ ହସ ମୁହଁରେ ପ୍ରଶ୍ନ କଲା କ'ଣ ହେଲା ହଠାତ୍ ?

ଆରେ କ'ଣ ହେଲା ! ରମେନ୍ ଚଷମା ଆଢୁଆଳରୁ ଆଖି ପକେଇ କହିଲା - ବାଃ ବଢ଼ିଆ ପିଲା ବୁଡ଼ି ବୁଡ଼ି ପାଣି ପିଉଛି । ଆମେ ଭାବୁଛୁ ପିଲାଟା କି ନିରୀହ !

— ତେବେ ହଠାତ୍ କ'ଣ ଏମିତି ପ୍ରମାଣ ପାଇଲ ?

ବୁଲୁ ପ୍ରଶ୍ନ କଲା ।

ସୁକୁମାର ବଙ୍କା ହସଟିଏ ହସି ଦେଇ କହିଲା— ଆମେ ଜାଣିପାରୁକି 'ତାପସୀ' ନାମକ ଭଦ୍ରମହିଳାଟି କିଏ ?

— ତାପସୀ ?

ଆଉ କିଛି କହିଲା ନାହିଁ ବୁଲୁ । କିନ୍ତୁ ଚମକିପଡ଼ିବାଟା ସୁସ୍ପଷ୍ଟ ହୋଇପଡ଼ିଲା । ପ୍ରତିଦିନ ନୂଆ ନୂଆ ଫନ୍ଦି ଫିକରର କଥା କହି ଆଖ ପାଖର ପିଲାମାନଙ୍କୁ ରଗେଇବା ସୁକୁମାରର ଗୋଟାଏ ବିଶେଷ ସୌକ । ସହପାଠୀ ମାନଙ୍କ ସହିତ ତ ସବୁବେଳେ ଲାଗେ ବେଳେ ବେଳେ ପ୍ରଫେସରମାନଙ୍କ କଥା ବି ପକେଇ ଦିଏ । ସୁକୁମାର ଯେତେବେଳେ ବୁଲୁର ଖଟତଳୁ ଖଣ୍ଡେଲେଟର ପ୍ୟାଡ଼ ଗୋଟେଇ ଆଣି ଏତେ ହସ କୌତୁକ ଯୋଡ଼ି ଦେଇଥିଲା, ରମେନ, ଦିଲୀପ, ପରେଶ, ଶିବନାଥ ପ୍ରଭୃତି ସମସ୍ତେ ଭାବିଥିଲେ ଏଟା ସୁକୁମାରର ନୂତନ କୀର୍ତ୍ତି । ଅନ୍ୟର ହାତ ଅକ୍ଷରକୁ ନକଲ କରିବାର ଗୋଟାଏ କ୍ଷମତା ଅଛି ସୁକୁମାରର !

କାଗଜ ଖଣ୍ଡର ଗୋଟିଏ ପଟରେ କେବଳ ଜଣକର ନାଆଁ ଲେଖାହୋଇଛି । ବଙ୍ଗଳା ଆଉ ଇଂରାଜୀରେ । ସବାଉପରେ ଅଙ୍କା ବଙ୍କା ହୋଇ ଲେଖା ହୋଇଛି ଗୋଟିଏ ନାଆଁ - ତାପସୀ - ତାପସୀ - ତାପସୀ !

କିନ୍ତୁ ବୁଲୁର ଚମକିବାଟା ନିତାନ୍ତ ସନ୍ଦେହଜନକ । ହଁ ହଁ ତାପସୀ, ଯାହାର ନାଆଁରେ ଜପାମାଳା ତିଆରି ହୋଇଛି । ଏଇ ହାତ ଲେଖାଟା ଚିହ୍ନି ପାରେବି କି ? ହସି ହସି ପ୍ରଶ୍ନ କଲା ରମେନ୍ । ଚିହ୍ନିବାକୁ ଡେରିହେଲା ନାହିଁ । ଗୋଟିଏ ନୂଆ

ଫାଉଣ୍ଟେନପେନ୍ କିଣି ନିବ୍‌ଟାର ଗୁଣାଗୁଣ ପରୀକ୍ଷା କରିବା ପାଇଁ ବାରମ୍ବାର ଏଇ ନାଆଁଟାକୁ ଲେଟରପ୍ୟାଡ଼ 'ପଛ ପଟରେ ଲେଖୁଥିଲା ବୁଲୁ । କାଲି କି ପହରିଦିନ ଠିକ୍ ତାର ମନେ ପଡୁନାହିଁ ।

ଆଗ ଅପେକ୍ଷା **ଅବଶ୍ୟ ବୁଲୁର** ଉନ୍ନତି ହୋଇଛି । ଆଗଭଳି ସେ ଆଉ ଲଜ୍ୟାରେ ଅପ୍ରତିଭ ହୁଏ ନା । କାଗଜ ଦିଖଣ୍ଡ ଆଡ଼େ ଦୃଷ୍ଟି ପକେଇ କହିଲା- ଓଃ ଏଇ ! ମୁଁ ଭାବିଲି ମୋ ବିରୁଦ୍ଧରେ ବହୁତ କିଛି ଭୟଙ୍କର ପ୍ରମାଣପତ୍ର ଯୋଗାଡ଼ କରିଛି । ନୂଆ ପେନ୍‌ଟାର ନିବ୍‌ଟା ପରୀକ୍ଷା କରିବା ପାଇଁ ଆଙ୍କେ ବାଙ୍କେ ଗୋଟାଏ ନାଆଁ ଗାରେଇ ଦେଇଥିଲି ସେଇ କାଗଜରେ ।

ସୁକୁମାର ସନ୍ଦିଗ୍ଧଭାବେ କହିଲା - ଆରେ ବାବୁ ସଂସାରରେ ଏତେ ନାଆଁ ଥାଉ ଥାଉ ହଠାତ୍ ଏଇ ନାଆଁଟା ନିର୍ବାଚିତ ହେଲା କାହିଁକି ?

— ଯା ହେଲେ ବି ଯେ କୌଣସି ଗୋଟାଏ ନାଆଁ ଲେଖିଥିଲେ ତୁମେ ସେଥିରୁ ସୂତ୍ର ଆବିଷ୍କାର କରିଥା'ନ୍ତ, ଏହାଛଡ଼ା ଆଉ କ'ଣ ? ଯଦି ତାପସୀ ବଦଳରେ 'କ୍ଷାନ୍ତକାଳୀ' ଲେଖିଥା'ନ୍ତି ।

— ସେ କଥା କାହିଁକି ବା ଲେଖିବ ? ପରେଶ ଗମ୍ଭୀର ଭାବରେ କହିଲା - ଆମର ଆଦର ପ୍ରାଣକୃଷ୍ଣର ନାମଟା ଲେଖିପାରିଥା'ନ୍ତ ।

ପ୍ରାଣକୃଷ୍ଣ ହଷ୍ଟେଲରେ ଚାକର ।

ପରେଶର କଥାରେ ସମସ୍ତେ ଆଉଥରେ ହସି ଉଠିଲେ ।

— ପ୍ରଫେସର ଦିଗ୍‌ବିଜୟ ରାୟର ନାଆଁଟା ଲେଖିବାରେ ବାଧା କ'ଣ ଥିଲା ? ଏଙ୍କୁ ଯେତେବେଳେ ଆମେ ସମସ୍ତେ ପସନ୍ଦ କରୁ । ବୁଲୁ ହସି ହସି ପ୍ରଶ୍ନ କଲା ।

କହିବା ବାହୁଲ୍ୟ ଭଦ୍ରଲୋକ ଛାତ୍ରମାନଙ୍କ ଆଖିରେ ବିଷ ।

— ଆରେ ଦେଖ - ନିଜ କଥାରେ ନିଜେ ଧରା ପଡ଼ିଯାଉଛି ଟୋକା ।

ଦିଗ୍‌ବିଜୟକୁ ଆମେ ପସନ୍ଦ କରୁନା ବୋଲି ଥଟ୍ଟା କରିବାକୁ ତାଙ୍କ ନାଆଁଟା ମନେ ପଡ଼ିଲା ବୁଲୁର । ତା'ର ମାନେ ଥଟ୍ଟାକୁ ବାଦ୍ ଦେଲେ ଏଇ ସିଦ୍ଧାନ୍ତରେ ଆମେ ପହଁଞ୍ଚୁ ଯେ ଯାହାକୁ ପସନ୍ଦ କରୁ ଖାତା ଦେହରେ ତାରି ନାଆଁଟା ଲେଖୁ ।

— ଚମତ୍କାର ! ତୁ କହୁନା କ'ଣ ଅଙ୍କରେ କଞ୍ଚା ! ଏଇକଥା କହି ନିଜ ଦେହରୁ ସାର୍ଟଟା ଖୋଲୁ ଖୋଲୁ ନିଜ କୋଠରୀ ଭିତରକୁ ଚାଲିଗଲା ବୁଲୁ । ବିଛଣା ଉପରେ ନୀରବରେ ଯାଇ ବସି ରହିଲା ।

କି ଆଶ୍ଚର୍ଯ୍ୟ ! ଏତେ ନାଆଁ ଥାଉ ଥାଉ ଏଇ ନାଆଁଟାକୁ ସେ ଲେଖିବାକୁ ଗଲା କାହିଁକି ? ନିଜର ଅଜ୍ଞାତସାରରେ ସେ କ'ଣ ଲେଖିଥିଲା ? ସ୍ପଷ୍ଟ ମନେପଡୁନାହିଁ । ଗୋଟାଏ ଖେୟାଲରେ ସେ ବାରମ୍ବାର ସେଇ ନାଆଁଟାକୁ ଲେଖିଯାଇଛି ମାତ୍ର । ଧେତ୍ ଏମାନେ କ'ଣ ସବୁ ଭାବିଲେ କେଜାଣି ? ସତରେ କିଛି ସନ୍ଦେହ କରିବେ ନାହିଁ ତ? କାଗଜ ଖଣ୍ଡ ଚିରି ଫୋପାଡ଼ି ଦେଇଥିଲେ ଭଲ ହୋଇଥା'ନ୍ତା ।

କେତେଦିନ ଅତିବାହିତ ହୋଇଗଲା । ସେ ଦିନର କଥା ବୁଲୁର ଆଉ ମନେ ନାହିଁ । ଆଉ କିଏ ଯେ ମନେ ରଖିଥିବେ ସେ କଥା ମଧ୍ୟ ତାର ଧାରଣା ଭିତରେ ନାହିଁ । ହଠାତ୍ ସୁକୁମାର ଦିନେ କେଉଁଠୁ ଗୋଟାଏ ପକ୍କା ଦଲିଲ ଯୋଗାଡ଼ କଲା କେଜାଣି ବୁଲୁ ଦେଖି ଅବାକ୍ ହୋଇଗଲା ତା ଆଡ଼କୁ ଅନେଇଦେଇ ହସିବାକୁ ଆରମ୍ଭ କଲା । କଥା  କ'ଣ ବୁଲୁ ରାତାରାତି ଚିଡ଼ିଆ ଖାନାର ନୂଆ ଜନ୍ତୁ ହୋଇଗଲା ନା କ'ଣ ? ଯେତେଦୂର ମନେ ପଡ଼େ ସେଦିନ ଭଳି ସେ କିଛି ଆଉ ବୋକାମି କରି ନାହିଁ ତ ? ତେବେ ?

ସଂକ୍ରାମକ ବ୍ୟାଧି ପରି ଏ ହସ କ୍ରମଶଃ ଚାରିଆଡ଼େ ମାଡ଼ିଯାଉଛି ।

ନାଁ ଆଜି ସେ ନିଜେ ନିଜେ ସେ କଥାକୁ ଉଖୁରେଇବ ନାହିଁ ? ତାର କ'ଣ ମାନ ମର୍ଯ୍ୟାଦା ନାହିଁ । ହଠାତ୍ ମନ ଭିତରେ ଭାରି ଗୋଟାଏ ଅଭିମାନ ସୃଷ୍ଟି ହୁଏ । ବିଶେଷ କରି ସୁକୁମାର ଉପରେ । ବୁଲୁ ଏତେ ଭଲପାଏ ସୁକୁମାରକୁ, ଅଥଚ ସୁକୁମାର ତାକୁ ଅପଦସ୍ଥ କରିବା ପାଇଁ ନିତ୍ୟ ନୂତନ ଫନ୍ଦି ଆବିଷ୍କାର କରିବାରେ ଲାଗିଛି ।

ସ୍ୱଭାବ ଦୋଷରୁ ସୁକୁମାର ସମସ୍ତଙ୍କୁ ଚିଡ଼ାଏ, କିନ୍ତୁ ଆଜି ଯେମିତି ବୁଲୁ ପ୍ରତି ଆକ୍ରମଣଟା ଅତି ପ୍ରବଳ । କାହିଁକି ? ସାରା କ୍ଲାସର ପିଲାଙ୍କୁ କହି ବୁଲିବା ପରି କ'ଣ ଏମିତି ଅପକର୍ମ କରିଛି ବିଚରା ?

ଯା' କହୁଛି କହୁ - କାରଣ ଜାଣିବା ଦରକାର ନାହିଁ ।

ନିଜ କୋଠରୀ ଭିତରକୁ ଆସି ସକାଳରେ ପଢ଼ା ହୋଇଥିବା ଖବର କାଗଜଟା ମୁହଁ ଉପରେ ଧରି ରାଗରେ ଫୁଲିବାକୁ ଲାଗିଲା ବୁଲୁ ।

କିନ୍ତୁ ବୁଲୁକୁ ଆଜି ସେମାନେ ଶାନ୍ତିରେ ରହିବାକୁ ଦେବେ ନାହିଁ । କେତେ ମିନିଟ ପରେ ସଦଳବଳେ ସୁକୁମାରର ଆର୍ବିଭାବ । ହାତର ଖବର କାଗଜଟାକୁ ଟାଣି ନେଇ ହସି ହସି ସୁକୁମାର କହିଲା — କି ବାବା ଯୁଧିଷ୍ଠିର କ'ଣ ହେଲା ? ଏତେବଡ଼ ଘଟଣାଟା ସମସ୍ତଙ୍କୁ ଲୁଚେଇ ଦେଇଥିଲ ବର୍ତ୍ତମାନ ହାଟ ଭିତରେ ହାଣ୍ଡିଭାଙ୍ଗିଲା । ଦୁଧ-ଦାନ୍ତ ନ ଭାଙ୍ଗୁଣୁ ବିବାହ-ପର୍ବଟା ଶେଷ କରି ବସିଛ ।

ଉଃ– ଧୈର୍ଯ୍ୟର ବନ୍ଧ କେତେ ସମୟ ରହିବ ମଣିଷର ? ଏତେ ବଡ଼ ଆଘାତରେ ସେ ଭାଙ୍ଗି ପଡ଼ିବ ନାହିଁ ? କ୍ଷୋଭ ଆଉ ଅପମାନରେ ସ୍ୱର୍ଗତ ଜେଜେଙ୍କ ଉପରେ ଦୁରନ୍ତ ଅଭିମାନରେ ଆପାଦ ମସ୍ତକ ଥରିଉଠି ଆଖି କଣରୁ ଝରିପଡ଼ିଲା ଦୁଇଧାର ଲୁହ ।

ହାୟ ! ଏଟାଘର ନୁହେଁ, କିମ୍ବା ପିଉସୀମା'ର ସ୍ନେହ ଛାୟା ଅଞ୍ଚଳ ନୁହେଁ, ଯେଉଁଠି ଆଖିଲୁହର ମୂଲ୍ୟ ରହିବ । ଫଳ ହେଲା ବିପରୀତ । ଗୋଟିଏ ବାକ୍ୟରେ ସମସ୍ତେ କହିଲେ ସ୍ତ୍ରୀ ପାଇଁ ମନ କେମିତି ହେଇ ଯାଉଛି ବୁଲୁର ।

କହିବା ବାହୁଲ୍ୟ ସୁକୁମାର କେଉଁଠୁ ସଂବାଦ ସଂଗ୍ରହ କରି ସହପାଠୀ ମହଲରେ ପ୍ରଚାର କରି ଦେଇଛି ବୁଲୁ ବିବାହିତ ।

ଏହାପରେ ଅନେକ ପ୍ରଶ୍ନ ବର୍ଷଣ ହେବାକୁ ଲାଗିଲା ବୁଲୁ ଉପରେ ।

ବୁଲୁ ସତରେ ବଙ୍ଗାଳୀ ନାଁ ଖୋଟ୍ଟା ? ଦୁଗ୍ଧପୋଷ୍ୟ ଅବସ୍ଥାରେ ତାର ବିବାହ ସ୍ଥିର ହୋଇ ଯାଇଥିଲା । ଏ ଶୁଭକର୍ମଟି ସାରିଦେଇ କଲେଜରେ ଭର୍ତ୍ତି ହେବାର ଉଦ୍ଦେଶ୍ୟ କ'ଣ ? ବଂଧୁବର୍ଗଙ୍କୁ ନିମନ୍ତ୍ରଣରୁ ଫାଙ୍କିଦେବା । ବୋହୂଟି ଦେଖିବାକୁ କେମିତି ? ବଂଧୁମାନଙ୍କୁ ଦିନେ ଦେଖାଇବ କି ନାଁ ବୁଲୁ ? ଏଇସବୁ ଅଜସ୍ର ପ୍ରଶ୍ନ ।

ପ୍ରଶ୍ନ ଏବଂ ପରିହାସର ଭଙ୍ଗୀରେ ଅବଶ୍ୟ 'ଦୁଗ୍ଧ ପୋଷ୍ୟତା'ର ଆଭାସ ଖୋଜି ପାଇବା କଷ୍ଟକର । ସହପାଠୀମାନଙ୍କ ମଧ୍ୟରେ ଦି-ଚାରିବର୍ଷ ବଡ଼ ପିଲାଙ୍କର ଅବଶ୍ୟ ଅଭାବ ନାହିଁ ।

ବୁଲୁ କୌଣସି ଉତ୍ତର ଦେଲାନାହିଁ କିମ୍ବା କାନ୍ଦିଲା ବି ନାହିଁ । ମୁହଁଭାରୀ କରି ଚୁପ୍ ଚାପ୍ ବସିଥାଏ । ବନ୍ଧୁମାନଙ୍କ ଉପରେ ରାଗ କରିବାରେ ଯେମିତି କିଛି ବାଟ ନାହିଁ । ସତରେ ସେ ଗୋଟାଏ ଖାପ୍‌ଛଡ଼ା, ସୃଷ୍ଟିଛଡ଼ା ଜୀବ । ଜୀବନର ଆରମ୍ଭରେ ତା'ଉପରେ ଯେଉଁ ଅଭିଶାପ ବର୍ଷଣ କରାଯାଇଛି ସେ ତାର ଅଭିଶାପ ବର୍ଷଣ କରାଯାଇଛି ସେ ତାର ଅଭିଶାପ ଭୋଗିବ ନାହିଁ ଆଉ କିଏ ଭୋଗିବ ? ଏଇ ସଭ୍ୟ ଜଗତରେ ସଭ୍ୟ ସମାଜରେ ଏମିତି ଅସଭ୍ୟ ବ୍ୟାପାର କ'ଣ କାହା ଜୀବନରେ ଘଟେ ? ବନ୍ଧୁମାନଙ୍କ ଉପରେ ଅଭିମାନରେ କିଛିଦିନ ଭଲଭାବେ ମିଳାମିଶା କରେନା ବୁଲୁ । ନିଜ ପଢ଼ାଶୁଣାରେ ନିଜେ ଯେପରି ସମସ୍ତଙ୍କଠାରୁ ସ୍ୱତନ୍ତ୍ର ସେହିପରି ମନେହୁଏ । ଭଲ ଲାଗେ ନାହିଁ । ଏଇ ଛୋଟ ପରିସର ମଧ୍ୟରେ ସମସ୍ତ ପାଠ୍ୟପୁସ୍ତକକୁ ପଢ଼ାଶୁଣା କରି କଟେଇବା, ଆଉ ପରୀକ୍ଷା ଶେଷରେ କେତେଟା ବିଷୟରେ କିଛି ଅଧିକ ନମ୍ବର ପାଇବାରେ ଜୀବନରେ କି ସାର୍ଥକତା ?

ଦୂର ଦୂରାନ୍ତ ଦେଶରୁ କିଏ ଯେମିତି ହାତଠାରି ଡାକେ– କେଉଁଠି ସେ ଅଗାଧ ସମୁଦ୍ର, ତୁଷାର କିରୀଟି ପର୍ବତମାଳା, ବିଚିତ୍ର ଭାଷାଭାଷୀ ମାନବ ଗୋଷ୍ଠୀ, ଜ୍ଞାନ-

ବିଜ୍ଞାନର ଜନ୍ମଭୂମି— ସଭ୍ୟତା ଆଉ ସୌନ୍ଦର୍ଯ୍ୟର ଲୀଳା ନିକେତନ— ବିଶାଳ ପୃଥିବୀ— ବିରାଟ ଜଗତ ଏତେ ଟିକେ ଘର ଭିତରେ ନିଜକୁ ଆବଦ୍ଧ କରି ରଖିବାପାଇଁ କ'ଣ ମଣିଷର ସୃଷ୍ଟି ?

କିନ୍ତୁ ଅପେକ୍ଷା କରିବାକୁ ହେବ । ଆଉ କିଛିଦିନ ଅପେକ୍ଷା କରିବା ଛଡ଼ା ଉପାୟ ନାହିଁ, ବିଶ୍ୱ ଦରବାରରେ ସେ ନିତାନ୍ତ ନାଁ ବାଳକ ।

ଧୀରେ ଧୀରେ ପୁଣି କିଛିଟା ସହଜ ହୋଇ ଆସେ, ପୁଣି ସହପାଠୀମାନଙ୍କ ଫାଶରେ ଧରା ଦେବାକୁ ପଡ଼େ । ସଭାସମିତି, ଶୋଭାଯାତ୍ରା, ପିକେଟିଂ, କର୍ତ୍ତୃପକ୍ଷଙ୍କ ଅନୁଶାସନର ପ୍ରତିବାଦରେ ଧର୍ମଘଟ— ଛାତ୍ର ଜୀବନର ବହୁବିଧ ଉତ୍ତେଜନା ମଧ୍ୟରେ ଦିନଗୁଡ଼ିକ ବିତିବାକୁ ଲାଗେ । ଅତୀତର ଦୁଃସ୍ୱପ୍ନ ଆଉ ସେମତି ଅବ୍ୟବସ୍ଥିତ କରିପାରେନା । ଭୟାତୁର କିଶୋର ଚିତ୍ତରେ ଆସେ ଯୌବନର ଦୃଢ଼ତା, ଅକଳନ୍ତି ସମୁଦ୍ରର ରହସ୍ୟମୟ ଆହ୍ୱାନରେ ଉତ୍ତର ଦେବାର ସାହସ ଖୋଜିପାଏ । ନୂତନ ନୂତନ ଜ୍ଞାନ ଆହରଣର ସଂକଳ୍ପରେ ସେହି ସମୁଦ୍ର ଉପରେ ଡେଣା ମେଲେଇ ଉଡ଼ି ଆସେ ବୁଲୁ ।

ଅସହାୟା ରାଜଲକ୍ଷ୍ମୀ ରାଗରେ କ୍ଷୋଭରେ ସ୍ୱର୍ଗଗତ ମାମୁଁଠାରୁ ଆରମ୍ଭ କରି ବୁଲୁର ଅର୍ଦ୍ଧ ବିବାହିତା ବଧୂ ପର୍ଯ୍ୟନ୍ତ ସମସ୍ତଙ୍କୁ ଗାଳିଦିଏ, ପ୍ରତିଦିନ ଦୁଇଓଳି ଯାକ କାଶୀରେ ରହିବାର ସଂକଳ୍ପ ଘୋଷଣା କରେ ଆଉ ବାଘୁଣୀପରି ବୁଲୁର ଘରବାଡ଼ି ବିଷୟ ସମ୍ପତ୍ତିକୁ ଆବୋରି ଥାଏ ।

ସାତ ସମୁଦ୍ର ପାର ହୋଇ ବୁଲୁ ଯେଉଁଦିନ ଘରକୁ ଫେରିବ, ସେହିଦିନ ତାହାକୁ ସବୁକିଛି ବୁଝେଇ ସୁଝେଇ ଦେଲାପରେ ତାହାର ଛୁଟି ।

ଇତ୍ୟବସରରେ ସରକାରବାବୁଙ୍କ ଅଗୋଚରରେ ମୂଲ୍ୟବାନ ଉପହାର ଦେଇ ବୁଲୁ ଶ୍ୱଶୁର ଘରକୁ ଦୁଇଥର ଲୋକ ପଠେଇଥିଲା ରାଜଲକ୍ଷ୍ମୀ, କିନ୍ତୁ ଫଳାଫଳଟା ସେତେ ସୁବିଧାଜନକ ହୋଇନାହିଁ ।

ଚିତ୍ରଲେଖା ତାଙ୍କ ଉପହାର ଜିନିଷ ସହ ପତ୍ରପାଠ କରି ଆଗନ୍ତୁକମାନଙ୍କୁ ବିଦାୟ ଦେଇଛି । କିନ୍ତୁ ଏକଥା ନ କରିଥିଲେ ଶେଷ ପର୍ଯ୍ୟନ୍ତ ବିଶେଷ କିଛି ଶୋଭନୀୟ ଘଟଣା ଘଟିଥା'ନ୍ତା ଏକଥା ମଧ୍ୟ ନୁହେଁ । ଅସମ୍ଭବ କଳ୍ପନା ହେଲେ ମଧ୍ୟ ଚିତ୍ରଲେଖା ଯଦି

ରାଜଲକ୍ଷ୍ମୀର ସ୍ନେହ-କ୍ଷୁଧାର ତୃପ୍ତି ସାଧନ ପାଇଁ ଝିଅକୁ ପଠାଇବାପାଇଁ ରାଜି ହୋଇଥା'ନ୍ତା, ସାଲୁଆର ପଞ୍ଜାବୀ ପିନ୍ଧା, ସାଇକେଲ ଚଢ଼ା ବୋହୂକୁ ପାଇ ରାଜଲକ୍ଷ୍ମୀ କ'ଣ ସୁଖୀ ହୋଇ ପାରିଥାନ୍ତେ ?

ଅସଲ କଥା ହେଲା ଯେଉଁଠି ମନ ମେଳର ଏକାନ୍ତ ଅଭାବ, ସେଠି ମିଠା ଖୋଇବାର ଚେଷ୍ଟା ପ୍ରହସନ ଛଡ଼ା ଆଉ କିଛି ନୁହେଁ । ବିପଦଜନକ କେବଳ ମାତ୍ର ।

ସେଇଥିପାଇଁ ମହାଶୂନ୍ୟରେ ବୁଲୁଥିବା ଲକ୍ଷ ଲକ୍ଷ ଗ୍ରହ ନକ୍ଷତ୍ର କେହି କାହାରି ନିକଟବର୍ତ୍ତୀ ହୋଇପାରନ୍ତି ନାହିଁ । ସୁଦୂର ବ୍ୟବଧାନରେ ଆପଣା କେନ୍ଦ୍ରରେ ଘୁରୁଥା'ନ୍ତି ଅନନ୍ତକାଳ ପର୍ଯ୍ୟନ୍ତ ।

ଚିତ୍ରଲେଖା ଆଉ ରାଜଲକ୍ଷ୍ମୀ ଭିନ୍ନ ଭିନ୍ନ ଗ୍ରହବାସୀ, ଭୁଲକ୍ରମେ ପରସ୍ପର ନିକଟବର୍ତ୍ତୀ ହେବାକୁ ଚେଷ୍ଟା କଲେ ଚୂର୍ଣ୍ଣ ବିଚୂର୍ଣ୍ଣ ହେବା ଛଡ଼ା ଦ୍ୱିତୀୟ କୌଣସି ମଧୁର ପରିଣତିର ସମ୍ଭାବନା ନାହିଁ । କିଏ ଜାଣେ ସାତ ସମୁଦ୍ର ପାରହେଇ ବୁଲୁ କେଉଁ ଭିନ୍ନରୂପ ନେଇ ଫେରିବ ? ରାଜଲକ୍ଷ୍ମୀଙ୍କୁ ଚିହ୍ନି ପାରିବ ତ ?

ଢିଲା ପାଇଜାମା ଆଉ ହାଫସାର୍ଟ ପିନ୍ଧା ତାପସୀକୁ ରଖି ଦୀର୍ଘଦିନ ପାଇଁ ବିଦାୟ ନେଇଥିଲି, ଯବନିକା ଉତ୍ତୋଳନ କରିବାପରେ ଦେଖାଗଲା– ଆକାଶ ପାତାଳ ପରିବର୍ତ୍ତନ ଘଟିଛି ତାପସୀର !

ସୃଷ୍ଟିକର୍ତ୍ତା ଯେ କେବଳ ମାତ୍ର ତାହାକୁ ଭାଙ୍ଗି ଚୁରି ନୂତନ ଢାଞ୍ଚାରେ ଗଢ଼ି ରୂପ ଉପରେ ଅପରୂପ ଦାନ କରିଛି ତାହା ନୁହେଁ, ପ୍ରୟୋଗ ନୈପୁଣ୍ୟର୍ ନିଖୁଣତା କୌଶଳରେ, ସୃଷ୍ଟିକର୍ତ୍ତା ଉପରେ ମଧ ଢାଙ୍କୁଣି ଦେବାକୁ ଶିଖିଛି ସେ । ବାସ୍ତବିକ ରୂପଚର୍ଯ୍ୟାକୁ ଯଦି ଶିଳ୍ପକଳା ହିସାବରେ ଧରାଯାଏ ତେବେ ତାପସୀକୁ ଭଲ ଶିଳ୍ପୀ ବୋଲି କହିବା ଉଚିତ । ସାଜସଜାରେ ଅତି ମାତ୍ରାରେ ଆଧୁନିକା ହେବା ଯେ ସୌନ୍ଦର୍ଯ୍ୟର ମାପକାଠି ଏ ବିଶ୍ୱାସ ତାହାର ନାହିଁ, ସେଇଥିପାଇଁ ଫେସନ ଶାସ୍ତ୍ର ଲଙ୍ଘନ କରି ନିଜକୁ ଇଚ୍ଛା ଅନୁସାରେ ସଜାଇବାରେ ତିଳେ ମାତ୍ର ଦ୍ୱିଧାବୋଧ କରେ ନାହିଁ ।

ଝିଅ ସାଙ୍ଗରେ ସେଇଥିପାଇଁ ଚିତ୍ରଲେଖାର କେବେ ପଡ଼େ ନାହିଁ ।

ନିଜର ତ ସବୁ ପଥ ରୁଦ୍ଧ ହୋଇଛି । ବୈଧବ୍ୟର ବେଶ ଉପରେ କେତେ ବା ଆଉ ରଙ୍ଗ ଲଗେଇ ପାରିବ । ଅତଏବ ଝିଅ ମାଧମରେ ନିଜ ମନର ସୌକ ମେଣ୍ଟାଇବା ଇଚ୍ଛାଟା କ'ଣ ବେଶି ଅନ୍ୟାୟ ଚିତ୍ରଲେଖାର ? କିନ୍ତୁ ଝିଅଟା ଯେମିତି ଲଗାମ ଛଡ଼ା

ଘୋଡ଼ା । ତା' ନହେଲେ ଦେଶୀ ବିଲାତି ସବୁ ଦୋକାନ ବୁଲି ଚିତ୍ରଲେଖା ନିଜେ ଯେଉଁ ଶାଢ଼ୀ, ବ୍ଲାଉଜ, ଜୋତା ମ୍ୟାଚ୍ କରି କିଣି ଆଣିଥିଲା, ସେହି ସୁନ୍ଦର ଜୋତାଟାକୁ ବାତିଲ କରି ଗୋଟାଏ ଜରିର ଚଟି ପିନ୍ଧି ବୁଲୁଛି । ତା'ଛଡ଼ା ଜେଜେମା ଅମଳର ଗୋଟାଏ ମୁକ୍ତାର ସିନ୍ଥି କପାଳରେ ପିନ୍ଧିଛି ।

ଏସବୁ ଦେଖିଲେ ବେକରେ ଦୌଡ଼ିଦେଇ ମରିବାକୁ ଇଚ୍ଛା ହୁଏ ।

ବାଛି ବାଛି ଆଜି କେମିତିକା ଦିନରେ କିମ୍ଭୂତ ସାଜସଜା ହୋଇଛି । ଆଜି କିରିଟୀ ଆସିବାର କଥା । କେତେ ଚେଷ୍ଟା କରି ଏଇ ପିଲାଟିକୁ ଯୋଗାଡ଼ କରି ଝିଅ ଆଖି ସାମ୍ନାରେ ଆଣି ଧରେଇ ଦେଇଛି । ଝିଅର ମୋଟେ ଆଗ୍ରହ ନାହିଁ ! ଅଥଚ ଏମିତି ଗୋଟିଏ ପାତ୍ର ଯୋଗାଡ଼ କରିପାରିଲେ ଯେକୌଣସି ଝିଅ ଧନ୍ୟ ହୋଇଯିବ ।

କେବଳ କ'ଣ ବିଦ୍ୟାରେ ? ବୁଦ୍ଧିରେ, ସୌଜନ୍ୟରେ, ଅର୍ଥରେ, ସ୍ୱାସ୍ଥ୍ୟରେ ଅତୁଳନୀୟ କହିଲେ ଅତିରଞ୍ଜନ ହେବ ନାହିଁ । ତା'ଉପରେ ରୂପ– ଯେଉଁଟା ପୁରୁଷପକ୍ଷେ ବଡ଼ତି କହିଲେ ଚଳେ । ସେ ହିସାବରେ ସୃଷ୍ଟିକର୍ତ୍ତାର ଗୋଟାଏ ବେହିସାବୀ ଅପଚୟର ନମୁନା କିରିଟୀ ।

ଏତେ ରୂପ, ଏତେ ଗୁଣ ଏତେଟଙ୍କା କିରିଟୀର, ତଥାପି ଝିଅ ମନର କୂଳ କିନରା ମିଳୁନାହିଁ । କେତେବେଳେ କେମିତି ମନେ ହୁଏ ସେ ଯେମିତି ଭାରି ଆଗ୍ରହୀ– କିରିଟୀର ଆସିବା କଥା ଥିଲେ ଝିଅର ଯେଉଁ ଉଦ୍‌ବେଗ, ଚାଞ୍ଚଲ୍ୟ ସେ କଥା ଜାଣିବାର କେତେବେଳେ ତ ଭୁଲ ହୁଏନା, ଚିତ୍ରଲେଖାର, କିନ୍ତୁ ପରଦିନ ସବୁ ଗୋଳମାଳ ହୋଇଯାଏ । ନିଜ ହିସାବ ଉପରେ ଆଉ ଆସ୍ଥା ରହେ ନାହିଁ । ହତାଶ ଚିତ୍ରଲେଖା ଦୁଃଖରେ ମ୍ରିୟମାଣ ହୋଇ ମରଣ କାମନା କରେ ।

ଏଇତ ସେଦିନ କିରିଟୀ ଆସି ଠିଆ ହୋଇଛି ମାତ୍ର । ସାମ୍ନା ଉପରେ ତଗ୍ ତଗ୍ ହୋଇ ବାହାରକୁ ଚାଲିଗଲା ବେବି । ଗଲାବେଳେ ଟିକିଏ ଭଦ୍ରତା ରକ୍ଷା କଲା କ'ଣ ନା– "ଏଇ ଯେ ମିଷ୍ଟର ମୁଖାର୍ଜୀ ଭଲ ତ ?" ବସନ୍ତୁ ମା' ଅଛନ୍ତି । ବାସ୍ ଏତିକିରେ ସମ୍ବର୍ଦ୍ଧନା ହୋଇଗଲା କିରିଟୀର । ସତେ ଯେମିତି ମା'ର ଚରଣ ଦର୍ଶନ ଆଶାରେ ଏକ ଗ୍ୟାଲନ ପେଟ୍ରୋଲ ପୋଡ଼ି ଆସିଛି ମିଷ୍ଟର ମୁଖାର୍ଜୀ । ମୂର୍ଖ ! ମୂର୍ଖ ! ତା'ଛଡ଼ା ଆଉ କିଛି ନୁହେଁ । ଯେମିତି ନିର୍ବୋଧର ବଂଶ ! ଶେଷ ପର୍ଯ୍ୟନ୍ତ ସ୍ୱର୍ଗବାସୀ ସ୍ୱାମୀ, ଆଉ କାଶୀବାସିନୀ ଶାଶୁ ଉପରେ ସମସ୍ତ ରାଗଟା ଯାଇ ପଡ଼େ ।

ଆଜି ଯେ ଝିଅର ଏଇ ସୃଷ୍ଟିଛଡ଼ା ବେଶ, ଏ ଆଉ କିଛି ନୁହେଁ, କିରିଟୀ ଉପରେ ଅବହେଳା ପ୍ରଦର୍ଶନ ଆଉ ମା' ସାଙ୍ଗରେ ଯୁଦ୍ଧ ଘୋଷଣା । ତା'ହେଲେ ଏଇ 'ଗିନି'ର ହାରଟା ବେକରେ ଗଳେଇ ନ ବୁଲୁ କାହିଁକି ? ଏହାର ତ ବହୁତ ଦାମ ।

ମତେ ସେଟା ଭଲଲାଗେ ନାହିଁ । ତାରତ କୌଣସି ସୌନ୍ଦର୍ଯ୍ୟ ନାହିଁ ।

— ଏଇଟାର ଖୁବ୍ ଅଛି କେମିତି ? ଆଚ୍ଛା ଯେତେ ସୌନ୍ଦର୍ଯ୍ୟ ବି ଥାଉ, ଆଜି ସେଟାକୁ ଖୋଲିପକା, ଜରି ଚଟିକୁ ଓହ୍ଲେଇ ଦେ ।

— ପାଗଳ ହେଇଛୁ ମା' । କ'ଣ ଟିକିଏ ସିନେମା ଯିବି ତା ପାଇଁ ନୂଆ କରି ଏତେ କାଣ୍ଡ । ଯା ଅଛି ସେଇଆ ଥାଉ ।

— ଆଚ୍ଛା ବେବି ତୁ କ'ଣ ମତେ ପାଗିଳୀ କରିବୁ ? ଏଇ ରକମ ଏକ୍‌ଯିଦି ଆପଣ ଦେଖିଲେ କିରିଟୀ କ'ଣ ମନେ କରିବ କହିଲୁ ?

— ନୂଆକରି ତତେ କେହି ପାଗଳ କେହି କରିବେ ନାହିଁ ମା । ତୁ ନିଜେ ହିଁ ଯଥେଷ୍ଟ ପାଗଳ ହୋଇଛୁ ସଂସାରରେ ଏତେ ଲୋକ ଥାଉ ଥାଉ ମିଷ୍ଟର ମୁଖାର୍ଜୀ କ'ଣ ମନେ କରିବେ ଭାବି ଏତେ ଦୁଶ୍ଚିନ୍ତା କାହିଁକି ?

ଚିତ୍ରଲେଖା ଝିଅର ଇଚ୍ଛାକୃତ ଫେଚକାମି ଆଉ ବରଦାସ୍ତ କରିପାରିଲାନାହିଁ । ରାଗରେ ଜଳି ଉଠି କହିଲା - ଦୁଶ୍ଚିନ୍ତା କାହିଁକି ତାହା ତୁ ବୁଝି ପାରିବୁ ନାହିଁ ? ତୁ କ'ଣ ଭାବୁଛୁ ତୋ ଛଡ଼ା ତାକୁ ଆଉ ଭଲ ପାତ୍ରୀ ଜୁଟିବେ ନାହିଁ ? ନିହାତି ସରଳ, ଅତି ଅମାୟିକ, ଅତି ଭଦ୍ର ପିଲା, ସେଇଥିପାଇଁ... ଏ ପର୍ଯ୍ୟନ୍ତ ତୋର ଖାମ ଖିଆଲି ପଣକୁ ସହ୍ୟ କରିଛି । ଯଦି ଥରେ ତାର ମନ ଛାଡ଼ିଯିବ ।

ତାପସୀ ଏଥର କିଞ୍ଚିତ ଗମ୍ଭୀର ହୋଇ ପଡ଼େ । ଧୀର କଣ୍ଠରେ କହେ — କାହାର କେତେବେଳେ ମନ ଛାଡ଼ିଯିବ ସେହି ଭୟରେ କାତର ହେବାକୁ ମତେ ଭଲ ଲାଗେ ନାହିଁ । ବଙ୍ଗ ଦେଶରେ ପାତ୍ରୀର ଅଭାବ ନାହିଁ । ସେଥିରୁ ଯେ ତାକୁ ଗୋଟିଏ ଜୁଟିବ ନାହିଁ ସେ କଥା ଭାବିବାକୁ ଯିବି କାହିଁକି ? ମୋ ସାଙ୍ଗରେ ତାର ସମ୍ପର୍କ କ'ଣ ? କେବଳ ମାତ୍ର ଗୋଟାଏ ଭୁଲ ଧାରଣା ନେଇ ରୁହନା ମା' ।

— ଭୁଲ ଧାରଣା !

ସକାଳବେଳା ସେ ଯେ ଫୋନ୍ କରି ଜଣେଇ ଦେଇଥିଲା ସନ୍ଧ୍ୟା ସୋ ପାଇଁ ସେ ଚାରିଖଣ୍ଡ ସିନେମା ଟିକେଟ କିଣି ରଖିଛି । ସେଇଥିପାଇଁ ବିଦ୍ରୋହର ଏଇ ସଢବାଢ ! କେତେ ବୁଦ୍ଧିମାନ ଓ ଅମାୟିକ ପିଲା ! ବେବିକୁ ଯଦି ସେ ଏକଲା ନେଇ ସିନେମାଯାଏ ତାହେଲେ କ'ଣ ଆପତ୍ତି କରନ୍ତା ଚିତ୍ରଲେଖା ? ତା' ତ ନୁହେଁ । ତେବେ ସବୁ ସମୟରେ ଅମିତାଭ, ସିଦ୍ଧାର୍ଥକୁ ସାଙ୍ଗରେ ନିଏ । ଅଥଚ ବଙ୍ଗାଳୀ ଘରର କୂପମଣ୍ଡୁକ ପିଲା ସେ ନୁହେଁ — ଇୟୁରୋପ, ଆମେରିକା, ଜାପାନ ସର୍ବତ୍ର ଘୁରି ଆସିଛି ।

ବୁଦ୍ଧି, ବିଦ୍ୟା, ଶିକ୍ଷା ବିବେକ ସୁବଥିରେ ଅନିନ୍ଦ୍ୟ । ହଜାରରେ ଏମିତି ଗୋଟାଏ ପିଲା ମିଳିବା କଷ୍ଟକର କିନ୍ତୁ ହତଭାଗା ଝିଅଟା ପିଲାଟାକୁ କୌରସି ମାନ ମର୍ଯ୍ୟାଦା କରେ ନାହିଁ ।

'କହିବ ନାହିଁ' ପ୍ରତିଜ୍ଞା କରି ମଧ ଶେଷ ପର୍ଯ୍ୟନ୍ତ ରହିପାରେନା ଚିତ୍ରଲେଖା । ଝିଅକୁ ଡାକି ପ୍ରଶ୍ନକରେ ଏ ସବୁ କ'ଣ ହେଉଛି ବେବି ?

— କ'ଣଟା ମା' ସରଳକଣ୍ଠରେ ପ୍ରତି ପ୍ରଶ୍ନ କରେ ତାପସୀ ।

— ସେଇଟା ! ତୋର ଏଇ ଫେଚକାମିଆ ବେଶ ପୋଷାକ । ପୁଣି ଏଇ ଅସୁନ୍ଦର ଗହଣାଟା କପାଳରେ କାହିଁକି ଲଗାଇଛୁ । ସିନେମା ଯିବା କଥା ରହିଛି ନା ଆଜି ?

— ସିନେମା ? କାହିଁ ?

— ଫାଜଲାମି କରନା ବେବି, ସକାଳେ ଫୋନ୍ କରି ନଥିଲା । କିରିଟୀ ?

— ଓଃ ହୋ ହୋ ! ଭୁଲି ଯାଇଥିଲି । ଗଲେ ହେବ । ସିଛିଟା ପିନ୍ଧିଲେ ପଶିବାକୁ ବୋଧହୁଏ ଦେବ ନାହିଁ ? କଣ କହୁଛୁ ?

— କହୁଛି ତୋ ମୁଣ୍ଡ ଆଉ ଗଣ୍ଡି । ଏଇ ଜଘନ୍ୟ ପୋଷାକ ପିନ୍ଧିବାକୁ ତତେ ଲାଜମାଡୁନାହିଁ ।

— କାହିଁକି ଲାଜମାଡ଼ିବ । ବାଃ ଢେଙ୍କେମୋଙ୍କର ଏଇ ସିଛିଟାର ଆଜିକାଲି ଦାମ୍ କେତେ ଜାଣୁ ?

— ଜାଣେ ନାହିଁ । ଜାଣିବାକୁ ଇଚ୍ଛା ମଧ ମୋର ନାହିଁ । ଦାମୀ ହେଲେ ମଧ ସେଟା ସବୁବେଳେ ବାହାର ହୁଏ ନାହିଁ ।

ଚିତ୍ରଲେଖା କରିବ ଭୁଲ୍ ଧାରଣା ! ଝିଅକୁ ବରଂ ସେ ବୁଝେଇବାକୁ ଅକ୍ଷମ ହୋଇପଡ଼େ, କିନ୍ତୁ କିରିଟୀ ବିଷୟରେ ଭୁଲ କରିବାର କିଛି ନାହିଁ । ପାଖକୁ ଆସିଲେ ତାହାର ଆଖିରେ, ମୁହଁରେ ଯେଉଁ ଆଲୋକ ଜଳି ଉଠେ ସେ ଆଲୋକକୁ ଚିହ୍ନିବାକୁ କ'ଣ ଭୁଲ ହେବ ?

ସାତ ସମୁଦ୍ର ତେରନଈ ପାରହେଇ କେତେ ନୀଳନୟନା ରୂପସୀ, ବିଦ୍ୟାବତୀ ତରୁଣୀଙ୍କର ମୋହ ଏଡ଼ାଇଦେଇ ସେ ଯେ ଚିତ୍ରଲେଖା ଝିଅର ହୃଦୟ ଦ୍ୱାରରେ ପ୍ରାର୍ଥୀ ହୋଇ ଠିଆ ହୋଇଛି ଏଟା କ'ଣ ସହଜ କଥା ? ତା ଝିଅ ଯେତେ ସୁନ୍ଦରୀ ହେଲେ ବି କ'ଣ ହେବ । ବିଦେଶିନୀଙ୍କ ରୂପଗୁଣ, ହାସ୍ୟଲାସ୍ୟ ଆକର୍ଷଣୀୟ ଶକ୍ତି ପାଖରେ

ସେ କ'ଣ ? ସେମାନଙ୍କର ତୁଳନାରେ ସତରେ କିଛି ଆଉ ଆଖିରେ ପଡ଼ିବାର ନାହିଁ ତାପସୀର । ତେବେ କିରିଟୀ ଯେ ବେବିର ପ୍ରେମରେ ପଡ଼ିଛି ଏକଥା ଚନ୍ଦ୍ର ସୂର୍ଯ୍ୟ ପରି ସତ୍ୟ । ଚିତ୍ରଲେଖାର ଧାରଣା ଭୁଲ ନୁହେଁ ।

ହଠାତ୍ ଗୋଟାଏ କଥା ମନେହେଲା ତାପସୀର ଏଇଯେ ଅବହେଳାର ଭାବ, ବୋଧହୁଏ ଅଭିମାନ ହୁଏତ କିରିଟୀ ପ୍ରେମରେ ତାର ସନ୍ଦେହ ଅଛି ତାନହେଲେ ସେ ନିଜକୁ ଏମିତି ସଙ୍କୁଚିତ କରି ନିଏ କାହିଁକି ? ସେଇଥିପାଇଁ ବୋଧହୁଏ ମା'କୁ କହିଲା ''ମିଛରେ ଭୁଲ ଧାରଣା ନେଇ ରହନାହିଁ'' । ଅର୍ଥାତ୍ ମନରେ ମିଛ ଆଶା ପୋଷଣ କରନା ।

ଝିଅର ଖାମ ଖିଆଲି ବ୍ୟବହାରରେ କିଛିଟା ନିରୁତ୍ସାହତା ଆବିଷ୍କାର କରି ଚିତ୍ରଲେଖା ସଂତ୍ରସ୍ତ ହୋଇପଡ଼ନ୍ତି । ପ୍ରସନ୍ନ ଚିତ୍ତରେ କହନ୍ତି ଭୁଲଧାରଣା କିଛି ନୁହେଁ ବେବି, କିରିଟୀର ମନ ବୁଝିବାକୁ ମୋର ଆଉ ବାକି ନାହିଁ, ବର୍ତ୍ତମାନ ସେ ଅପେକ୍ଷାରେ ଅଛି ବୋଧହୁଏ – 'ଦେଖି ଏପାଖରୁ କୌଣସି ପ୍ରସ୍ତାବ ଉଠୁଛି କି ନାହିଁ' ? ତା ହେଲେ ଏଇଥର ମୁଁ ... ।

କେବେଠାରୁ ଚିତ୍ରଲେଖା ପ୍ରସ୍ତାବ କରନ୍ତେଣି, କେବଳ ମାତ୍ର ମନମୋଟିଆ ଝିଅର ଭୟରେ ସାହସ ହେଉନାହିଁ । ଯାହା କପାଳରେ ଥିବ ।

ତାପସୀ ଆଉ ଟିକିଏ ଗମ୍ଭୀର ମୁହଁରେ କହେ ଦେଖି ମା' ଏସବୁ ଯାଇତାଇ କରନା । ମଣିଷ କ'ଣ କଣ୍ଢେଇ ଯେ ଗୋଟିଏକୁ ନେଇ ବାରମ୍ବାର ଖେଳୁଥିବ ।

– କ'ଣ ହେଲା କଥାଟା । ଚିତ୍ରଲେଖା ତୀକ୍ଷ୍ଣ ସ୍ୱରରେ ପ୍ରଶ୍ନ କରେ - ତୋର ଏ କଥାର ଅର୍ଥ ?

– ଅର୍ଥ ଫର୍ଥ ଜାଣି ନାହିଁ ମା' କେବଳ ତତେ କହି ରଖୁଛି ମୋ ଉପରୁ ଆଶା ଛାଡ଼ିଦେ । ଆଜି ମିଷ୍ଟର ମୁଖାର୍ଜୀ ପସନ୍ଦ କରିବେ ନାହିଁ ବୋଲି ମୁଁ ଶାଢ଼ୀ ଛାଡ଼ି ସ୍କାର୍ଟ ପିନ୍ଧିବି - ଅଥବା କାଲି ମିଷ୍ଟର ଲାହିଡ଼ୀ ପସନ୍ଦ କରୁନାହାନ୍ତି ବୋଲି ଚା' ଛାଡ଼ି କୋକୋ ଖାଇବି ଏସବୁ ମୋ ଦ୍ୱାରା ହେବ ନାହିଁ ।

ଦୁଇ ଆଖିରେ ଅଗ୍ନିବାଣ ବର୍ଷଣ କରି ଚିତ୍ରଲେଖା କେତୋଟି ମୁହୂର୍ତ୍ତ ନୀରବ ରହିବା ପରେ କ୍ରୁଦ୍ଧ ସ୍ୱରରେ କହିଲେ – ତୋର ମତଲବଟା ଖୋଲିକରି ମତେ କହ ?

–ମୋର ଆଉ ମତଲବ କ'ଣ ? ଯେମିତି ଅଛି ସେମିତି ରହିବି - ବାସ୍ ।

– ବାସ୍ ଏ କ'ଣ ପିଲାଖେଳ ପାଇଛୁ ନା' କ'ଣ ?

— ଅକାରଣ ରାଗ କରୁଛୁ କାହିଁକି ମା' ? ଜେଜେମା ଦେଇଥିବା ଗହଣାଗୁଡ଼ା ମତେ ଭଲ ଲାଗ ବୋଲି ମୁଁ ପିନ୍ଧୁଛି, ତତେ ଯଦି ଖୁବ୍ ବୀରକ୍ତିକର ଲାଗେ ଆଉ ପିନ୍ଧିବି ନାହିଁ । କପାଳରୁ ସିନ୍ଥିଟା ଖୋଲି ଫୋପାଡ଼ି ଦେବାକୁ ଉଦ୍ୟତ ହୁଏ ବେବି ।

ଚିତ୍ରଲେଖା ବୋଧହୁଏ କିଛିଟା ଅପ୍ରତିଭ ହୁଏ, ଇଷତ୍ ନରମ ଗଳାରେ କହେ— ଥାଉ ଥାଉ ବ୍ୟସ୍ତ ହେବାର ଦରକାର ନାହିଁ, କିନ୍ତୁ କଥା ହେଉଛି କିରିଟୀ ବିଷୟରେ କିଛି ଗୋଟାଏ ସ୍ଥିର ସିଦ୍ଧାନ୍ତ କରିବା ଉଚିତ୍ ନୁହେଁ କି? ଏମିତି ଅନିଶ୍ଚିତ ଆଶାରେ ଦିନ କାଟିବା ପରି ଶସ୍ତା ପିଲା ନୁହେଁ, ତଥାପି ତତେ ଟିକିଏ ବେଶି ପସନ୍ଦ କରି ବସିଛି ବୋଲି ତୋର ସବୁ ଖାମଖିଆଲି ପ୍ରକୃତିକୁ ସେ ସହ୍ୟ କରୁଛି । କିନ୍ତୁ ଜାଣିରଖ ସୁଯୋଗ ବାରମ୍ବାର ଆସେ ନାହିଁ । ଅବଶ୍ୟ ଏକୁ ଯଦି ତୋର ପସନ୍ଦ ନହୁଏ ତାହେଲେ ଅଲଗା କଥା, ତା ନହେଲେ କହିବି ସେଟା ତୋର ପରମ ଦୁର୍ଭାଗ୍ୟ ।

— ଭାଗ୍ୟଟା ମୋର ନିହାତି ନିଷ୍ଠୁର ମା', ନୂଆ କରି ତୁ କ'ଣ ବଦଳେଇବୁ ତାକୁ ?

ଯଦିଓ ତାପସୀ ପରିହାସ ଛଳରେ ନିଜ ଭାଗ୍ୟର ନିନ୍ଦାକରେ, ତେବେ ମନେହୁଏ ବ୍ୟଙ୍ଗର ଆଡୁଆଳରେ କେଉଁଠି ଯେମିତି ରହିଛି ହତାଶାର ସୁର ।

ଚିତ୍ରଲେଖାର ମାତୃହୃଦୟ କମ୍ପି ଉଠେ ।

ମୁଖରା ହେଉ — ରୁକ୍ଷ ମିଜାସୀ ହେଉ — ଯେତେ ହେଲେ ବି ମା' । ଆଜିକୁ ଯେ ଦଶ ବାର ବର୍ଷ ହେଲା ଲଢ଼ି ଆସିଛି ଚିତ୍ରଲେଖା- ଝିଅର ସେହି କଣ୍ଢେଇ ଖେଳର ବିବାହଟା ବାତିଲ କରିବା ପାଇଁ ନା କ'ଣ ପାଇଁ ? ଝିଅଟା ସୁଖୀ ହେଉ, ସଂସାର କରୁ, ଜୀବନକୁ ଉପଭୋଗ କରିବାର ପଥ ଖୋଜି ପାଉ ଏଇ ତାର ଉଦ୍ଦେଶ୍ୟ ନା' ଆଉ କ'ଣ ?

ବିଗଳିତ ସ୍ୱରରେ କହିଲା— ଭାଗ୍ୟ କାହିଁକି ଖରାପ ହେବ ? କେବେ ନୁହେଁ । ମଣିଷର ଅବିବେଚନା ଫଳରେ ଯେଉଁ ଦୁର୍ଭାଗ୍ୟ, ସେହି ଦୁର୍ଭାଗ୍ୟକୁ କାହିଁକି ସ୍ୱୀକାର କରିନେବି ମୁଁ । ମୁଁ ଅବାକ୍ ହୋଇଯାଉଛି ବେବି ଏତେ ଲେଖାପଢ଼ା ଶିଖି ତୁ ବର୍ତ୍ତମାନ ଏତେ କୁ ସଂସ୍କାରଛନ୍ନ ହୋଇଯାଉଛୁ ।

ତାପସୀ ହସି ପକେଇ କହିଲା ସେ କଥାଟା ମିଛ ନୁହେଁ ମା' । ତୋ ପରି ଏତେଟା କୁସଂସ୍କାର ମୁକ୍ତ ହୋଇପାରିନି ବର୍ତ୍ତମାନ ସୁଦ୍ଧା, ଦେଖିବି ଭବିଷ୍ୟତରେ ଯଦି ପାରେ ।

ପୂର୍ବତନ ସେହି 'ବିବାହ' ନାମକ ଖେଳଟାର ନାମ ଆଉ ସ୍ପଷ୍ଟ କରି କେହି ଉଲ୍ଲେଖ କରନ୍ତି ନାହିଁ, କେବଳ କଥାରେ ଯୁଦ୍ଧ ଚାଲେ । ଚିତ୍ରଲେଖା ଝିଅର ବିଦ୍ରୂପ

କଥାରେ ଜଳି ଉଠି କହେ ଏଇଟା ଯଦି ତୋର ଉଚ୍ଚ ଆଦର୍ଶହୁଏ, ତାହହେଲ ପିଲାଟାକୁ ଝୁଲେଇ ରଖିବାର କୌଣସି ମାନେ ଦେଖୁନାହିଁ ।

— ମା' — ଛି !

ଚିତ୍ରଲେଖା କଥାଟା କହିଦେଇ ମନେ ମନେ ଯେ ଟିକିଏ କୁଣ୍ଠିତ ନହୋଇଛି ତା ନୁହେଁ, କିନ୍ତୁ ସେଟା ପ୍ରକାଶ କରିବା ସମ୍ମାନ ଜନକ ନୁହେଁ, ସେଇଥିପାଇଁ ଜିଦ୍‌ର ସଙ୍ଗେ କହି ବସିଲା — ନିଶ୍ଚୟ ତ, ନିଜର ବ୍ୟବହାର ନିଜେ ବୁଝିବା ପରି ବୁଦ୍ଧି ତୋର ହୋଇଛି, ସେ କେଉଁଆଶାରେ ଯେତେବେଳେ ସେତେବେଳ ଆସି ଦୁଆର ମୁହଁରେ ଧାରଣା ଦିଏ — ପୁଳା ପୁଳା ଟଙ୍କା ଖର୍ଚ୍ଚ କରେ ? ଏତେଦିନେ ଅନାୟସରେ ଜବାବ ଦେଇ ପାରିଥା'ନ୍ତୁ ତୁ । ଦେବା ଉଚିତ ଥିଲା ।

ତାପସୀ ବିରକ୍ତି ଭରା ଗମ୍ଭୀର ସ୍ୱରରେ କହିଲା— କିଏ କାହା ଆଶାରେ କ'ଣ କରୁଛି ସେଥିପାଇଁ ମୁଁ କାହିଁକି ଦାୟୀ ହେବାକୁ ଯିବି, କେଉଁ ଦୁଃଖରେ ? ଆଉ ଜବାବର କଥା ଯଦି କୁହ, ତେବେ ମିଛି ମିଛିକା ଉପରେ ପଡ଼ି ଜବାବ ଦେବାକୁ ଯିବି କାହିଁକି ? ପ୍ରଶ୍ନ ଯଦି ଆସେ ଜବାବ ଦେବାକୁ ଡେରି ହେବ ନାହିଁ । ତା ଦେଖ ।

ଝିଅର ଏମିତି ରୋକ୍ ଠୋକ୍ କଥା ଶୁଣି ଚିତ୍ରଲେଖା କ୍ଷୀପ୍ର ହୋଇଉଠିବେ ଏଟା କିଛି ବିଚିତ୍ର କଥା ନୁହେଁ । ଦୀର୍ଘକାଳ ହେଲା ଯେଉଁ ଆଶା-ତରୁ ମୂଳରେ ସେ ଜଳସିଞ୍ଚନ କରି ଆସୁଛି — ଝିଅ ଯଦି ପଦେକଥାରେ ତା ମୂଳରେ କୁଠାରଘାତ କରି ବସେ ମନର ଅବସ୍ଥା କ'ଣ ହେବ ?

ମୁହାଁ ମୁହିଁ ତାପସୀ ସାଙ୍ଗରେ କୌଣସିଦିନ କଥା ହୋଇ ନାହିଁ ଏଟା ଠିକ୍, ତେବେ ଚିତ୍ରଲେଖାର ନିଶ୍ଚିତ ଧାରଣା ଥିଲା— ଏତେଦିନ ହେଲା ଝିଅଟା କୁମାରୀ କନ୍ୟା ବୋଲି ସ୍ୱୀକାର କରିଆସିଛି ଏବଂ ଭବିଷ୍ୟତର ରଙ୍ଗିନ ଛବି ଆଙ୍କୁଛି । କିନ୍ତୁ ଆଜିର କଥାବାର୍ତ୍ତାରୁ ଯାହା ଜଣାପଡୁଛି ଏ ସବୁ ଏତେ ସୁବିଧାଜନକ ନୁହେଁ । ଶେଷପର୍ଯ୍ୟନ୍ତ ଏମିତି ଗଣ୍ଡମୂର୍ଖ ହେଲା ଝିଅଟା ? ଏତେବଡ଼ ଜୀବନଟାକୁ କଟାଇବାର ଗୋଟାଏ ଅବଲମ୍ବନ କ'ଣ ପ୍ରୟୋଜନ ହେବ ନାହିଁ ? ବିଧବା, ସ୍ୱାମୀର ସ୍ମୃତିକୁ ଛାତିରେ ଚାପିଧରେ । ତଥାପି ବିଧବା ବିବାହ ହୁଏ । ଗୋଟିଏ ଯୁଗର ଆଗେ ସେଇ ଧୂମକେତୁ ପରି ସେଇ ସର୍ବନାଶା ପିତୃମାତୃ ହୀନ ପିଲାଟା ବଂଚିଛି କି ମରିଛି ତା ସନ୍ଦେହ । ଶୁଣିଥିଲି ତାର ତିନିକୂଳରେ କାଳେ କେହି ନାହିଁ ତାହାର ତେବେ ? ପିଲାଟା କ'ଣ ଉଧେଇଥିବ ? ଟଙ୍କା ପଇସାଗୁଡ଼ା ପାଞ୍ଚଜଣ ଭୁଲେଇ ଭାଲେଇ ନେଇଯାଇଥିବେ, ପିଲାଟା ହୁଏତ... ସବୁ ଚିନ୍ତାଗୁଡ଼ା ମନଭିତରେ ଭିଡ଼କରିବାରୁ ଦିଗହରା ଚିତ୍ରଲେଖା ରାଗରେ ପ୍ରଶ୍ନ କଲା — ତୁ ତାହେଲେ ସଂପୂର୍ଣ୍ଣ ସ୍ୱେଚ୍ଛାଚାରୀଣୀ ହେବାକୁ ଚାହୁଁ ନାଁ

କ'ଣ ? ତା ନହେବୁ ବା କାହିଁକି ? ତୋର ଜେଜେମା ତ ସ୍ୱେଚ୍ଛାଚାରିଣୀ ହେବାକୁ ବାଟ ଖୋଲି ଦେଇ ଯାଇଛନ୍ତି । କାହାରି ମୁଖାପେକ୍ଷୀ ହେବୁନାହିଁ । ଜମିଦାରୀର ମାଲିକ ।

ନିତାନ୍ତ କ୍ରୋଧରେ ଏପରି କଟୁକଥା ଉଚ୍ଚାରଣ କରେ ଚିତ୍ରଲେଖା । ବସ୍ତୁତଃ ହେମପ୍ରଭାର ଦାନପତ୍ର ଅନୁସାରେ ତାପସୀ ସବୁ ସମ୍ପତ୍ତିର ଉତ୍ତରାଧିକାରୀଣୀ ହେଲେ ମଧ୍ୟ ସେଟା ନାମକୁ ମାତ୍ର କିନ୍ତୁ ଚିତ୍ରଲେଖା ହିଁ ସବୁ । ତା ଛଡ଼ା ବୁଦ୍ଧି ବିବେକ ହେବା ଦିନରୁ ତାପସୀ କ୍ରମାଗତ ଏଥିରେ ପ୍ରତିବାଦ କରି ଆସୁଛି କିନ୍ତୁ ବର୍ତ୍ତମାନ ସୁଦ୍ଧା ପ୍ରତିକାର କିଛି ହୋଇନାହିଁ । ସେଇକଥାକୁ ନେଇ ଏମିତି ତୀକ୍ଷ୍ଣ ଖୁଣ୍ଟା ଯେ ଦେବ ଚିତ୍ରଲେଖା ସେଟା ଧାରଣା ନଥିଲା ତା'ର । ମର୍ମାହତ ତାପସୀ କ'ଣ ଗୋଟାଏ କହିବାକୁ ଯାଉଥିଲା ସେହି ସମୟରେ ସିଦ୍ଧାର୍ଥ ଆସି ସମ୍ବାଦ ଦେଲା – ମା' ଦିଦି, ମିଷ୍ଟର ମୁଖାର୍ଜୀ ଆସିଛନ୍ତି ।

ବେପରୱା କିଶୋର ତରୁଣ ତାହାର କଥା କହିବା ଭଙ୍ଗୀରୁ ମନେ ହେଲା ମିଷ୍ଟର ମୁର୍ଖାର୍ଜୀ ସମ୍ବନ୍ଧରେ ମନଭାବଟା ନିହାତି ବିଗଳିତ । ଦିଦି ଅଗ୍ରାହ୍ୟଭାବ ଦେଖାଇଲେ ତାକୁ ତୀରସ୍କାର କରିବାକୁ ଛାଡ଼େନାହିଁ ।

କେବଳ ଅମିତାଭକୁ ନିରପେକ୍ଷ ମନେହୁଏ ।

ଚିତ୍ରଲେଖା ହତାଶଭାବେ ଦୁଇହାତ ଓଲଟାଇ କହିଲା– ପୁଣି ମିଷ୍ଟର ମୁଖାର୍ଜୀ !

ସିଦ୍ଧାର୍ଥ ବିସ୍ମିତ ଭାବରେ କହିଲା – କ'ଣ ହେଲା ?

– କିଛି ନୁହେଁ ତୋ ଦିଦିର ସିନେମା ଯିବାର ରୁଚିନାହିଁ । ସିଦ୍ଧାର୍ଥ ମା' କଥାଶୁଣି ବୀରକ୍ତିଭାବରେ କହିଲା ବାଃ ବଢ଼ିଆ ମଜା କରୁଛ ! ଭାଇ କହିଲା ଯିବ ନାହିଁ, ଦିଦି ମଧ୍ୟ ସେଇଆ କହୁଛି, ମୁଁ କେବଳ ବୋକା ପରି ଯିବି ତା ସାଙ୍ଗରେ ।

ତାପସୀ ମୃଦୁ ହସି କହିଲା– ଅଭିର କ'ଣ ହେଲା ?

– କ'ଣ ଆଉ ହେବ – ମାନ ମାରିଛି । ଝିଅମାନଙ୍କ ପରି କାହା ସାଙ୍ଗରେ ଯିବେ ନାହିଁ ବାବୁ, ନିଜର କ'ଣ ଗୋଡ଼ ହାତ ନାହିଁ ? ଗୋଡ଼ହାତ ଯେମିତି ମୋର ନାହିଁ, ତେବେ ଭଦ୍ରତା ବୋଲି ଗୋଟାଏ ଜିନିଷ ଅଛିନା ନାହିଁ ?

– ନିଶ୍ଚୟ ଅଛି । ତାପସୀ ହସି ପକେଇ କହିଲା – ଭଦ୍ରତା ରଖିବାକୁ ନିଶ୍ଚୟ ଯିବା ଦରକାର – କ'ଣ କହୁଛ ସିଦ୍ଧାର୍ଥବାବୁ ? ତା ଛଡ଼ା ଝିଅମାନଙ୍କର ନିଜର ଗୋଡ଼ହାତ ନାହିଁ, କାହାସାଙ୍ଗରେ ଯିବା ଛଡ଼ା ଆଉ ଉପାୟ କ'ଣ ?

ନିତାନ୍ତ ସ୍ୱଚ୍ଛନ୍ଦ ଗତିରେ ସିଦ୍ଧାର୍ଥ ସାଙ୍ଗରେ ତଳକୁ ଓହ୍ଲେଇଗଲା ତାପସୀ । ମିଷ୍ଟର ମୁଖାର୍ଜୀଙ୍କ ଉଦ୍ଦେଶ୍ୟରେ ।

ଚିତ୍ରଲେଖା ଝିଅର ଯିବା ବାଟକୁ ଅନେଇ ରହିଲା ସତେ ଯେପରି ତାର ଚେତା ଫେରି ଆସୁଛି । କ୍ରୋଧ ? କ୍ଷୋଭ ? ଘୃଣା ? ଅବିଶ୍ୱାସ ନା ହତାଶା ? – ଝିଅକୁ ବୁଝି ନପାରିବାର ହତାଶା !

ବାରଣ୍ଡାକୁ ଯାଇ ହଲଚଲ ହେବାର ଏନାର୍ଜୀ ଆଉ ରହେନା ଚିତ୍ରଲେଖାର । ବସି ବସି ଶୁଣିବାକୁ ପାଇଲେ – କାର ଘରୁ ବାହାରି ଗଲା । ଅମିତାଭ ଯାଇନାହିଁ, ଘର ଭିତରେ କଣ୍ଠସ୍ୱର ଶୁଭୁଛି ।

ମିଷ୍ଟର ମୁଖାର୍ଜୀ ବା କିରିଟୀକୁ ଅମିତାଭ ଯେ ଭଲ ଦୃଷ୍ଟିରେ ଦେଖେ ନାହିଁ, ତା ତାହାର ଏଡ଼େଇ ଯିବା ଭଙ୍ଗିରୁ ଧରାପଡ଼େ । ନିତାନ୍ତ ଅନୁରୋଧ ନକଲେ ସେ କିରିଟୀ ସାଙ୍ଗରେ କୁଆଡ଼େ ଯିବାକୁ ଚାହେଁ ନାହିଁ । କିନ୍ତୁ କାହିଁକି ?

ଭଲ ଲାଗେନାହିଁ – ଭଲ ଲାଗେ ନାହିଁ – କିଛିଟା ଭଲ ଲାଗେ ନା । ଭଲ ଲାଗିବାର ସହସ୍ର ଉପକରଣ ଚର୍ତୁଦିଗରେ ସଜାହୋଇଥିବା ସତ୍ତ୍ୱେ ମଧ । ଯେମିତି ଭଲ ନଲାଗିବାର ଗୋଟାଏ ତୀକ୍ଷ୍ଣ କଣ୍ଟା ଅହରହ ଫୋଡ଼ି ହେଉଥାଏ ମନ ଭିତରେ । କୌଣସି ପ୍ରକାରରେ ସେହି ଅଦୃଶ୍ୟ ଶତ୍ରୁକୁ ଦୂର କରାଯାଇପାରୁ ନାହିଁ । ଚାଲିଲେ, ବୁଲିଲେ ଖାଇଲେ, ଶୋଇଲେ ଏଇ କଣ୍ଟା ଯେମିତି ପ୍ରତି ମୁହୂର୍ତ୍ତରେ ସ୍ମରଣ କରେଇ ଦିଏ –"ତୁମେ ଅସ୍ୱାଭାବିକ, ତୁମେ ଅଦ୍ଭୁତ ତୁମେ ସୃଷ୍ଟି ଛଡ଼ା । ସବୁଥିରେ ଖୁସୀ ହେବାର ଅଧିକାରୀ ତୁମେ ନୁହଁ, ଜନ୍ମଲଗ୍ନର କ୍ରୁର ପରିହାସରେ ସେ ଯୋଗ୍ୟତା ତୁମେ ହରେଇଛ ।"

ଖୁସୀ ହେବାକୁ ଯାଇ ଖୁସୀ ହୋଇପାରେନା ତାପସୀ, ଠିକ୍ ଭାବେ ଅନ୍ତରଙ୍ଗ ହୋଇ ପାରେନା କାହା ପାଖରେ, ସହଜ ହୋଇପାରେନା କାହା ପାଖରେ । ହସିବାକୁ ଯାଇ ଅଟକି ଯାଏ, ଭଲପାଇବାକୁ ଯାଇ ଫେରିଆସେ । ଅନେକ ସମୟରେ ତା'ର ବ୍ୟବହାରଟା ସାମଞ୍ଜସ୍ୟହୀନ, ଓଲଟପାଲଟ, ଅନ୍ୟପାଖରେ ଦୁର୍ବୋଧ୍ୟ ।

ଅନ୍ୟକଥା ପଛକୁଯାଉ ନିଜ ମାଆ ଚିତ୍ରଲେଖା ମଧ ଆଜି ପର୍ଯ୍ୟନ୍ତ ଚିହ୍ନିପାରିଲେ ନାହିଁ ତାକୁ । ଖୁସିବି କରିପାରିଲେ ନାହିଁ । ବଜାର ଉଜାଡ଼ି ଦେଇ ଉପହାର ସାମଗ୍ରୀ ଦେଇ ନୁହେଁ କି ହୃଦୟ ଉଜାଡ଼ି ଦେଇ ଭଲ ପାଇବା ମଧ ନୁହେଁ ।

ତା ଛଡ଼ା କିରୀଟୀର କଥା ଧର । ସେ ବିଚରା ତାପସୀକୁ ସାମାନ୍ୟ ଯଦି ଟିକିଏ ଖୁସୀ କରି ପାରିଲେ ଧନ୍ୟ ହୋଇ ଯାଏ । ସେ କଥା ଆଉ ଗୋପନ ହେଇ ନାହିଁ । ଚେଷ୍ଟାରେ ସେ ତ୍ରୁଟୀ ରଖେ ନାହିଁ କିନ୍ତୁ ପାରୁଛି କେଉଁଠି ? ତାପସୀର ପାଦତଳେ ପ୍ରାଣଟା ଢ଼ାଳିଦେଲେ ବଡ଼ ଜୋହରରେ ଆନନ୍ଦ ପ୍ରକାଶର ପ୍ରସାଦ ବିତରଣ କରିପାରେ ତାପସୀ କିନ୍ତୁ ଖୁସୀ ହୋଇ ପାରେନା ।

କିରୀଟୀ ହୁଏତ ଭାବେ ନିଜର ତ୍ରୁଟି କିନ୍ତୁ ତାପସୀ ଜାଣେ କାହାର ତ୍ରୁଟି । ଭଲପାଇବା ପାଇ ଖୁସି ହେବା ଅନ୍ୟକୁ ଧନ୍ୟ କରି ଧନ୍ୟ ହେବାର ସୌଭାଗ୍ୟ ତାପସୀର ନାହିଁ । ଶିଶୁ ତାପସୀକୁ କଣ୍ଢେଇ କରି ଯେଉଁମାନେ ଇଚ୍ଛାଅନୁସାରେ ଖେଳିଯାଇଛନ୍ତି, ସେମାନଙ୍କ ଉପରେ କ୍ରୋଧରେ କ୍ଷୋଭରେ ମଝିରେ ମଝିରେ ହାତଗୋଡ଼ ଛାଟି କାନ୍ଦିବାକୁ ଇଚ୍ଛାହୁଏ ତାପସୀର । କିନ୍ତୁ ଇଚ୍ଛାଟାକୁ ତ କାର୍ଯ୍ୟରେ ପରିଣତ କରିବା ଚଳିବ ନାହିଁ ।

ତାର ବ୍ୟବହାର ଚାଲିଚଳଣ ସଙ୍ଗତିହୀନ, ଦୁର୍ବୋଧ । ଚିତ୍ରଲେଖା ପରି ଯଦି ଖେଳଟାକୁ ଖେଳପରି ଝାଡ଼ିପୁଛି ସହଜ ହୋଇପାରନ୍ତା ହୁଏତ ବଂଚିଯା'ନ୍ତା । କିନ୍ତୁ ପାରିଲା କେଉଁଠି ? ପାରେ ନାହିଁ ବୋଲି କିରୀଟୀ ପାଖରେ ବସି ସିନେମା ଦେଖୁ ଦେଖୁ ମୁଣ୍ଡବିନ୍ଧା ଯନ୍ତ୍ରଣାରେ ଏତେ କାତର ହୋଇପଡ଼େଯେ ହଲ୍ ଭିତରେ ବସିବା ସମ୍ଭବପର ହୁଏ ନାହିଁ ।

ଅମିତାଭ ଅବଶ୍ୟ ଆସେନାହିଁ, ଦିଦିର ଏହିପରି ଅବାନ୍ତର ବ୍ୟବହାର ସେ ସହ୍ୟକରି ପାରେନା, କିନ୍ତୁ ଆଜିର ବ୍ୟବହାରରେ ସିର୍ଦ୍ଧାର୍ଥ କିଛି କମ୍ ଚିଡ଼ିନାହିଁ । ସେ [illegible] ଏତେ ପିଲା ହୋଇନାହିଁ ଯେ ଦିଦିର ଏହି ଢଙ୍ଗକୁ ବୁଝିବାକୁ ଅକ୍ଷମ ହେବ । [illegible] ଭଲ ଛବି ଦେଖୁ ଦେଖୁ ମଝିରୁ ଉଠି ଘରକୁ ପଳେଇ ଆସିବାର ବାହାନା [illegible] ନ ଚିଡ଼ିବ । ମନର ରାଗ ମନରେ ମାରି ଗମ୍ଭୀର ଭାବେ କହିଲା ମିଷ୍ଟର ମୁଖ[illegible] ଆପଣ କାହିଁକି ଯିବେ ? ମୁଁ ଦିଦିକୁ ନେଇ ଚାଲିଯାଉଛି ।

କିରୀଟୀ ବ୍ୟସ୍ତ ହୋଇ [illegible] ଦେଲା ନା- ନା ମୁଁ ଯିବି । ତୁମେ ବସନା ମୁଁ ତାକୁ ଘରେ ଛାଡ଼ିଦେଇ ସାଙ୍ଗେ ସାଙ୍ଗେ [illegible] ଆସିବି । ଯିବି- ଆଉ ଆସିବି ।

– ତା ନୁହେଁ – ସିଦ୍ଧାର୍ଥ ମନେ ମନେ [illegible] ପୁଣି ଆସିବ । ଡ୍ରଇଂ ରୁମ୍‌ରେ ଘଣ୍ଟାଏ, ସିଢ଼ି ସାମନାରେ ଅଧଘଣ୍ଟା, ଗେଟ୍‌ପାଖରେ କୋଡ଼ିଏ ମିନିଟ୍, ଏତିକି ସମୟ ଭିତରେ ଆଉ ଗୋଟାଏ ସୋ ଆରମ୍ଭ ହୋଇ ସାରିଥିବ । ଲୋକ ମନେ ମନେ କ'ଣ ନ ଭାବନ୍ତି । ଭଦ୍ରତା ବଜାଇ ରଖି ସିଦ୍ଧାର୍ଥ କହିଲା ଦେଖ କି ଅନ୍ୟାୟ ! ମଝିରୁ ସିନେମା ନଦେଖି ପଳେଇ ଯିବା ଦିଦିର ତ ସେଇ ଗୋଟାଏ ପୁରୁଣା ରୋଗ - 'ମୁଣ୍ଡବିନ୍ଧା' ଯେଉଁଠି ସେଇଠି ତୋର ମୁଣ୍ଡବିନ୍ଧା ଆରମ୍ଭ ହୋଇଯାଏ ।

ତାପସୀ ସେତେବେଳକୁ ସିଟ୍‌ଛାଡ଼ି ବାହାରକୁ ଚାଲିଗଲାଣି । ଭଦ୍ରତା ବ୍ୟବହରରେ ଚକ୍ଷୁଲଜ୍ୟା ପର୍ଯ୍ୟନ୍ତ ନାହିଁ ।

କିରୀଟୀ ଗାଡ଼ିର ଦରଜା ଖୋଲି ଛିଡ଼ା ହେବା ପର୍ଯ୍ୟନ୍ତ ତାପସୀ ପାଟିରୁ ପଦଟିଏ କଥା ବି ବାହାରିଲା ନାହିଁ । ଗାଡ଼ିରେ ଡେରି ହୋଇ ବସିପଡ଼ି କହିଲା– ଆପଣ ଛବିଟା

ନଦେଖି ଆସିବାଟା ଠିକ୍ ହେଲା ନାହିଁ, ମୁଁ କ'ଣ ଏଇ ଟିକିଏ ରାସ୍ତା ନିଜେ ଯାଇ ପାରି ନଥା'ନ୍ତି ?

— ନିଶ୍ଚୟ ଯାଇ ପାରିଥା'ନ୍ତେ କିନ୍ତୁ ମୋର ତ ପୁଣି ଗୋଟାଏ କର୍ତ୍ତବ୍ୟ ଅଛି !

— କର୍ତ୍ତବ୍ୟ ? ଓଃ !

କିରୀଟୀ ସାଙ୍ଗେ ସାଙ୍ଗେ ଉତ୍ତର ଦେଲାନାହିଁ, ମନେହେଲା ଯେମିତି ଉତ୍ତର ଖୋଜୁଛି । କିନ୍ତୁ କେତେ ମିନିଟ୍ ପର୍ଯ୍ୟନ୍ତ କିଛି କହିଲା ନାହିଁ । ଜନଗହଳି ରାସ୍ତା ଭିତରେ ଗାଡ଼ିଟା ଚଳେଇ ଚାଲିଛି କେବଳ । କିଛିକ୍ଷଣ କଟିଗଲା – ତାପସୀ ହଠାତ୍ ପ୍ରଶ୍ନ କଲା- ପ୍ରଶ୍ନ ନହେଲେ ବି - କଥା । ନୀରବତାକୁ ଏଡ଼େଇବା ପାଇଁ ଅର୍ଥହୀନ ଗୋଟାଏ କଥା ।

— ବାବୁଲ ଖୁବ୍ ଚିଡ଼ିଗଲା ନୁହେଁ, କ'ଣ କହିଲା ?

— କାହିଁକି, ରାଗିବ କାହିଁକି ?

ଉତ୍ତରଟା ଦେବାପାଇଁ ଥରେ ମୁହଁଟା ଫେରେଇ ତାପସୀ ଆଡ଼କୁ ଅନେଇଦିଏ କିମ୍ବା ମୁଣ୍ଡ ଆଢୁଆଳ ହେଉଥିବାରୁ ରାସ୍ତାକୁ ଭଲଭାବେ ଦେଖିବାପାଇଁ ଢ଼ଳି ପଡ଼େ । କେଉଁଟା ଠିକ୍ ତାହା ବୁଝିହୁଏନା ।

— କାହିଁକି ?

ତାପସୀ ଅଳ୍ପଟିକିଏ ହସିଲା – ଅସମୟରେ ଏ ରକମ ମୁଣ୍ଡ ବିନ୍ଧିଲେ ସେ ଭାରି ଚିଡ଼ିଯାଏ ।

— କାହିଁକି ? ତାର ତ ଏମିତି ମୁଣ୍ଡବିନ୍ଧା ଦେଖିବାର ଅଭ୍ୟାସ ଅଛି ।

— ତାହାହେଲେ ଯେଉଁମାନଙ୍କର ଦେଖା ଅଭ୍ୟାସ ନାହିଁ, ସେମାନଙ୍କର ଚିଡ଼ିବା ଉଚିତ ତୁମ ଏଇ ଅଭିପରି ।

— ମୋର କୌଣସି ମତାମତ ନାହିଁ, ଦେହ ଖରାପ ହେବା ଉପରେତ କାହାର ହାତ ନାହିଁ ।

— ଆପଣ ଖୁବ୍ ଉଦାର- ତୀକ୍ଷ୍ଣ ଶୁଣାଯାଏ ତାପସୀର କଣ୍ଠସ୍ୱର । ଆଉ ଧରନ୍ତୁ ଯଦି ଦେହ ଖରାପଟା ଇଚ୍ଛାକୃତ ହୁଏ ? ତାହେଲେ ରାଗହେବ ନାହିଁ ଆପଣଙ୍କର ?

— ସେଥିରେ ମଧ ନୁହେଁ, କିରୀଟୀ ସ୍ୱରରେ ଆକସ୍ମିକ ବିସ୍ମୟର ଆଭାସ ନାହିଁ, ଯେମିତି ଜଣାକଥା, ଏଇପରି ସହଜଭାବରେ ସେ କହିଲା । ସେଇଟା ହେଲା ହାତଛଡ଼ା କଥା ।

– ଓଃ ତାହେଲେ କେଉଁଥିରେ ଯାଏ ଆସେନା ଆପଣଙ୍କର ?

– ଏ ସବୁ କଥାର ଉତ୍ତର ଏତେ ଶୀଘ୍ର ଦେବା ସହ ନୁହେଁ ।

– ଥାଉ କହିବା ଦରକାର ନାହିଁ । ଉଃ ଘରକୁ ଯାଇ ଶୋଇପଡ଼ିଲେ ରକ୍ଷା !

ଏଥର ମଧ୍ୟ କିରୀଟୀ ନିରୁତ୍ତର । ଘର ଦୁଆର ମୁହଁ ପାଖରେ ଓହ୍ଲେଇଦେଇ ଉତ୍ତର ଦେଲା ଆପଣଙ୍କ କଷ୍ଟର କାରଣ ହେଲି ବୋଲି ଦୁଃଖିତ । କ'ଣ ଆଉ କରାଯିବ ପୃଥିବୀର ନିର୍ବୋଧ ଲୋକ ନିଶ୍ଚୟତ କିଛି ରହିବେ । ଯାଇ ଶୋଇ ପଡ଼ ଶୀଘ୍ର ।

– ମା' ଶୋଇ ଦେଲେ ତ !

ତାପସୀର ଆଖିରେ ଯେମିତି କୌତୂକର ଆଭାସ, କିଛି ସମୟ ପୂର୍ବରୁ ଯିଏ ରୀତିମତ ବୀରକ୍ତ ପ୍ରକାଶ କରିଛି ତାହା ବୁଝାପଡୁନାହିଁ ।

– ମାଆ ଶୋଇବାକୁ ଦେବନାହିଁ, ତାର ମାନେ ?

– ତାର ମାନେ – ଅସମୟରେ ବାହାରୁ ଆସି ଶୋଇଛି ଦେଖିଲେ ଡାକ୍ତର ନଡାକି ଛାଡ଼ିବ ନାହିଁ ।

– ଡାକ୍ତର ତମ ପାଇଁ ଡାକିବା ଉଚିତ ।

– କାହିଁକି ? ବ୍ରେନ୍‌ର ଚିକିତ୍ସା କରିବାପାଇଁ ?

–ଧରନ୍ତୁ ସେଇଆ, ସତରେ ତମେ କାହିଁକି ଯେ ଏମିତି ଖାପଛଡ଼ା ତାହା ଭାବୁଛି । ବେଶ୍ ଭଲଥାଅ ହଠାତ୍ କ'ଣ ଯେ ହୁଏ ।

–ଏକେବାର ସାଧାରଣ ହେବା କ'ଣ ଭଲ ?

– ମତେତ ସେଇଟା ଭଲ ଲାଗେ । ଆଖ ପାଖର ଲୋକମାନେ ଟିକିଏ ନିର୍ଭୟରେ ବାଟ ଚାଲନ୍ତି ।

– ଭୟ କରିବାର ଦରକାର କ'ଣ ?

– କେଜାଣି, ହୁଏତ ବୋକାମି !

– ନିଜକୁ ବେକାଭାବିବାରେ ବୋଧହୁଏ ଖୁବ୍ ଭଲ ଲାଗେ ଆପଣଙ୍କୁ ।

– ଲାଗେନା ତଥାପି ବୋକାମି ଧରାପଡ଼ିଲେ ସ୍ୱୀକାର କରିବାକୁ ବାଧେନାହିଁ । ଆଚ୍ଛା ଯାଉଛି ।

– ଯାଉଛନ୍ତି ? ହେଉ ନମସ୍କାର । ଅବଶ୍ୟ ଫେରି ଯାଉ ଯାଉ ଫିଲିମ୍ ସରିଯାଇଥିବ ।

— ଫିଲିମ୍ ପାଇଁ କ'ଣ ମରିଯାଉଛି, ଏଇଆ ଆପଣ ଭାବିଲେ ?

— ବାଃ ମନେହେବାଟା ତ ସ୍ୱାଭାବିକ । ଏତେ ତରବର ହୋଇ ପଳେଇବାର କାରଣ ଆଉ କ'ଣ ଥାଇପାରେ ।

— ଛୋଟ ସାହାବଙ୍କୁ ଠିକ୍ ସମୟରେ ଫେରେଇ ଆଣିବାକୁ ତ ହେବ । ହାତ ଓଲଟେଇ ଘଣ୍ଟାରେ ସମୟ ଦେଖିବାକୁ ଲାଗିଲା କିରୀଟୀ ।

ଛୋଟ ସାହାବ ଅର୍ଥ ସନ୍ଧାର୍ଥ ।

— ବାବୁଲ ରାସ୍ତା ଭୁଲିଯିବ ନାହିଁ କେବେ !

— କେହି ରାସ୍ତା ଭୁଲେ ନାହିଁ — ତେବେ ଭଦ୍ରତା ବୋଲି ଗୋଟାଏ ଜିନିଷ ଅଛି ତ !

— ଆଉ କ'ଣ ହେଲା । ଆପଣଙ୍କ ପାଖରେ ତ ସେଇ ଗୋଟାଏ ଜିନିଷ ଅଛି । ବିଦ୍ରୂପରେ ତୀକ୍ଷ୍ଣ ସ୍ୱର ।

କିରୀଟୀ ଏଥର ସ୍ପଷ୍ଟଭାବେ ଚାହିଁଲା ତାପସୀର ଆଖିକୁ । କ'ଣ ଚାହେଁ ତେବେ ତାପସୀ ? କେଉଁ ଉତ୍ତର ? କେଉଁ ପ୍ରଶ୍ନ ? ତାର ସ୍ୱଭାବରେ କାହିଁକି ଏମିତି ଅସଙ୍ଗତି ? ଗୋଟାଏ ମିନିଟ ଚୁପ୍ ହୋଇ କହିଲା — ଏହାର ଉତ୍ତର ଅଛି ମୋ ପାଖରେ କିନ୍ତୁ ଆଜି ନୁହେଁ ।

— କାହିଁକି କ୍ଷତି କ'ଣ ?

କିରୀଟୀ ଆଉ କିଛି କହିବାକୁ ଯାଇ ଅଟକିଗଲା । ଅମିତାଭ ଚାଲି ଚାଲି ଫେରି ଆସିଲାଣି । ଦୁଇଜଣଙ୍କ ଆଡ଼େ କଣେଇ କରି ଟିକିଏ ଚାହିଁ ଦେଇ ଜୋତା ମଚ ମଚ୍ କରି ସିଢ଼ି ଦେଇ ଉପରକୁ ଉଠିଗଲା । କିରୀଟୀକୁ ସେ ଦେଖି ପାରିନାହିଁ, ଏଟା ଅବଶ୍ୟ ଏତେଦିନେ ଧରା ପଡ଼ିଛି । କିନ୍ତୁ ଏମିତି ସ୍ପଷ୍ଟ ଅବହେଳା କେବେ ସେ କରିନାହିଁ ।

— ଆଚ୍ଛା ଧନ୍ୟବାଦ, ଯାଉଛି ।

ତାପସୀ ନିଜେ ସର୍ବଦା ଭଦ୍ରତାର ବିଧିମାନି ଚଳେନାହିଁ, ତେବେ କ'ଣ ଭାଇର ବ୍ୟବହାରରେ ବିଗିଡ଼ି ଯାଇଛି ? ତା ନହେଲେ ଏମିତି ଦୁର୍ବଳ କୋହଭରା କାହିଁକି ତାର କଣ୍ଠସ୍ୱର ?

— ଉତ୍ତରଟା କ'ଣ ଶୁଭିଲା ନାହିଁ ମତେ ।

— ନ ହେଉ, କ୍ଷତି କ'ଣ ? ସାରା ଦୁନିଆଟା ତ ପ୍ରଶ୍ନରେ ମୁଖର, ଉତ୍ତର କେଉଁଠି ? — ନମସ୍କାର ।

ଏଥର ସତରେ ସେ ଚାଲିଗଲା ।

– କିରେ କ'ଣ ହେଲା ଚାଲି ଆସିଲୁ ଯେ, ମୁଣ୍ଡ ବିନ୍ଧୁଛି ନା କ'ଣ ? ଅନ୍ଧାର ଘର ଭିତରେ ଠୁକ୍ କରି ଟିକିଏ ଶବ୍ଦ, ପରକ୍ଷଣରେ ଆଲୋକର ବନ୍ୟାରେ ଭାସି ଉଠିଲା ଘର । ଚିତ୍ରଲେଖାର ଉତ୍କଣ୍ଠିତ ପ୍ରଶ୍ନର ବାକିଟା ଯେମିତି ଝିଅର ବିଛଣା ପାଖରେ ଆସି ଧକ୍କା ଖାଇଲା । କେତେବେଳେ ଫେରିଲୁ ? ମୁଣ୍ଡ ବିନ୍ଧିଲା କାହିଁକି ?

– ମୁଣ୍ଡ ବିନ୍ଧାରେ କାରଣ କ'ଣ, କାହିଁକି ଏ ସବୁ କିଏ କହିବ । ଏଟା କିଛି ନୂଆ କଥା ନୁହେଁ । ତାପସୀ ଉଠି ବସିଲା ।

– ନୂଆ କଥା ତ ନୁହେଁ ବୁଝିଲି । କିନ୍ତୁ ଆଜି ହଠାତ୍ ସିନେମା ଦେଖିବାକୁଯାଇ ମୁଣ୍ଡ ବିନ୍ଧା ବାହାରିଲା କାହିଁକି, ଚିତ୍ରଲେଖା ଝିଅ ପାଖରେ ଟିକିଏ ଘନିଷ୍ଠ ହୋଇ ବସିଲା– କହିଲା ଶୋଇଥା ଉଠୁଛୁ କାହିଁକି ?

– ହଠାତ୍ ଏମିତି ମଝାମଝାରି ମୁଣ୍ଡବଥା–

କିରୀଟୀ ତତେ କିଛି କହିଲା ନା କ'ଣ ?

ଚିତ୍ରଲେଖାର ଏତେ ମୃଦୁ କଣ୍ଠସ୍ୱର ଯେମିତି ଫିସ ଫିସ କଥା କହିଲା ପରି ଶୁଭୁଛି ।

– କହିବେ ଆଉ କ'ଣ ? ମୁଣ୍ଡବିନ୍ଧା ସାଙ୍ଗରେ ତାର ସମ୍ପର୍କବା କ'ଣ ? ବିରକ୍ତି ଗୋପନ ନକରି ଉତ୍ତର ଦେଲା ତାପସୀ ।

– ସେଇକଥା ତ ମୁଁ କହୁଛି । କିଛି ଗୋଟାଏ ହୋଇଛି ନହେଲେ–

– ତୁ କ'ଣ କହିବାକୁ ଚାହୁଁ, କହତ ସ୍ପଷ୍ଟ କରି ।

ତୀବ୍ର ସ୍ୱରରେ ପ୍ରଶ୍ନ କଲା ତାପସୀ ।

ଝିଅର କଣ୍ଠସ୍ୱର ତୀବ୍ରତାରେ ଚିତ୍ରଲେଖାର ଯେମିତି ଆତ୍ମମର୍ଯ୍ୟାଦା ଫେରି ଆସିଲା । ଚଢ଼ା କଣ୍ଠ ପାଇଁ ସେ ଡରିଯିବ ଝିଅକୁ, ହାର୍ ମନେଇ ପାରିବ ନାହିଁ ? ନିଶ୍ଚୟ ପାରିବ । ନିହାତି ସହୃଦୟତା ଦେଖେଇ ଆସିଛି ଝିଅକୁ ଏତେଦିନ ଧରି । କିଏ ଜାଣେ କିରୀଟୀରେ କେଉଁ ବ୍ୟବହାରରେ ମର୍ମାହତ ହୋଇ ବିଛଣା ଧରିଛି ବିଚରା !

ଅବଶ୍ୟ କିରୀଟୀ ସେମିତି ପିଲା ନୁହେଁ, କିନ୍ତୁ ମଣିଷ ଧୈର୍ଯ୍ୟର ସୀମା ଅଛିତ ଗୋଟାଏ । ନିଜ ଝିଅର ମିଜାସଟା ଜାଣିବାକୁ ବାକି ନାହିଁ ତାହାର । ଆଉ କିଛି ନୁହେଁ ଏଇ ଯେ ସିଛି ପିଛି ପିନ୍ଧି ଗୋଟାଏ କିମ୍ଭୁତ କିମ୍ଭାକାର ବେଶରେ ସିନେମା ଗଲା, ସେଇ ସମ୍ବନ୍ଧରେ ନିଶ୍ଚୟ କିଛି ଟିକା ଟିପ୍ପଣୀ ଦେଇଥିବ । ଅଥବା ତା ଯଦି ନହୋଇଥାଏ ବିବାହର ପ୍ରସ୍ତାବ ।

କିନ୍ତୁ ଯାହା ହେଉପଛେ ଆଉ ନରମ ହେବନାହିଁ ଚିତ୍ରଲେଖା, ତୀବ୍ର ସ୍ୱରରେ କହିଲା – ମୁଁ କ'ଣ କହିବାକୁ ଚାହେଁ ସେତକ ବୁଝିବାର ବୁଦ୍ଧି ଅବଶ୍ୟ ଅଛି ତୋର, ଏମିତି ବୋକୀ ଝିଅ ନୋହୁଁ । କହିବାକୁ ଚାହୁଁଛି କିରିଟୀ ଆଜି ପ୍ରପୋଜ ଦେଇଛି କି ନାହିଁ ?

ନିଜ ଅମଳର ଭାଷା ବ୍ୟବହର କରେ ସିଏ ।

– ପ୍ରପ୍ରୋଜ !

ତାପସୀ ହଠାତ୍ ହସି ଉଠିଲା - ଠିକ୍ ଆନ୍ଦାଜ କରିଛୁ ଦେଖୁଛି ।

ଚିତ୍ରଲେଖା ଈଷତ୍ ସନ୍ଦିଗ୍ଧଭାବେ କହିଲା – ସତ କହୁଛ ତ ?

କେଉଁଭାବରେ - ମାନେ ଠିକ୍ କ'ଣ କହିଲୁ ଦେଖି ?

– ବାବୁଲକୁ ପଚାରିଲୁ – ସେ ତ ପାଖରେ ଥିଲା । ସତେ ଯେମିତି ବାବୁଲକୁ ସାକ୍ଷୀ ରଖି ମନକଥାକୁ ବ୍ୟକ୍ତ କରିଛି କିରୀଟୀ ! କଥା ଶୁଣ !

– ବାବୁଲ ତ ଏଇ ଆସିଲା, ତା ମୁହଁରୁ ଶୁଣିଲି ଯେ ତୁମେ ଦୁହେଁ ଆଗେ ଚାଲି ଆସିଛ । ଡିରେକ୍ଟ ଘରକୁ ଚାଲି ଆସିଲ ନା ମଇଦାନରେ ଟିକିଏ ବୁଲି - ଚାଲିକରି -

ଚିତ୍ରଲେଖାର କଥାର ଛନ୍ଦରେ ଯେମିତି ଏକ ସୂକ୍ଷ୍ମ ଲୋଲୁପତା - କଥାର ଜାଲ ବିସ୍ତାର କରି ଝିଅଠାରୁ ଗୋପନ ତଥ୍ୟ ଆଦାୟ କରିବାକୁ ସେ ଚାହେଁ ।

–ପାଗଳାମୀ କରନା ବେଶୀ ! ବିଛଣାରୁ ଓହ୍ଲେଇ ଆସି ଟେବୁଲ ଉପରୁ ବହିଟେ ଟାଣିନେଇ ବସିପଡ଼ିଲା ତାପସୀ ।

– ହୋପଲେସ୍ ! ବୀରକ୍ତ ହୋଇ ପ୍ରସ୍ଥାନ କଲା ଚିତ୍ରଲେଖା ।

ହାୟ ! ଚିତ୍ରଲେଖାପରି ନିର୍ଲଜ କ'ଣ କେହି ଅଛି ଜଗତରେ ? ବର୍ତ୍ତମାନ ସିଏ ଝିଅର ଭବିଷ୍ୟତ ଭାବୁଛି , ଭଲ କରିବାକୁ ଚେଷ୍ଟା କରୁଛି । ବାବୁଲକୁ ପ୍ରଶ୍ନ କରିବାର ରୁଚି ମଧ ରହେନାହିଁ । ଯା ଖୁସୀ କରୁ ସିଏ ।

ମାଆ ଚାଲିଯିବା ପରେ ଘରର ଆଲୁଅ ନିଭେଇ ଦେଇ ପୁଣି ଶୋଇପଡ଼ିଲା ତାପସୀ । ମୁଣ୍ଡ ବିନ୍ଧାଟା ମିଛବୋଲି କେମିତି କୁହାଯିବ ? ସତରେ ମୁଣ୍ଡଟା ବିନ୍ଧି ଭୀଷଣ ଯନ୍ତ୍ରଣା ଦେଉଛି । ସତରେ କେତେଦିନ ଆଉ ଏମିତି ଚାଲିଥିବ ? ନିଜ ମନର ଚେହେରାକୁ ସ୍ପଷ୍ଟ କରି ଦେଖିବାକୁ ଭୟକରେ ଆଜିକାଲି । ଏଇ ଦୂରନ୍ତ ଆକର୍ଷଣକୁ କେତେଦିନ ଆଉ ଯୋଡ଼ିଧରିବ ତାପସୀ । କେଉଁ ମନ୍ତ୍ର ବଳରେ ? କେଉଁ ଦେବତାର

ଦୁହାଇ ଦେଇ ? ସେଇ ପ୍ରଚଣ୍ଡ ଆକର୍ଷଣର ସଂସ୍ରବ ତ୍ୟାଗ କରିବାର ପ୍ରବଳ ସଂକଳ୍ପ ପ୍ରତିଦିନ କେତେ ସହଜରେ ଭାଙ୍ଗିପଡ଼େ ।

ଅଥଚ— ନା– ନା, ସବୁଥିରେ ନା, ସେ ଅସମ୍ଭବ, ସଂପୂର୍ଣ୍ଣ ଅସମ୍ଭବ ।

ଚିତ୍ରଲେଖାର ସହଜ ହିସାବ ସାଙ୍ଗରେ ତାପସୀର ହିସାବ ମିଳିବା ସମ୍ଭବ ନୁହେଁ ।

ଭାବିହେଉଥିଲା, କିରୀଟୀ ଆଉ ସହଜରେ ଆସିବ ନାହିଁ । ଯେତେହେଲେ ବି ମାନ ମର୍ଯାଦା ବୋଲି ଗୋଟେ ଜିନିଷ ଅଛିତ ମଣିଷର । କିନ୍ତୁ ଦିଜଣଙ୍କର ଧାରଣାକୁ ଓଲଟାଇ ଦେଇ ପରଦିନ ନିତାନ୍ତ ନିର୍ଲଜ ପରି ହାଜିର ହେଲା ଲୋକଟା । କ'ଣ ନା ତାପସୀର ଖବର ନେବାକୁ ଆସିଛି । ତାପସୀର ମୁଣ୍ଡବଥାର ଚିନ୍ତାରେ ବୋଧହୁଏ ସାରାରାତି ନିଦ ହୋଇ ନାହିଁ ତାହାର । ଦୈବକ୍ରମେ ଆସି ମାତ୍ରେହିଁ ତାପସୀର ଦେଖା ମିଳିଗଲା । ପ୍ରସନ୍ନ ହସର ଆଲୋକରେ ଯେମିତି ଝକ୍‌ମକ୍ କରି ଉଠିଲା କିରୀଟୀ । ଶରତର ସୁନେଲି ସକାଳ ସାଙ୍ଗରେ ମୁହଁର ହସଟା ଯେମିତି ମିଶିଗଲା ।

– ଈଶ୍ୱରଙ୍କୁ ଧନ୍ୟବାଦ !

ଶାଢ଼ୀପଣତଟାକୁ ହାତରେ ଗୁଡ଼ୋଉ ଗୁଡ଼ୋଉ ତାପସୀ ହସ ହସ ମୁହଁରେ କହିଲା – ହଠାତ୍ ଈଶ୍ୱରଙ୍କ ଉପରେ ଏତେ ଅନୁଗ୍ରହ ?

– ତାଙ୍କର ଅଶେଷ କରୁଣା ପାଇଁ । ଆଶା କରି ନଥିଲି, ଆପଣଙ୍କର ଦେଖାପାଇବି ଏପରି ଭାବରେ ଅର୍ଥାତ୍ ସୁସ୍ଥ ଭାବରେ ।

ହଠାତ୍ ପ୍ରକାଶିତ ଆବେଗର ଭାଷାଟାକୁ ମୋଡ଼ ବୁଲେଇ ଟିକିଏ ~~~ କହିଲା କିରୀଟୀ । ଯଦି ଧନ୍ୟବାଦଟା ଈଶ୍ୱରଙ୍କର ପାଇବାରହୁଏ ତା ହେଲେ ତା କେବଳ ତାପସୀକୁ ସୁସ୍ଥ ରଖିବା କାରଣରୁ ।

ତାପସୀ ହସି ହସି କହିଲା - ତେବେ କ'ଣ ଆଶା କରିଥିଲେ ମୁଣ୍ଡ ଯନ୍ତ୍ରଣାରେ ଛଟପଟ ହେଉଥା'ନ୍ତି ଘରେ ଡାକ୍ତର, ମଣିଷ ଭର୍ତ୍ତି ହୋଇଯାଇଥାନ୍ତେ । ମୋ... ଯିବା' ଅବସ୍ଥା ହୋଇଥାନ୍ତା ।

– ଆଃ କ'ଣ ଯେ କହନ୍ତି ! ସମୟ ସମୟରେ ଆପଣଙ୍କୁ ଭାରି 'ଗାଳି ଦେବାକୁ ଇଚ୍ଛାହୁଏ ସତେ ।

ତାପସୀ ହସିଦେଇ କହିଲା – ଗାଳି ଦିଅନ୍ତୁ ।

– ଗାଳିଦେବି ? ନା ଏରକମ୍ ' ଆପଣ-ଆଜ୍ଞା' କହି ଗାଳିଦେଲେ ଭଲ ହେବ ନାହିଁ ।

— ତା ନହେଲେ 'ତୁ-ତାକର' କହନ୍ତୁ ।

— ହଠାତ୍ ଏକବାର ଡବଲ ପ୍ରମୋସନ ? ଏତେଟା କ'ଣ ପାରି ଉଠିବ । ମଝା ମଝି ଗୋଟେ ରଫାକଲେ ଆପତ୍ତି କ'ଣ ?

ଆପତ୍ତି ? ଆପତ୍ତି ଆଉ କେଉଁଠି ? ଦୂରତ୍ୱର ସକଳ ବ୍ୟବଧାନ ଘୁଞ୍ଚାଇ ହୃଦୟ ଯେ ମିଶିଯିବାକୁ ଚାହେଁ ସେହି ଉନ୍ମୁଖ ହୃଦୟର ଦରଜାରେ 'ତୁମେ' ସମ୍ବୋଧନର ଆବେଷ୍ଟନି ମଧରେ ନିଜକୁ ରକ୍ଷା କରିପାରିବ ତାପସୀ ? ନିଆଁ ନେଇ ଏ ଯେଉଁ ଭୟାବହ ଖେଳ ସେଥିରେ ଯଦି ହାର ମାନିବାକୁ ହୁଏ ? କିରୀଟୀକୁ ଦେଖିଲେ ନିଜକୁ ବାନ୍ଧିରଖିବା ଯେ କେତେ କଠିନ ସେ କଥା ତ ନିଜ ପାଖରେ ଅଜଣା ନାହିଁ ଆଜି । ଗତ ରାତିରେ କେତେ ପ୍ରତିଜ୍ଞା କେତେ ସଂକଳ୍ପ କେଉଁଠି ଭାସିଗଲା, ଖୁସିରେ ଝଲମଲ ଏଇ ମୁହଁଟି ଦେଖିବା ମାତ୍ରେ । ତେବେ ? କଠିନ ବ୍ୟବହାର ନିଷ୍ଠୁର ଦ୍ୱାରା ଆଘାତ ଦୂରେଇ ରଖିବା ସମ୍ଭବ, କିନ୍ତୁ ସଂପ୍ରୀତିର ସରସତାରେ ନୁହେଁ ।

ହେ ଭଗବାନ ! ତାପସୀ କରିବ କ'ଣ ? ଅତୀତର ଦୁଃସ୍ୱପ୍ନ ଭୁଲି କାଳ୍ପନିକ ଅପରାଧର ବିଭୀଷିକା ଭୁଲି ଶରତର ଏଇ କୋମଳ ସୁନେଲି ଆଲୋକ ପରି କ'ଣ ନିଜକୁ ସମର୍ପଣ କରିଦେବ ? ନ୍ୟାୟ ଅନ୍ୟାୟର ବିଚାର ଯଦି କରିବାକୁ ହୁଏ ଏଇ ଆଗ୍ରହରେ ଉନ୍ମୁଖ ହୃଦୟଟିକୁ ଫେରାଇ ଦେବା କ'ଣ ନ୍ୟାୟ ? ଏଇ ହାସ୍ୟୋଜ୍ଜ୍ୱଳ ମୁଁହଟିକୁ ମ୍ଳାନ କରିଦେବା କ'ଣ ସୁବିଚାର ? ନିଜ ହୃଦୟ ଯଦି ଦୁଃଖରେ ଭାଙ୍ଗିପଡ଼େ ତାକୁ ହୁଏତ ସହ୍ୟ କରାଯାଇ ପାରେ କିନ୍ତୁ କିରୀଟୀ ? କିରୀଟୀକୁ ଫେରାଇ ଦେବାର ଜୋର ଆଜି ଖୋଜି ପାଉନାହିଁ ତାପସୀ । ଦୂର ଅତୀତର ଗୋଟିଏ ବିସ୍ମୃତ ମୁହଁକୁ ସ୍ମରଣ କରିବାର ବ୍ୟର୍ଥ ଚେଷ୍ଟାରେ ନୁହେଁ, ଏ ନୀତି ଧର୍ମର ଖୁଣ୍ଟିକୁ ଟାଣିଧରିବାର ପ୍ରାଣାନ୍ତକ ଚେଷ୍ଟା କେବଳ ।

ସକାଳର ଖୋଲା ଆଲୁଅରେ ମୁହଁର ଭାବକୁ ପାଠ କରିବା କଷ୍ଟକର ନୁହେଁ । 'ତୁମେ' କହିବାର ଢ଼ଙ୍ଗରେ ତାପସୀର ମୁହଁର ଆଲୁଅ ଛାଇର ଖେଳ କିରୀଟୀ ଆଖିରେ ସହଜରେ ଧରା ପଡ଼ିଯାଇଛି ।

ତେବେ କ'ଣ ଭାବି 'ତୁମେ' ବୋଲି ସେ କହିଲା । ମ୍ଳାନ ଗମ୍ଭୀର ମୁହଁରେ କହିଲା- ଆପତ୍ତି ଅଛି ବୁଝିଲି । ତଥାପି ମାନିଲି ନାହିଁ ତୁମର ଆପତ୍ତି । ଆଜି ତୁମକୁ ଗୋଟାଏ କଥା ଜଣାଇବାକୁ ଅଛି ତାପସୀ, ଆଜି ଶୁଣିବାକୁ ସମୟ ହେବ ତ ? କଥାଟା କ'ଣ ସେ କଥା କ'ଣ ବୁଝିବାକୁ ବାକି ଅଛି ତାପସୀର ? ଚିତ୍ରଲେଖାର ବହୁ ଉତ୍କଣ୍ଠାର ସେହି କଥା ?- କିନ୍ତୁ ତାପସୀର ? ସେ କଥା ଶୁଣିବାକୁ ତାପସୀର ସମୟ କାହିଁ ? ଆଜି ନୁହେଁ, କାଲି ନୁହେଁ, କେଉଁଦିନ ବି ନୁହେଁ ।

ମନକୁ ସେ ସ୍ଥିର କରିସାରିଛି ।

ତେଣୁ ଅନ୍ୟଆଡ଼କୁ ମୁହଁ ବୁଲେଇ ଦେଇ କହିଲା ନା ।

— କିନ୍ତୁ ସେ କଥା ଯେ ମତେ କହିବାକୁ ହେବ, ନ କହିଲେ ଉପାୟ ନାହିଁ ।

— କି ଆଶ୍ଚର୍ଯ୍ୟ ! ଆପଣଙ୍କର ଦରକାର ଅଛି ବୋଲି ସମସ୍ତଙ୍କୁ ଦରକାର ହେବ ତାର କିଛି ମାନେ ଅଛି ! ଆପଣଙ୍କ କଥା ହୁଏ ତ ମୋ ପାଖରେ ଅଦରକାରୀ ।

ସେମିତି ମୁହଁ ବୁଲେଇ କହିଲା ତାପସୀ ।

କିରୀଟୀ କ'ଣ ପ୍ରତିଜ୍ଞା କରିଛି କୌଣସି ଅପମାନରେ ଟଳିବ ନାହିଁ ? ତା ନହେଲେ ଏତେ ଅବହେଳା ପରେ ମଧ୍ୟ ଏତେ ବ୍ୟଗ୍ରଭାବରେ କଥା କହୁଛି ।

— ତୁମେ ବୁଝିପାରିବ ନାହିଁ ତାପସୀ, ଶୁଣିବାର ପ୍ରୟୋଜନ ହୁଏତ ତୁମର ଅଛି । ଏକଥାଟା ଆଗରୁ କହିବା ମୋର ଉଚିତ ଥିଲା । ସବୁକଥାକୁ ବନେଇ ଚୁନେଇ କହିପାରିବାର କ୍ଷମତାର ଅଭାବରୁ କହି ପାରିନି । ସାହସ ହୋଇନାହିଁ । କିନ୍ତୁ ଏପରି ଭାବରେ ପାରୁନାହିଁ ମୁଁ ।

— ଆଉ ତାପସୀ ଯେମିତି ପାରୁଛି ! ପ୍ରତି ମୁହୂର୍ତ୍ତରେ ନିଜସାଙ୍ଗରେ ଯୁଦ୍ଧ କରି କରି କେତେ କ୍ଲାନ୍ତ ହୋଇ ପଡ଼ିଛି ବିଚରା, କିଏ ତାର ହିସାବ ରଖିଛି ? କିଏ ବା ସନ୍ଧାନ କରିଛି ସେହି କ୍ଷତ ବିକ୍ଷତ ରକ୍ତାକ୍ତ ହୃଦୟର !

କିରୀଟୀକୁ ଦେଖିବା ଆଗରୁ କି ଶାନ୍ତି ଥିଲା ଜୀବନରେ ! ସୁଖ ନଥାଉ-ଗୋଟାଏ ଛାୟାଚ୍ଛନ୍ନ ଶାନ୍ତି ନିଶ୍ଚିନ୍ତ ବିଷାଦ । ଅକାଳ ବୈଧବ୍ୟପରି ଭବିଷ୍ୟତ ସଂପର୍କରେ ଏକ ସକରୁଣ ନିର୍ଲିପ୍ତତା !

କିରୀଟୀକୁ ଦେଖିବା ମାତ୍ରେ ମନର ସେହି ସ୍ଥିର ପ୍ରଶାନ୍ତି ଏମିତି ବିପର୍ଯ୍ୟସ୍ତ ହୋଇଗଲା କାହିଁକି ? ଏଇ ଚବିଶବର୍ଷ ବୟସ ମଧ୍ୟରେ ସେ କ'ଣ କୌଣସି ପୁରୁଷକୁ ଦେଖିନାହିଁ ଆଖିରେ ? ଚିତ୍ରଲେଖାର ତ ଇଏ ନୂଆ ପ୍ରଚେଷ୍ଟା ନୁହେଁ । ଝିଅ ପାଇଁ ପାତ୍ର ଆମଦାନୀ ସେ ଅନେକ ଦିନରୁ କରୁଛି ତା ଛଡ଼ା ବାହାର ଜଗତରେ ବୁଲିଲେ କେତେ ମଣିଷର ସଂସ୍ପର୍ଶରେ ଆସିବାକୁ ହୁଏ । ତେବେ—

ବ୍ୟର୍ଥ ଯୌବନର କେତେ ବସନ୍ତ ଅନାୟସରେ ପାର ହୋଇଗଲା ।

ଆଉ କିରୀଟୀର କଣ୍ଠସ୍ୱର ଶୁଣିଲେ କାହିଁକି କେଜାଣି ଶରୀରର ସମସ୍ତ ରକ୍ତ ମୁଣ୍ଡ ଉପରକୁ ଆସି ଜମା ହୋଇଯାଏ ?

ବନ୍ଧୁ ବେଶରେ ଏ ପରମ ଶତ୍ରୁ ।

କିରୀଟୀର ନ ପାରିବାର କ'ଣ ଅଛି ? ନିଜ ସାଙ୍ଗରେ ଏମିତି ଯୁଦ୍ଧ କରିବାକୁ ହୁଏ ତାକୁ । ବେଶୀହେଲେ ଆଶା-ନିରାଶାର ଦ୍ୱନ୍ଦ୍ୱ ତା ଠୁ ବେଶି ନୁହେଁ । ନିଜ ହାତରେ ନିଜ ହୃତପିଣ୍ଡକୁ ଛିଡ଼େଇ ଫୋପାଡ଼ି ଦେବାର ଯନ୍ତ୍ରଣା, ସେ ଯନ୍ତ୍ରଣା କ'ଣ କିରୀଟୀର ଅଛି ?

ହଠାତ୍ କେମିତି ରୁକ୍ଷ ଶୁଣାଯାଏ ତାପସୀର କଣ୍ଠସ୍ୱର ।

— ମୁଁ ପାରୁନାହିଁ ଆଉ । ଦୟାକରି ମତେ ସେଥିରୁ ମୁକ୍ତି ଦିଅନ୍ତୁ ।

— ଦୟା ! ମୁକ୍ତି ! ମୁଁ ତୁମ କଥା ଠିକ୍‌ଭାବେ ବୁଝି ପାରୁନାହିଁ ତାପସୀ ।

— କଷ୍ଟକରି ବୁଝିବା ଦରକାର ହେବ ନାହିଁ । ଏତିକି କେବଳ ଜାଣିରଖନ୍ତୁ ଆପଣଙ୍କର ପ୍ରତିଜ୍ଞା ମୋ ପକ୍ଷେ ଅସହ୍ୟ !

କିରୀଟୀ ଆହତ ହେଲା । ତାର ଗୋରା ମୁହଁଟା କଳାକାଠ ପଡ଼ିଗଲା ।

— ଜାଣିଲି ! ଏ ବିଷୟଟା ସତରେ କୌଣସି ଦିନ ଭାବି ଦେଖିନାହିଁ । ନିଛକ ଭଦ୍ରତା ରକ୍ଷାକରିବା ପାଇଁ କେତେ ଦୁଃଖ ସହିବାକୁ ପଡୁଛି ତମକୁ । ତାରି ସୁଯୋଗ ନେଇ ଏତେଦିନ ହେଲା ଅନର୍ଥକ ବିରକ୍ତ କରି ଆସିଛି ତୁମକୁ । ନିର୍ବୋଧଲୋକତ ସଂସାରରେ ନିଶ୍ଚୟ ରହିବେ । ଈଶ୍ୱରଙ୍କୁ ଧନ୍ୟବାଦ ଯେ ଯାହା କହିବାର ଥିଲା ସେ କଥା ତୁମକୁ ମୁଁ କହିନାହିଁ । ମତେ କେବଳ ନିର୍ବୋଧ ନ କହି ପାଗଳ ବି କହିପାର ! —ଆଚ୍ଛା ଗଲି ।

ସତରେ ଚାଲିଗଲା ।

ତାପସୀର ମୁହଁର କଥାଟା ସତ ବୋଲି ଜାଣିଗଲା ତେବେ ? ତେବେ ଏ କ'ଣ କେବଳ କଥା ? ତୀକ୍ଷ୍ଣ ଶର ନୁହେଁ କି ? ତୀକ୍ଷ୍ଣ ଆଉ ବିଷାକ୍ତ ।

ଖାଇବା ଟେବୁଲ ଉପରେ ଗତ ସନ୍ଧ୍ୟାରେ କଥାଟା ପ୍ରକାଶ କଲା ସିଦ୍ଧାର୍ଥ । ଦିଦିର 'ଢ଼ଙ୍ଗ' ପାଇଁ ଦୁଇଭାଇ ନାନାଆଡୁ ନାନାକଥା ଆଲୋଚନା କଲେ । ଅମିତାଭ ଘଟଣାଟା ଶୁଣିବା ମାତ୍ରେ ରାଗରେ ଜଳି ଉଠି କହିଲା– ଚାଲିଆସିବାଟା ଏମିତି କିଛି ବାହାଦୂରୀ ହୋଇନାହିଁ । ବରଂ ଉଚିତ ଥିଲା ନ ଯିବାଟା । ପୁଣି ସକାଳ ବେଳା କାହିଁକି ଆସିଥିଲା ସେଟା । ମାନ ଅପମାନ ତାର କିଛି ବୋଲି ଟିକିଏ ନାହିଁ ।

ସିଦ୍ଧାର୍ଥ ଅବାକ୍ ହୋଇଯାଇ କହିଲା ଏକ'ଣ ଭାଇ, ଭଦ୍ରଲୋକଙ୍କ ସଂପର୍କରେ ଏ ପରି ଅଶାଳୀନ ମତାମତ କାହିଁକି ?

— ଆରେ ଯା, ଯା ରଖିଦେ ତୋ ଭଦ୍ରଲୋକ ! ଭଦ୍ରଲୋକ ହେବାକୁ ହେଲେ ନିଜ ଭିତରେ ଆତ୍ମସମ୍ମାନ ଜ୍ଞାନ ଥିବା ଦରକାର ।

ସିଦ୍ଧାର୍ଥ ବରବାର କିରୀଟୀ ପାଇଁ ଟିକିଏ ଦରଦୀ ସେଥିପାଇଁ ଯୁକ୍ତିକରିବା ସ୍ୱରରେ କହିଲା - ହଠାତ୍ ତାର କ'ଣ ଏମିତି ପ୍ରମାଣ ପାଇଲୁ ?

—ଆଖି ଥିଲେ ଦେଖିହେବ । ମାଆର ନିହାତି ଆଦରର ଅତିଥି ବୋଲି ଚୁପ୍‌ଚାପ ରହେ, ନହେଲେ ଦିନେ ଆଚ୍ଛାକରି ଏମିତି କଥା ଶୁଣେଇ ଦିଅନ୍ତି ଭଦ୍ରଲୋକ ଆଉ ଏ ଘରର ଗେଟ୍ ଡିଅଁନ୍ତେ ନାହିଁ ।

କିରୀଟୀ ଉପରେ ଭାଇର ଏ ଯେଉଁ ତୀକ୍ତଭାବଟା ସେ ବିଷୟରେ କିଛି ସମ୍ୟକ ସୂଚନା ପାଇଥିଲା ସିଦ୍ଧାର୍ଥ କିନ୍ତୁ ପ୍ରକାଶ୍ୟରେ ଏପରି ଯୁଦ୍ଧ ଘୋଷଣା ଦେଖି ଅବାକ୍ ହୋଇଗଲା । ଅମିତାଭର ମନ୍ତବ୍ୟଟା ଦିଦିର ମୁହଁ ଉପରେ କେତେଟା ପ୍ରଭାବ ବିସ୍ତାରକଲା, ତାକୁ ଟିକିଏ ଆଡଆଖିରେ ଅନେଇ ଦେଇ କହିଲା— କ'ଣ ଘଟଣା କହତ ଭାଇ ? ମିଷ୍ଟର ମୁଖାର୍ଜୀ ତୋ ପାଖରୁ ଟଙ୍କା ଧାରନେଇ ପରିଶୋଧ କରିବାକୁ ଭୁଲିଯାଇ ନାହାନ୍ତି ତ ?

—ଯା ଯା ବାଜେପ୍ରକାର ଥଟ୍ଟା କରିବା ଦରକାର ନାହିଁ । ମୁଁ ଜାଣିବାକୁ ଚାହେଁ ଲୋକଟା ଯେତେବେଳେ ପାରେ ସେତେବେଳେ କାହିଁକି ଏ ଘରକୁ ଆସେ ? ତାର କ'ଣ ଦରକାର ?

ତାପସୀ ଏତେ ସମୟ ଧରି ନିରପେକ୍ଷଭାବେ ମାଛରୁ କଣ୍ଟା ବାଛୁଥିଲା, ଅମିତାଭର କଥା ଶେଷ ହେବାମାତ୍ରେ ସେ ରାଗିଯାଇ ଆରକ୍ତ ମୁହଁରେ କହିଲା— ଘରଟା ଏକଲା ତୋର ନୁହେଁ ।

ଚଷମା କଣରେ ଅବହେଳାଭାବେ ଦିଦି ଆଡ଼କୁ ଦୃଷ୍ଟି ନିକ୍ଷେପ କରି ଅମିତାଭ ଉତ୍ତର ଦେଲା—

—ଆଜ୍ଞା ସେକଥା ଜାଣିଛି, ଏବଂ ସେଇଥିପାଇଁ ବେଶି କିଛି କହୁନାହିଁ ।

—ଭଦ୍ରଲୋକ, ଭଦ୍ରଲୋକଙ୍କ ଘରକୁ ଆସିବେ ଏଥିରେ କହିବାର କ'ଣବା ଅଛି ମୁଁ ବୁଝିପାରୁ ନାହିଁ ।

ସାଲିସ କରିବା କଣ୍ଠରେ ନିଜର ମତାମତ ବ୍ୟକ୍ତକଲା । କିନ୍ତୁ ଅମିତାଭ ନିବୃତ୍ତ ହେଲା ନାହିଁ, ଆହୁରି ତୀକ୍ଷ୍ଣସ୍ୱରରେ କହିଲା ଭଦ୍ରଲୋକ ଯଦି କେବଳ ଭଦ୍ରଭାବେ ଲୋକଙ୍କ ଘରକୁ ବୁଲିବାକୁ ଆସନ୍ତି ସେଥିରେ କିଛି କହିବାର ନାହିଁ ; କିନ୍ତୁ ଗୋଟାଏ ମତଲବ ନେଇ ବୁଲାବୁଲି କରିବାର ଦେଖିଲେ ଘୃଣା ଲାଗିବ ହିଁ ଲାଗିବ । କେବଳ ତାକୁ ନୁହେଁ ଯେଉଁମାନେ ତାକୁ ପ୍ରଶ୍ରୟଦେବେ ସେମାନଙ୍କୁ ମଧ୍ୟ । ଅର୍ଥାତ୍ ମାଆକୁ, ଦିଦିକୁ ସେ ଆଜିକାଲି ଘୃଣା କରିବାକୁ ଆରମ୍ଭ କରିଛି ।

ତାପସୀ ଉତ୍ତେଜିତ ହେବା ଦେଖାଗଲାନାହିଁ । ମାଆ ସାଙ୍ଗରେ କଥାବାର୍ତ୍ତା କରୁଥାଏ । ଚିତ୍ରଲେଖା ରାଗରେ ଜଳି ଯାଉଥାଏ । ଅମିତାଭ କିନ୍ତୁ ରାଗରେ ଫଁ ଫଁ ହେଉଥାଏ ।

ଯୁକ୍ତି ଦୃଷ୍ଟିରୁ ସେ ନିଜ ମତର ବିରୁଦ୍ଧ କଥା ହିଁ କହିଲା । ତା ବି ନହୋଇପାରେ । ନିଜ ମନର ଅସଲ ଚେହେରା ନିଜେ ହୁଏତ ସେ ଜାଣିପାରିନାହିଁ । ଉତ୍ତେଜନା ଯୋଗୁ ମୁହଁରୁ ବାହାରି ପଡ଼ିଲା । କହିଲା– ସେଟା ଯଦି ହୋଇଥାଏ, ତେବେ ସେଟା କ'ଣ ନିହାତି ସୃଷ୍ଟିଛଡ଼ା କାମ ଅଭି ? ଯେତେବେଳେ ଏତେକଥା ତୁ ବୁଝିପାରିଛୁ - ତୁ ଅନ୍ତତଃ ବୁଝିବା ଉଚିତ - ମତଲବ ନେଇ ବୁଲାବୁଲି କରିବା କିଛି ଅସ୍ୱାଭାବିକ ନୁହେଁ ।

— ହୁଅନ୍ତା ନାହିଁ, ଯଦି ଘରର ସମସ୍ତଙ୍କ ଜୀବନଟା ସ୍ୱାଭାବିକ ହୋଇଥା'ନ୍ତା ଏତକ କହି ଦେଇ ଚେୟାର ଛାଡ଼ି ଉଠିପଡ଼ିଲା ଅମିତାଭ ।

ସନ୍ଦେହର ଅବକାଶ ଆଉ ରହିଲା ନାହିଁ । ବୁଝାଗଲା ଚିତ୍ରଲେଖାର ଶିକ୍ଷା ସବୁକ୍ଷେତ୍ରରେ ବ୍ୟର୍ଥ ହୋଇଛି । ଅତି ଆଧୁନିକ ଶିକ୍ଷାରେ ଶିକ୍ଷିତ ଅମିତାଭର ଚିତବୃତ୍ତିର ଚେର ପିତାମହୀ ଅମଳର ସେହି କୁସଂସ୍କାରଛନ୍ନ ଅନ୍ଧକାର ବନଭୂମିରେ ପ୍ରବେଶ କରିଛି ।

ତାପସୀର ସେହି ଖେଳ ଘରର ବିବାହଟାକୁ 'ଖେଳ' ବୋଲି ଉଡ଼େଇ ଦେବାର ସାହସ ବା ଇଚ୍ଛା ତାହାର ମଧ୍ୟ ନାହିଁ । ସେହିଯୋଗୁ ତାପସୀର ପ୍ରଣୟ ଲାଭେଚ୍ଛୁ କିରୀଟୀକୁ ଦେଖିଲେ ତା ଦେହମୁଣ୍ଡ ଜଳିଯାଏ ।

ଯଦିଓ ତାପସୀ ଅମିତାଭ ଠାରୁ ବଡ଼ ତଥାପି ଅମିତାଭ 'ଦାଦାଗିରି' ଭାବଟା ଅନେକ ସମୟରେ ଦେଖାଏ । ସେଇଥିପାଇଁ ନିଜର ବିରକ୍ତୀଭାବଟା ପ୍ରକାଶ କରିବାକୁ ସେ ଦ୍ୱିଧା କରେନା ।

କିନ୍ତୁ ତାପସୀ ହଠାତ୍ ଏତେ ଜୋର ପାଇଲା କେଉଁଠୁ ?

ନିଜ ବିଷୟରେ ସାହସ କରି କହିବାର ଜୋର୍ ! ଅଥଚ ଯାହା କହିଲା, ଚିତ୍ରଲେଖା ଶୁଣି ଅବାକ୍ ହୋଇଗଲା ।

— ସ୍ୱାଭାବିକ ନୁହେଁ ବୋଲି ସ୍ୱାଭାବିକ କରିବା ପାଇଁ ଚେଷ୍ଟା କରି ଉସେଇ ଦେବାକୁ ହେବ । ଜୀବନ ଜିନିଷଟା କ'ଣ ଏତେ ସହଜ ଅଭି ?

— ହଁ ଭଲ କଥା ଜୀବନଟାକୁ ଦାମୀକରି ଗଢ଼ ।

ଅମିତାଭ କଥାରେ ପ୍ରଚ୍ଛନ୍ନ ବ୍ୟଙ୍ଗ - ବରଂ ମାଆ ମନରେ ଗୋଟାଏ ସାନ୍ତ୍ୱନା ହେବ ଯେ ଯାହାହେଉ ଜଣେ ମଣିଷ ହେଲା । ତେବେ ଏକଥା ମଧ ଜାଣିରଖ ଏଘରର ଭାତ ମୋ ଦହେରେ ବେଶିଦିନ ଚଳିବ ନାହିଁ ।

— କି ବାଜେ କଥା କହୁଛୁ ଭାଇ ?

ସିଦ୍ଧାର୍ଥ କଥାବାର୍ତ୍ତାର ସ୍ୱରକୁ ଲଘୁ କରି ଆଣିବାକୁ ଚେଷ୍ଟା କଲା ।

ଅମିତାଭ କିଛି କହିବା ପୂର୍ବରୁ ରଂଗମଂଚରେ ଆର୍ବିଭୂତା ହେଲେ ଚିତ୍ରଲେଖା । ମନେହେଲା ଯେପରି ସାଞ୍ଜୁଆଗାଡ଼ିରେ ଚଢ଼ି ଏକବାର ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । 'ଯୁଦ୍ଧଂଦେହି' ସ୍ୱରରେ କହିଲେ ଦେଖ୍ ବେବି ଅଭି ତୁମେ ଦୁହେଁଯାକ ରହିଛ ଆଜି ସନ୍ଧ୍ୟାରେ ମୁଁ ଗୋଟାଏ ପାର୍ଟିଦେବାକୁ ଚାହେଁ । ମିଷ୍ଟର ମୁର୍ଖାର୍ଜୀ ହେବେ ତାର ପ୍ରଧାନ ଅତିଥି । ବେବିର ଏନ୍‌ଗେଜ୍‌ମେଣ୍ଟଟା ଆଜି ପାଞ୍ଚଜଣଙ୍କ ସାମ୍ନାରେ ପକ୍କା କରିନେବି । ଏଭଳି ବେଶୀଦିନ ସମାଜର ସମସ୍ତଙ୍କର ଆଲୋଚନାର ବିଷୟ ହେବା ମୋର ରୁଚି ବିରୁଦ୍ଧ ।

ଚିତ୍ରଲେଖାର କପାଳ ଜୋର । ଏଇ ଅଳ୍ପ ସମୟ ହେଲା ଅମିତାଭ ସଙ୍ଗେ ଝଗଡ଼ାର ଜିତିବାପାଇଁ ଏ ରକମ କଥା କହିବସିଛି ତାପସୀ । ବର୍ତ୍ତମାନ ଅମିତାଭ ସାମ୍ନାରେ କୋଉ ମୁହଁରେ ମାଆ: କଥାର ପ୍ରତିବାଦ ସେ କରିବ ?

ଆଡ଼ଆଖିରେ ଚିତ୍ରଲେଖା ଝିଅକୁ ଚାହିଁଲେ - ନା କୌଣସି ପ୍ରତିବାଦ ଶୁଭିଲା ନାହିଁ । ହଁ ବାବା ଏଥର ଧରା ପଡ଼ିଛି ! ଯେତେହେଲେ ବି ଚିତ୍ରଲେଖାର ବୁଦ୍ଧି ପାଖରେ ତାଙ୍କର ବୁଦ୍ଧି କେତେ ?

ଅବଶ୍ୟ ବିଧାତା ପୁରୁଷ ଏଥର ଚିତ୍ରଲେଖାର ସହାୟ ହୋଇଛନ୍ତି ।

ଗତ ରାତିରେ ବେବିର ମୁଣ୍ଡବିନ୍ଧାର ପେଖନାପରେ ଭୋର ଭୋର କିରୀଟୀ ବ୍ୟସ୍ତହୋଇ ଛୁଟି ଆସିବା ଏବଂ ହାସ ପରିହାସର ପ୍ରେମାଳାପ ଦୃଶ୍ୟଟା- ଦୋତାଲାର ଝରକା ଉପରୁ ଚିତ୍ରଲେଖା ଦେଖିପାରିଲା । ସେଇଥି ପାଇଁ ଏତେ ସାହସ ।

ସେ ଯାହା ଭାବିଥିଲା ତା ଛଡ଼ା ଅଧିକ କିଛି ନୁହେଁ, ବୁଝିବାକୁ ତାର ବାକି ନାହିଁ । କାଲିର କିଛି ଗୋଟାଏ ଦୋଷ ଦୁର୍ବଳତା ପାଇଁ ଅପରାଧୀ ବ୍ୟକ୍ତିଟି ସକାଳ ନ ହେଉଣୁ ଦୌଡ଼ି ଆସିଥିଲା କ୍ଷମାଭିକ୍ଷା କରିବାକୁ ।

ଆସିବତ ନିଶ୍ଚୟ, ଝିଅମାନଙ୍କୁ ଚିହ୍ନିବା ତା ପକ୍ଷରେ ଅନେକ ଡେରିଅଛି । କେବଳ ତାହାର କାହିଁକି, ସମସ୍ତ ପୁରୁଷ ଜାତିଟାର । କିନ୍ତୁ ଚିତ୍ରଲେଖାତ ପୁରୁଷ ନୁହେଁ ଯେ ତାକୁ ଜାଣିବାକୁ ବାକି ରହିବ –

କିନ୍ତୁ ଏମିତି ମୂଲ୍ୟବାନ ତଥ୍ୟଟାକୁ ଭାବୀଙ୍କାଙ୍ଗଙ୍କୁ ଶିଖାଇବାର ବିଷୟ ନୁହେଁ ।

ଅମିତାଭ ମାଆ ଆଡ଼କୁ ଓ ଭଉଣୀ ଆଡ଼କୁ ଗୋଟିଏ ସେକେଣ୍ଡ ଚାହିଁ ଦେଇ କହିଲା– ପାର୍ଟିଦେବୁ ସେଟା ତୋର ବିଜିନେସ, ସେ ପାଇଁ ଆମର ଅନୁମତି ନେବା ଦରକାର ନାହିଁ ।

– ଅନୁମତି ଦରକାର ହେବ ବର୍ତ୍ତମାନ ଏତେଟା ଦୁର୍ଭାଗ୍ୟ ହୋଇନି ବୋଲି ବିଶ୍ୱାସ । ତେବେ କିଛିଟା ସାହାଯ୍ୟର ଦାବି ରଖୁଛି । ଯେଉଁମାନଙ୍କୁ କହିବା କଥା ସମସ୍ତଙ୍କୁ ବୁଲି ବୁଲି କହୁଛି । ବୁଲିଆସି ନିମନ୍ତ୍ରିତ ମାନଙ୍କର ଗୋଟାଏ ଲିଷ୍ଟ ତତେ ଦେବି, ତୁ କେତେଟା ଜିନିଷ ମତେ ଆଣି ଦେଇଦେବୁ । ଆଉ ନିଉମାର୍କେଟରୁ କିଛି ଫୁଲ ଆଣିବୁ ।

ଖାଇବା-ପିଇବାର ସମସ୍ତ ବ୍ୟବସ୍ଥା ମୁଁ ନିଜେ କରିବି, ତୁମମାନଙ୍କୁ କୌଣସି ଭାର ଦେବାକୁ ଚାହୁଁ ନାହିଁ ।

– ଗାଡ଼ି ନେଇ ନିଉମାର୍କେଟରୁ ଏଇ ସାମାନ୍ୟ କେଇଟା ଜିନିଷ, ଆଉ କିଛି ଫୁଲ ଅନାୟାସରେ ତୁମେ ଆଣିପାରିବ ମାଆ । ଏ ସବୁର ଦାୟିତ୍ୱ ମୋ ଉପରେ ଦେଲେ ମୋ ଖେଳ ମାରା ହେବ । ତା ଛଡ଼ା ମୁଁ ଆଜି ଘରେ ରହୁନାହିଁ - ଏତକ କହି ଅମିତାଭ ଘରଛାଡ଼ି ବାହାରକୁ ଚାଲିଗଲା ।

ଚମତ୍କାର ଭାଗ୍ୟ ମୋର ! ଚିତ୍ରଲେଖା କ୍ଷୋଭ ପ୍ରକାଶ କରି ଅମିତାଭର ପରିତ୍ୟକ୍ତ ଚେୟାରଟା ଟାଣି ବସିପଡ଼ିଲା କହିଲା– ସୌତୁଣୀର ପୁଅଝିଅଙ୍କୁ ପ୍ରତିପାଳନ କରିଥିଲେ ବୋଧହୁଏ ଏହାଠାରୁ ଭଲ ବ୍ୟବହାର ପାଇଥା'ନ୍ତି ସେମାନଙ୍କ ଠାରୁ ।

ପୁଅ ଝିଅମାନଙ୍କ ଠାରୁ ସହଯୋଗ ନ ପାଇଲେ ମଧ୍ୟ ଚିତ୍ରଲେଖା ଅନୁଷ୍ଠାନର କୌଣସି ତ୍ରୁଟି ରଖିଲା ନାହିଁ । ଏତେ ଅଳ୍ପ ସମୟ ମଧ୍ୟରେ ଏତେ ସୁନ୍ଦରଭାବେ କାମ କରିବା ଯେ କେବଳ ଚିତ୍ରଲେଖା ପକ୍ଷେ ସମ୍ଭବ ସେ କଥା ତାର ପରମଶତ୍ରୁମାନେ ମଧ୍ୟ ଅସ୍ୱୀକାର କରିବେ ନାହିଁ ।

ସମ୍ଭବହେଲା କ'ଣ ଖାଲି ଏମିତି ?

ସମସ୍ତ ଜୀବନଟା ଚିତ୍ରଲେଖା ଉତ୍ସର୍ଗ କରିଛି କାହା ପାଦତଳେ ? ଏଇ ସଭ୍ୟତା-ଶିଷ୍ଟାଚାର ପାଦ ତଳେ ନୁହେଁକି ?

ପ୍ରତିମୁହୂର୍ତ୍ତରେ ପାରପାର୍ଶ୍ୱିକ ସମସ୍ତ ପ୍ରତିକୂଳ ତାର ସହିତ ସଂଗ୍ରାମ କରି କରି କ୍ଷତ, ବିକ୍ଷତ ହୋଇଛି, ସ୍ୱାମୀ-ପୁତ୍ର ସମସ୍ତଙ୍କ ସହିତ ବିରୋଧ କରି ଆସିଛି । ନିଜେ ମୁହୂର୍ତ୍ତଟିଏ ଶାନ୍ତିରେ କଟେଇ ନାହିଁ, ତଥାପି ନିଜ ଚେଷ୍ଟାରେ ସେ କେବେ ବିରତ ହୋଇନାହିଁ । ସେଇଥିପାଇଁ ସେ ଆଜି ସମାଜରେ ଦଶଜଣରେ ଜଣେ ହୋଇ ବିଚରଣ କରୁଛି ।

ତଥାପି ପିଲାମାନଙ୍କୁ ମଣିଷ କରି ଗଢ଼ିବାପାଇଁ କେତେ ପରିକଳ୍ପନା ଥିଲା, କିଛି ବି ସଫଳ ହୋଇନାହିଁ । ଉପଯୁକ୍ତ ଅର୍ଥର ଅଭାବରେ ଅନେକ ଉଚ୍ଚଆଦର୍ଶକୁ ଖର୍ବ କରିବାକୁ ପଡ଼ିଛି ।

ହାୟ ! ପୁଅଝିଅମାନେ ଚିତ୍ରଲେଖାର ସେ ଆତ୍ମତ୍ୟାଗର ଧର୍ମ କୌଣସି ଦିନ ବୁଝିପାରିଲେ ନାହିଁ । କାହାପାଇଁ ଚିତ୍ରଲେଖାର ଏଇ ସଂଗ୍ରାମ, ଏଇ ସାଧନା ? କି ନିରୂପାୟ ଅବସ୍ଥାରେ ମଝିବାଟରେ ସ୍ୱାମୀ ଭସାଇ ଦେଇ ଚାଲିଗଲେ, ଦିନକପାଇଁ କ'ଣ ସେ ନିଆଁର ଧାସ ତାଙ୍କ ଦେହରେ ବଜେଇ ଦେଇଛି ଚିତ୍ରଲେଖା !

ଜଣେ ଅସହାୟା ନାରୀ ସମସ୍ତ ଦାୟିତ୍ୱ ବହନ କରି ବୋଝକୁ ଠେଲି ଠେଲି, ମଝିଦରିଆରୁ ଆଣି ତୀରର ନିକଟବର୍ତ୍ତୀ ହୋଇପାରିଛି ଆଜି ।

କିନ୍ତୁ ଚିତ୍ରଲେଖାର ଭାଗ୍ୟ ମନ୍ଦ । ''ଯାହା ପାଇଁ ଚୋରିକରେ ସେହି କହେ ଚୋର'' । ପୁଅଝିଅମାନେ ଏମିତି ଭାବ ଦେଖାନ୍ତି ଯେପରି ଚିତ୍ରଲେଖା ଆଜୀବନ ସେମାନଙ୍କର ଅନିଷ୍ଟ କରି ଆସିଛନ୍ତି । ଯେମିତି ସେହି ବୁଢ଼ୀ ଜେଜେମା' ପାଖରୁ ଗୋବର-ଗଙ୍ଗା ପାଣି ଦୀକ୍ଷାରେ ଦୀକ୍ଷିତ ହୋଇ ଜୀବନ କଟେଇ ଥିଲେ ତାଙ୍କ ପାଇଁ ଭଲ ହୋଇଥା'ନ୍ତା ।

କି ନିଷ୍ଫଳ-ଜୀବନ ଚିତ୍ରଲେଖାର !

ତଥାପି ସେମାନଙ୍କର ହିତ ଚେଷ୍ଟାରୁ ସେ କେବେ ବିରତ ହୋଇପାରେନା । ବେବି ପାଖରୁ ଶତଲାଂଛନା-ଗଂଜଣା ଖାଇ ମଧ ବେବି ପାଇଁ ଅସାଧ ସାଧନ କରିବାକୁ ଲାଗିପଡ଼ିଛି ।

ତାକୁ ଜୀବନରେ ସୁପ୍ରତିଷ୍ଠିତ ହେବାର ନ ଦେଖିଲା ପର୍ଯ୍ୟନ୍ତ ମରିବାରେ ମଧ ଶାନ୍ତି ହେବନାହିଁ ଚିତ୍ରଲେଖାର ।

ଆଜିର ଏ ଯେଉଁ ଉତ୍ସବ ପାଇଁ ଆୟୋଜନ ଏହାପାଇଁ କେତେ କାଠକୁଟା ପୋଡ଼ିବାକୁ ହୋଇଛି, ଏବେ ହେବାର ସମ୍ଭାବନା ଦେଖାଦେଇଛି କିଏ ତାର ହିସାବ ରଖେ ? ଏଥିପାଇଁ କେତେଦିନ କେତେରାତି କୃଚ୍ଛ୍ରସାଧନା କରିବାକୁ ହେବ । ଇଚ୍ଛାଅନୁସାରେ ଟଙ୍କାଖର୍ଚ୍ଚ କରିବାର ସାମର୍ଥ୍ୟ ଯଦି ଥାଆନ୍ତା ତାର ଆଜି ! ମନୀନ୍ଦ୍ର ପାଇଁ ମନଟା ଆଜି ପୋଡ଼ି ଜଳିଯାଏ । ହିଂସାବି ହୁଏ । ଯେପରି ସବୁ କିଛି ଜ୍ୱାଳା-ଯନ୍ତ୍ରଣା ଚିତ୍ରଲେଖା ଉପରେ ଲଦିଦେଇ ଚାଲିଯାଇଛନ୍ତି ମନୀନ୍ଦ୍ର । ଆଜିର ଘଟଣାରେ ଚିତ୍ରଲେଖାର ପରିଶ୍ରମ ଅପେକ୍ଷା ଉଦ୍‌ବେଗ ଥିଲା ପ୍ରବଳ, କାହିଁକିନା ଝିଅ ଶେଷ ପର୍ଯ୍ୟନ୍ତ ଏଇ ମନୋଭାବ  ପୋଷଣ କରି ରହିବ କି ନାହିଁ ? ନିଜର ପିଲାଙ୍କୁ ସେ ନିଜେ ଚିହ୍ନିପାରି ନାହାନ୍ତି ଏହାଠାରୁ ବଳି ଦୁର୍ଦ୍ଧାନ୍ତ ପରିହାସ ଜଗତରେ କ'ଣ ଆଉ ଅଛି ।

ନିମନ୍ତ୍ରିତ ମାନଙ୍କର ସଂଖ୍ୟା ବେଶି କିଛି ନୁହେଁ । ନିହାତି ବନ୍ଧୁବାନ୍ଧବ କେତେଜଣ ଯେଉଁମାନଙ୍କୁ ସବୁ କିଛି ନ ଦେଖାଇଲେ ତୃପ୍ତି ନାହିଁ । ଆଉ ଚିତ୍ରଲେଖାର ସାନ ଖୁଡ଼ୀଙ୍କ ପରିବାର । ଯାହେଉ ଭାଗ୍ୟର କଥା ଏତିକିବେଳେ ସେମାନେ କଲିକତାରେ ଅଛନ୍ତି । ଦେଖିବାର ଏବଂ ଦେଖାଇବାର ଏମିତି ସୁଯୋଗ କେତେବାର ଆସେ ?

କିରୀଟୀ ପରି ଜ୍ୱାଇଁ ଯୋଗାଡ଼ କରିବା ସାନଖୁଡ଼ୀଙ୍କ ସ୍ୱପ୍ନର ବାହାରେ । ଏକଥା କ'ଣ କହି ବୋଲି ବୁଝାଇବାକୁ ପଡ଼ିବ ? ତା ଝିଅର ତ ଯେଉଁ ରୂପ 'କଳାହାଣ୍ଡୀ' କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ତା ଉପରେ ପୁଣି ଦି'ଥର ଆଇ.ଏ. ଫେଲ୍ କରି ନାଆଁ କଟା ସିପାହୀ ହୋଇ ବସିଛି । ନିଜ କନ୍ୟାର ସୌନ୍ଦର୍ଯ୍ୟ ପାଇଁ ଛାତିଟା ଦଶହାତ ଫୁଲି ଉଠିଲା ।

ତା ଛଡ଼ା- ବିଦ୍ୟା !

ଚଟ୍  ଚାଟ୍ କରି ଏମ.ଏ ପର୍ଯ୍ୟନ୍ତ ପାଶ୍‌କରିଯାଇଛି । କେଉଁଠି ଟିକିଏ ଝୁଣ୍ଟିପଡ଼ିନାହିଁକି ଧକ୍କା ଖାଇନାହିଁ- କେବଳ ମାତ୍ର ଗୋଟାଏ ଜିନିଷର ଅଭାବ । ସେହି ଅଭାବଟା ଚିତ୍ରଲେଖା ମନରେ ଗୋଟାଏ ଗହ୍ୱର କରିଦେଇଛି ।

ମଡ଼ର୍ଣ୍ଣ କଲଚର୍‌ର ଅଭାବ ।

ଝିଅର ଯେ ବେଶଭୁଷା ପରିପାଟି ନାହିଁ ତା ନୁହେଁ, ତଥାପି କେମିତି ସାମଞ୍ଜସ୍ୟ ହୀନ, ଅସଂପୂର୍ଣ୍ଣ । ହୁଏତ ଦଶଦିନ ଖୁବ୍ ଚକମକ୍ ହୋଇ ବୁଲିଲା ଆଉ ଦଶଦିନ ଯେମିତି ସେମିତି କରି ଘୂରି ବୁଲିଲା । ସେମିତି ବାହାରିବାରେ କିଛି ଆପତ୍ତି ନାହିଁ । କିନ୍ତୁ ଏଇଟା ଶୁଧୁରା ହୋଇପାରିଲା ନାହିଁ । ତାହାଛଡ଼ା ନାଚ-ଗୀତ ଶିଖିବାକୁ ସେ

ଆଉ ମନ ବଳାଉ ନାହିଁ କୃତ୍ରିମ ସାଧାରଣ ଗଳାରେ ସେ କଥା କହେ । କଥାବାର୍ତ୍ତା କରିବାରେ କୌଣସି କାଇଦା କଟକଣା ନାହିଁ ।

ଅଥଚ ସାନଖୁଡ଼ୀଙ୍କ ଝିଅ ଲିଲି ଝୋଟ ଗାଣ୍ଠି ପରି । ଦେହଟାକୁ କିମିତି ନଚେଇ ନଚେଇ ନାଚ ନାଚି ବୁଲୁଛି । କଥା-ବାର୍ତ୍ତାରେ, ଚାଲି-ଚଳଣରେ କାଇଦା ତାକୁ ମାଲୁମ ।

ପାଞ୍ଚଟା ବାଜିଲାବେଳକୁ ଲିଲି ଆସି ହାଜର ହେଲା । ମା ଆସିପାରିବ ନାହିଁ ସେଇଥିପାଇଁ ଏକା ଆସିଛି ସେ । ଚିତ୍ରଲେଖାର ରୋଷକ୍ଷୁବ୍ଧ ପ୍ରଶ୍ନର ଉତ୍ତରଦେବାକୁ ଯାଇ ସରୁ ସରୁ ଗଳାରେ କହିଲା - କ'ଣ କରିବି କହ ବଡ଼ ଅପା ମା'ର ଭିଷଣ ମୁଣ୍ଡ ବିନ୍ଧୁଛି, ମୋର ଆସିବା ମଧ୍ୟ ସମ୍ଭବ ହେଉ ନଥିଲା, ନିହାତି ଆପଣ ଦୁଃଖିତ ହେବେ ବୋଲି-

— ଅସୀମ ଦୟା ତୋର ଏବଂ ତୋ ମାଆର- ସାନକକା କୁଆଡ଼େ ଗଲେ ?

— ବାପାଙ୍କରତ କେତେଦିନ ହେଲା ପ୍ରେସର ବଢ଼ିଛି ।

— ଆଉ ଟମ୍, ଜିମ୍ ?

— ସେମାନଙ୍କର ଆଜି ମ୍ୟାଚ ଅଛି ।

— ଶୁଣି ଖୁସି ହେଲି । ଏମିତି ମଣିକାଞ୍ଚନର ଯୋଗ ହେବାଟା ଟିକିଏ ଆଶ୍ଚର୍ଯ୍ୟ ଯା !

ମୁହଁ ଫଣ ଫଣ କରି ଅନ୍ୟ ଅଭ୍ୟାଗତ ମାନଙ୍କୁ ଅଭ୍ୟର୍ଥନା ଜଣେଇବାକୁ ବାହାରିଗଲା ଚିତ୍ରଲେଖା । ଯାହା କରିବ ସବୁତ ଏକା ଏକା କରିବାକୁ ପଡ଼ିବ । ଆଜି ବେବି ବାହାଘରର କନ୍ୟା ସାଜିଛି । ତାକୁ ଏସବୁ କାମର ଭାରଦେବା ଚଳିବ ନାହିଁ । ଆଉ କିଛି ନୁହେଁ ଏଟା ସାନଖୁଡ଼ୀଙ୍କର ଈର୍ଷା ଫଳ । ଦେଖିଲେ ଛାତି ଫାଟି ଯିବତ !

ଲିଲି ଦୌଡ଼ିଆସି କହିଲା— ହେ ବେବି ତୋ ବର କେତେବେଳେ ଆସିବ ସେଇ କଥା କହ, ସତକହିବାକୁ ଗଲେ ଏଇଥିପାଇଁ କେବଳ ମୁଁ ଆସିଲି । ତାପସୀ ହସି ହସି କହିଲା- ସେ କ'ଣ ? ବରଂ କହ କ୍ବାଇଁ ବାବୁ ! ତୁମେ ମୋର ମାଉସୀ ହେବନା ?

— ଛାଡ଼ ସେ କଥା - ସତ କହିଲୁ ଦେଖି ?

— କିମିତି ଜାଣିବି, ଆସିଲେ ଦେଖିପାରିବୁ ।

— ଇସ୍ ସେ ଜାଣେ ନାହଁ ପୁଣି ! କହିବୁନାହିଁ ସେ କଥା କହ ଏଇ ଶାଢ଼ୀ । ଖଣ୍ଡ କେତେ ଦେଇ କିଣିଲୁ ? ଫାଇନ ଶାଢ଼ୀ ଖଣ୍ଡେ !

ତାପସୀ ହସି ହସି କହିଲା, ମୁଁ କେଉଁଠି କିଣିଲି ମାଆ କିଣିଛି । ମାଆର ପସନ୍ଦ ।

— ମାଆ ! ମାଇଁ ଗଡ୍ । ବର୍ତ୍ତମାନ ବି ତୋର ଶାଢ଼ୀ ବ୍ଲାଉଜ୍ ବଡ଼ଅପା ପସନ୍ଦ କରି ଦେଉଛନ୍ତି । ଅଛି କେଉଁଠି ? ବରଟିକୁ ପସନ୍ଦ କରିବାର ଭାର ନିଜ ଉପରେ ରଖିଛୁନା ସେଇ ମାଆ କରିବ ।

— ନିଶ୍ଚୟ ତ । ମୁଁ ଏ ସବୁ ନେଇ ମୁଣ୍ଡ ଖେଳାଏ ନାହିଁ ।

— ଇସ୍ ଇନୋସେଣ୍ଟଗାର୍ଲ ! ଯଦି ବଡ଼ଅପା ପାଖରୁ ଶୁଣିନଥା'ନ୍ତି—, ମୁହଁରେ ରୁମାଲ ଚାପି ଫିକ୍ ଫିକ୍ ହୋଇ ହସିବାକୁ ଲାଗିଲା ଲିଲି । ତାପସୀ ସହସା ଗମ୍ଭୀର ହୋଇ କହିଲା କ'ଣ ଶୁଣିଲୁ ?

— ଏଇ ସେ ବିଚରା ପ୍ରେମରେ ଉବୁ ଟୁବୁ ହେଉଛି ।

ଆଉ ତୁ—

ହଠାତ୍ ଯେମିତି ଆଶ୍ଚର୍ଯ୍ୟ ହୋଇ ଶିହରୀ ଉଠିଲା ତାପସୀ - ଏଇ ଏଇ ରୁମାଲରେ ଲାଗି ଯାଇନାହିଁ ତ ?

ହତ ଚକିତ ଲିଲି କହିଲା- କ'ଣ ଲାଗିଯିବ ? — ରଙ୍ଗ ! ତୋର କୋଟିଙ୍ଗଟା ବୋଧହୁଏ କଞ୍ଚା ରହିଛି ବର୍ତ୍ତମାନ ।

କଥାଟା ମିଛ ନୁହେଁ । ଲିଲିକୁ ଦେଖିଲେ ଗୋଟିଏ ସଦ୍ୟ ରଙ୍ଗକରା । କଂଚାମାଟିର କଣ୍ଢେଇ ବୋଲି ମନେ ହୁଏ । ଲିଲି ପରିହାସ ପ୍ରିୟ । ନିଜେ ପରିହାସ କରିବା ଗୋଟାଏ କଥା, ଅନ୍ୟର ପରିହାସକୁ ହଜମ କରିବା ଆଉଗୋଟେ କଥା । ସେଇଥିପାଇଁ ମୁହଁ ଫୁଲେଇ ଉତ୍ତର ଦେଲା କ'ଣ କରିବି କହ, ତୋ ପରି ଖାଣ୍ଟି ପକ୍କା ରଙ୍ଗ ନେଇ ଜନ୍ମ ହୋଇନି ଭାଇ ଆମମାନଙ୍କର କଂଚାରଙ୍ଗ ମାରିବା ଛଡ଼ା ଉପାୟ ଆଉ କ'ଣ ଅଛି ।

ତାପସୀ ତରତର ହୋଇ କହିଲା— ହଉ ତୁ ଟିକେ ଏଇଠି ଥା- କଞ୍ଚା ପକ୍କାର ତର୍କ ଆସିଲେ କରିବି, ତଳୁ ଟିକିଏ ବୁଲି ଆସେ । ମାଆ ଗୋଟାଏ କାମ ବରାଦ କରିଥିଲା ଏକବାର ଭୁଲିଯାଇଛି ।

ମାଉସୀର ହାତ ଏଡ଼ାଇବା ପାଇଁ ଏଇ ସହଜ କୌଶଳଟା ଆବିଷ୍କାର କରି ବଂଚିଗଲା ଯେମିତି ଏଇ ଧରଣର ପଚା ପୁରୁଣା ରସିକତା ସହ୍ୟ କରିବା ଯେ ତାପସୀ ପକ୍ଷେ କେତେ ବିରକ୍ତିକର ସେ କଥା କିଏ ବୁଝିବ ? ପରିହାସର ଉତ୍ତର ଦେବାକୁ ହେଲେ ହାସ୍ୟ- ପରିହାସ ନକଲେ ଅଭଦ୍ରତା ହୁଏ, ସେଇଥିପାଇଁ ସେଥିରେ ସେ ଯୋଗଦିଏ । ଯାହା ସେ କହିଛି ତା ପାଇଁ ତା ମନଟା ତିକ୍ତ ହୋଇ ଉଠିଛି ।

ଦୂର୍ ! ଏମାନଙ୍କର କବଳମୁକ୍ତ ହୋଇ କେଉଁଠିକୁ ଚାଲିଯିବା ସବୁଠୁ ଭଲ । ବଗିଚାର ସେହି ପ୍ରିୟ ପରିଚିତ ଜାଗାରେ ବରଂ କିଛି ସମୟ ବସିବା ଭଲ । ଏକଦା ମନୀନ୍ଦ୍ର ଯେଉଁ ସ୍ଥାନଟିରେ ଗୋଟିଏ ସିମେଣ୍ଟ ବେଦୀ ତିଆରି କରିଥିଲେ, ମଝିରେ ମଝିରେ ଆସି ବସିବା ପାଇଁ । ସ୍ଥାନଟା ତାପସୀର ଅତ୍ୟନ୍ତ ପ୍ରିୟ । ଆସି ବସିପଡ଼ିଲେ ବାପାଙ୍କର ଉପସ୍ଥିତିଟା ଅନୁଭବ୍ କରିହୁଏ ।

ତାପସୀ ଚାଲିଯିବାରୁ ଲିଲି ରାଗରେ ଫୁଲି ଉଠିଲା । ବାସ୍ତବିକ କଞ୍ଚା ରଙ୍ଗ କହିବାରେ କେଉଁ ଝିଅ ଅପମାନ ଜ୍ୱାଳାରେ ଛଟପଟ ନହେବ !

ସତ କହିବାକୁ ଗଲେ, ତାପସୀର କେମିତି ଗୋଟାଏ ସ୍ୱାତନ୍ତ୍ର୍ୟ ପ୍ରିୟ ଆଭିଜାତ୍ୟ ଭାବ ରହିଛି, ଏଇଟାକୁ ଦେଖିଲେ ଲିଲି ଦେହରେ ପୀତ ଚରିଯାଏ । ଆଉ କିଛି ନୁହେଁ ରୂପର ଗର୍ବ !

ଭଗବାନ ଯେମିତି ଗୋଟିଏ ଚାଉଳରେ ନିଚୋଳ କରି ଗଢ଼ିଛନ୍ତି, ସ୍ୱାସ୍ଥ୍ୟଟା ଏପରି, ମୋଟା କହି ହେବ ନାହିଁକି ପତଳା କହିହେବ ନାହିଁ । ବରାବର ଗୋଟିଏ ପ୍ରକାର । ଯେମିତି ଗୋଟିଏ ନିଟୋଳ ପାଚିଲା ଫଳ ।

ରସର ପ୍ରାଚୁର୍ଯ୍ୟ ଅଛି- ଆଧିକ୍ୟ ନାହିଁ । ସଂଶ ଅଛି ଖୋଳପା ନାହିଁ । ଆଉ ଲିଲି ? ବିଧାତାପୁରୁଷ ଲିଲିକୁ ପିଲାଦିନରୁ ଏପରିଭାବେ ଗଢ଼ିଛନ୍ତି, ଲିଲିକୁ ଆଧୁନିକ ହେବାର ସମସ୍ତ ଉପକରଣ ଯେମିତି ତା ଦେହରେ ଉପହାସ ହୋଇ ଛିଡ଼ା ହୋଇଛି । ଅତଏବ ସୁମଧ୍ୟମା ତନ୍ୱୀ ରୂପସୀମାନଙ୍କ ଉପରେ ଯଦି ସେ ହାଡ଼େ ହାଡ଼େ ବୀରକ୍ତ ହୁଏ ତେବେ ତାକୁ ଦୋଷ ଦେଇ ହେବ ନାହିଁ । ତାହା ଉପରେ ପୁଣି ସେହି ରୂପସୀ ଯଦି ଗୋଟିଏ କନ୍ଦର୍ପକାନ୍ତି ବର ଯୋଗାଡ଼ କରିପାରେ ତାହାହେଲେ !

ହାୟ କେବଳ କ'ଣ ଲିଲି ଏକଲା ଜଳେ ? ତାପସୀ ଭିତରେ ଦୁର୍ଦ୍ଦମନୀୟ ଜ୍ୱାଳା ସେ କଥା ବୁଝିବାର ସାଧ କ'ଣ ଲିଲିର ଅଛି ?

ସମସ୍ତ କୋଳାହଳ ଆଉ ସମାରୋହର ମଝାମଝିରୁ ବିଛିନ୍ନ କରିନେଇ ବଗିଚାର ଗୋଟିଏ ପାଖରେ ଚୁପ୍ ଚାପ୍ ବସି ନିଜକୁ ଯେମିତି ବଞ୍ଚାଏ ତାପସୀ ।

ହେ ଈଶ୍ୱର କ'ଣ କରିବାକୁ ଯାଉଛି ସେ ?

ଅମିତାଭ ଉପରେ ପ୍ରତିଶୋଧ ନେବାକୁ ଯାଇ ନିଜକୁ କେଉଁ ଅଧପତନ ପଥକୁ ଠେଲି ଦେବାକୁ ଯାଉଛି । ଅଧଃପତନ ଛଡା ଆଉ କ'ଣ କୁହାଯାଇପାରେ ? ଆଉ ଦୁଇଘଣ୍ଟା ଭିତରେଏଥେଗୁଡ଼ାଏ ଲୋକଙ୍କୁ ସାକ୍ଷୀରଖି କିରୀଟୀ ସଙ୍ଗେ ବିବାହ ବନ୍ଧନର ପକ୍କା ଦଲିଲ୍‌ରେ ତାକୁ ସ୍ୱାକ୍ଷର କରିବାକୁ ପଡ଼ିବ । ଆତ୍ମହତ୍ୟା ଛଡ଼ା, ଆତ୍ମରକ୍ଷାର ଆଉ କୌଣସି ଉପାୟନାହିଁ ତାର ।

ବାପା ! ବାପା ! ତୁମେ କାହିଁକି ତୁମ ଆଦରର ବେବି ଜୀବନରେ ଏହି ଜଟିଳ ଗଣ୍ଠିଟାକୁ ନ ଛଡ଼େଇ ନିଶ୍ଚିନ୍ତ ହୋଇ ଚାଲିଗଲ ? ନିଃସଙ୍ଗ ତାପସୀର ଆଶ୍ରୟ କେଉଁଠି ? କିଏ ତାହାକୁ ପ୍ରକୃତରେ ଉଚିତ ଅନୁଚିତ ଶିକ୍ଷା ଦେବ ?

ଯେତେବେଳେ ନିଜ ହୃଦୟ ସାଙ୍ଗରେ ଆପସ ବୁଝାମଣା ଥିଲା, ସେତେବେ, ସବୁଟା ସହଜ ଥିଲା । ସହଜ ଥିଲା ଚିତ୍ରଲେଖାର ଅସଙ୍ଗତ ଇଚ୍ଛାକୁ ହସରେ ଉଡ଼େଇ ଦେବା । ଆଜି ଆପଣା ହୃଦୟରେ ସେହି ଦ୍ୱନ୍ଦ ବସା ବାନ୍ଧିଛି, ଏକୁ ଉଡାଇଦେବା ସହଜ କ'ଣ ?

ଅମିତାଭ ପିଲାଲୋକ ହେଲେ କ'ଣ ହେବ ଉଚିତ କଥା କହିଥିଲା । ସତେତ କି ପ୍ରୟୋଜନ ଥିଲା କିରୀଟୀକୁ ଏତେ ପ୍ରଶ୍ରୟ ଦେବାର ? ଦିନ ପରେ ଦିନ କେଉଁ ଆଶା ନେଇ ତାକୁ ପ୍ରଲୁବ୍ଧ କରିଆସିଛି ତାପସୀ ?

ନିଜ ମନର- ଅଜଣା ଚାପା ଲୋଭର ବଶରେ ନୁହେଁ କି ? ସେହି ଲୋଭହିଁ ଭଦ୍ରତାର ଛଦ୍ମବେଶରେ ପଦେ ପଦେ ପ୍ରସାରିତ କରିଛି ତାପସୀକୁ । କିରୀଟୀକୁ ପ୍ରତ୍ୟାଖ୍ୟାନ କରିବା ପରି ସାହସ ସେ ପାଇନାହିଁ ।

ବିଦ୍ରୋହର ଗୋଟାଏ ବାହାନା କରି ଆସିଛି ବରାବର, ଆତ୍ମସମର୍ପଣର ଉନ୍ମୁକ୍ତ ଚିତ୍ର ନେଇ । ବିଦ୍ରୋହର ଅଭିନୟ କରିବାର ସତେ କ'ଣ କୌଣସି ମାନେ ଅଛି ?

—ସେ ଯେ ଏତେଦିନ ହେଲା ବିକି ହୋଇ ଯାଇନାହିଁ । କେବଳ କିରୀଟୀର ଭୀରୁତା ପାଇଁ । ଦସ୍ୟୁପରି ଲୁଣ୍ଠନ କରି ନେଇଯିବାର ଶକ୍ତି କିରୀଟୀର ନାହିଁ । ପ୍ରାର୍ଥୀ ପରି ଅପେକ୍ଷା କରେ ।

କୌଣସି ଅସତର୍କ ମୁହୂର୍ତ୍ତ ତା'ର ଏଇ ଚେଷ୍ଟାହୀନ ସଂଭ୍ରମର ଭଙ୍ଗୀକୁ ଅସହିଷ୍ଣୁ କରେ ନାହିଁ କ'ଣ ତାପସୀକୁ ?

ଯଦି କିରୀଟୀ ଆଡୁ ସାହସର ପ୍ରାବଲ୍ୟ ଥାଆନ୍ତା, ତାପସୀ କ'ଣ ଖୁଣ୍ଟକୁ ଜାବୁଡ଼ି ଧରି ରହି ପାରିଥା'ନ୍ତା ? କିଏ ଜାଣେ ? କୌଣସି ଦିନ ମନକୁ ତ ଏପରି ସ୍ପଷ୍ଟଭାବେ ପ୍ରଶ୍ନ କରି ଦେଖିନାହିଁ । ଭୟ ସହକାରେ ରାସ୍ତା ଆଡ଼ହୋଇ ଚାଲିବାର ଚେଷ୍ଟା କରିଛି ମାତ୍ର ।

ଅସହ୍ୟ ମାନସିକ ଯନ୍ତ୍ରଣାରେ ଛଟପଟ ହୋଇ ହଠାତ୍ ଯେମିତି କଠିନ ହୋଇ ପଡ଼ିଲା ତାପସୀ । ପ୍ରଶ୍ନ ପରେ ପ୍ରଶ୍ନ ପଚାରି ନିଜକୁ କ୍ଷତବିକ୍ଷତ କଲା ତାପସୀ ।

କାହିଁକି ? କାହିଁକି ସେ ଚିରକାଳ ଏମିତି ବଞ୍ଚିତ ହୋଇ ରହିବ ? ପାପ ଭୟରେ ନା ସେହି ଖେଳଘରର ବରର ଆଶାରେ ? ଦୁଇଟିଯାକ ସମାନ ଅର୍ଥହୀନ । ଯେଉଁ

କାମ ପାଇଁ ସେ ନିଜେ ଏକ ବିନ୍ଦୁ ଦାୟୀ ନୁହେଁ, ତାହାର ପାପପୁଣ୍ୟର ଫଳ ଭୋଗୀ ମରିବାର ଦାୟିତ୍ୱ କାହିଁକି ହେବ ତାହାର ?... ବୋକାମୀ ? କେବଳ ବୋକାମୀ ! ଆଶାହୀନ, ଆନନ୍ଦହୀନ, ପ୍ରେମ ସ୍ପର୍ଶହୀନ ନିରର୍ଥକ ଜୀବନଟା– ଜନ-ମାନବ ଶୂନ୍ୟ ନିରର୍ଥକ ଜଳୁଥିବା ମହମବତୀପରି । କେବଳ ମାତ୍ର ଜଳି ଜଳି ନିଃଶେଷ ହୋଇଯିବା ହିଁ ସାର ହେବ ।

ପ୍ରତି ନିୟତ ନିଜକୁ ଚାବୁକ୍ ମାରି ମାରି ଧର୍ମ ବଜାଇ ରଖିବା କ'ଣ ନାରୀ ଧର୍ମ ? ଚାବୁକ୍ କେବଳ ନିଜକୁ ମାରିବା ନୁହେଁ– ଆଉ ଗୋଟିଏ ଆଗ୍ରହ ଉନ୍ମୁଖ ପ୍ରସାଦ-ଭିକ୍ଷୁ ହୃଦୟକୁ ଚାବୁକ୍ ମାରି ଫେରାଇବାକୁ ହେଉଛି ।.... ବୁଲୁ ବୁଲୁ ! କେଉଁଠି ସେହି ଅପରିଣିତ ବୟସ୍କ ବାଳକ ? ସେ କ'ଣ ଆଜି ବଂଚିଛି ? ସ୍ୱାମୀତ୍ୱର ଦାବି ନେଇ କୌଣସି ଦିନ କ'ଣ ସେ ଉପସ୍ଥିତ ହେବ ତାପସୀ ପାଖରେ ? ସ୍ୱାମୀ ବୋଲି ଗ୍ରହଣ କରାଯାଇ ପାରିବ ଏମିତି ଯୋଗ୍ୟତା ଅର୍ଜନ କରିଥିବ କ'ଣ ସେ ?

ତାପସୀ କ'ଣ ତାକୁ ଖୋଜି ବୁଲିବ ? କିନ୍ତୁ ତାପସୀର ସହାୟକ କିଏ ?

ମାଆ ପ୍ରତିକୂଳ, ଅଭି ନିତାନ୍ତ ବିମୁଖ । ବାବୁଲ ତ ବାଳକ ମାତ୍ର, ତେବେ କିଏ ? ଜେଜେମା ? ଜେଜେମା ହେଉଛି ତା' ଜୀବନର ଶନିଗ୍ରହ । ...... ନୁହେଁତ ଆଉ କ'ଣ ? ମନେ ମନେ ସେହି ଶନିକୁ ଉଦ୍ଦେଶ୍ୟକରି ପ୍ରଶ୍ନରେ ଜର୍ଜରିତ କରେ ତାପସୀ । .... କାହିଁକି ? କାହିଁକି ? ଏମିତି ଉଦାସୀନ ନିଶ୍ଚିନ୍ତତାରେ କାଶୀରେ ବାସ କରିବାର କି ପ୍ରୟୋଜନ ଥିଲା ? ଯେଉଁ ଗଣ୍ଠିକୁ ପକେଇକି ରଖିଛ ତାକୁ ଖୋଲିବାର ଦାୟିତ୍ୱ କ'ଣ ତୁମର ନାହିଁ ? କୁସୁମପୁରରେ କ'ଣ ପାଇ ହେବ ନାହି ? କାଶୀର ମାୟା କଟେଇ ଗାଆଁକୁ ଆସି ଥରେ ଖୋଜଖବର ନେବା କ'ଣ ଉଚିତ ନଥିଲା ? ତାପସୀର ଇହକାଳ ପରକାଳକୁ ଖାଇ ଚିତ୍ରଲେଖା ଉପରେ ଅଭିମାନ କରି ଦିବ୍ୟ ଆରାମରେ ବସି ଯାଇଛ । ଟିକିଏ ବୋଲି ବିକାର ନାହିଁ ।

ଜେଜେମାଆ ସାଙ୍ଗରେ ଥରେ ଯଦି ଗାଆଁକୁ ଯାଇପାରନ୍ତା ତାପସୀ ତା'ହେଲେ ଖୋଜିକରି ଦେଖନ୍ତା ! ଦେବ ମନ୍ଦିରର ସେହି ଉଦାର ପ୍ରାଙ୍ଗଣରେ ସ୍ଥଳପଦ୍ମ ପରି ସେହି ଆରକ୍ତିମ ଦୁଇଟି ପାଦର ଚିହ୍ନ ଆଜି ଅଛି କି ନାହିଁ ?

ଧେତ୍ ! ଏ କ'ଣ ପାଗଳୀଙ୍କ ପରି ଭାବିବା ଆରମ୍ଭ କରିଦେଇଛି ତାପସୀ ! ଯଦି ବଞ୍ଚିଥାଏ, ସେହି ଅଗାଧ ଐଶ୍ୱର୍ଯ୍ୟର ମାଲିକ ବର୍ତ୍ତମାନ କ'ଣ ଗୃହିଣୀ– ଶୂନ୍ୟ ଗୃହରେ ନିରସ ଜୀବନ ଯାପନ କରୁଛି ? ପାଗଳ ! ସେ ପୁଣି ମଫସଲ ଗାଆଁର ପିଲା ! କଲିକତାରେ ହଷ୍ଟେଲରେ ରହି ପଢ଼ାଶୁଣା କରିବାର କଥା ଥିଲା ବୋଲି ସେ ଯେ ପଢ଼ାଶୁଣା କରିଛି ତାହାର ବା ନିଶ୍ଚିତତା କ'ଣ ? ଅଳ୍ପ ବୟସରେ ଅନେକ ପଇସା ହାତରେ ପଡ଼ିବାରୁ କୁସଙ୍ଗରେ ପଡ଼ି ଖରାପ ହୋଇ ଯାଇଛି କି ନାହିଁ କିଏ କହି ପାରିବ ?

ସବୁ କଥାକୁ ଛାଡ଼ କେବଳ ଗୋଟିଏ କଥା- ବଞ୍ଚିଛି କି ନାହିଁ ? ବଞ୍ଚି ରହିଥିଲେ– ନିଜେ କ'ଣ ଏତେଦିନ ହେଲା ଗୋଟାଏ ସନ୍ଧାନ ନେଇପାରନ୍ତା ନାହିଁ ? ତାହାର ଦରକାର ବା କ'ଣ ? ପ୍ରୟୋଜନ ହୋଇଥିଲେ ହୁଏତ ଖୋଜିଥା'ନ୍ତା । ଅବଶ୍ୟ ପ୍ରଥମରୁ ଏଠିକାର ବ୍ୟବହାରଟା ଭଦ୍ରଜନୋଚିତ ହୋଇନାହିଁ, ତଥାପି ଶିକ୍ଷା-ଦୀକ୍ଷା ଯଦି ସବୁକିଛି ପାଇଥାଏ– ସଭ୍ୟତା-ଭବ୍ୟତାର ଗୋଟାଏ ମୂଲ୍ୟ ଅଛି ତ ? ବିବାହିତା ପତ୍ନୀର ପତ୍ନୀତ୍ୱକୁ ଉଡ଼େଇ ଦେଇ–

ବିବାହିତା ?

ଆଚ୍ଛା ବିବାହଟା କ'ଣ ସତେ ଶାସ୍ତ୍ରସମ୍ମତ ହୋଇଥିଲା ? ତାକୁ କ'ଣ ବିବାହ ବୋଲି ଗଣା ଯାଇପାରିବ ? ବହୁତ ଦିନ, ବହୁତବାର ସେଇ କଥାଟା ଭାବିବାକୁ ଚେଷ୍ଟା କରିଛି ତାପସୀ, ଆଜି ଖୋଲା ମନରେ ସ୍ପଷ୍ଟ କରି ଭାବିବାକୁ ଲାଗେ ।

ହୁଏତ ଯେଉଁ ବାଧାଟାକୁ ସେ ଦୁର୍ଲଂଘ୍ୟ ମନେକରି ଏତେଦିନ ଗୋଟାଏ ବିରାଟ ମୂଲ୍ୟ ଦେଇ ଆସିଛି, ପ୍ରକୃତରେ ସେଟା କିଛି ନୁହେଁ, ଗୋଟାଏ ଫାଙ୍କି ମାତ୍ର ! ସୌଖୀନ ଯାତ୍ରା ଦଳରେ ରାଜାରାଣୀ ଅଭିନୟ କରିବାପରି । ଅଭିନୟର ଅନ୍ୟତମ ଅଭିନେତା କେଉଁ କାଳରୁ ସେ ଅଭିନୟର ପୋଷାକ ଖୋଲିଦେଇ ସ୍ୱାଭାବିକ ଜୀବନ ଧରିଲାଣି । ସେଇ ଖାମଖେୟାଲି ଖେଳର ଅଭିନୟର ରାଣୀର ଅହଂକାର ନେଇ ଭିଖାରୁଣୀ ପରି ନିଜେ ଯାଇ ତାହା ଦୁଆର ମୁହଁରେ ଛିଡ଼ା ହେବ ତାପସୀ ? କହିବ- 'ଏଇ ଦେଖ ମୁଁ ତୁମ ପାଇଁ ଦୀର୍ଘକାଳ ଶବରୀପରି ପ୍ରତୀକ୍ଷା କରିଥିଲି, ଆଜି ଆସିଛି ତୁମରି ଚରଣରେ ଶରଣ ନେଇ ଧନ୍ୟ ହେବାକୁ !'

ଚିହ୍ନି ନ ପାରି ସେ ଯଦି ହସି ଉଠେ ?

ଯଦି ପୂର୍ବ ଅପମାନର ପ୍ରତିଶୋଧ ନେବାପାଇଁ ଅପମାନ ଦେଇ ତଡ଼ି ଦିଏ ? ନିଜର ସୁଶୃଙ୍ଖଳ ଜୀବନ ଯାତ୍ରାର ମଝିରେ ଆକସ୍ମିକ ଉପଦ୍ରବ ଭାବି ଅବଜ୍ଞା କରେ ?

ତେବେ ଯିବନା କ'ଣ ତାପସୀ ?

ଯିବ କ'ଣ ସଉତୁଣୀ ଘରେ ଅନଧିକାର ପ୍ରବେଶ କରିବା ପାଇଁ ? ଛି-ଛି !

ଚିତ୍ରଲେଖା ବାସ୍ତବ ବୁଦ୍ଧିସମ୍ପନ୍ନ ସଂସାର ଅଭିଜ୍ଞ ମଣିଷ । ସେଇଥିପାଇଁ ଉଡ଼ାଇ ଦେବାର ବସ୍ତୁକୁ ସେ ଚିରଦିନ ଉଡ଼େଇ ଦେଇ ଆସିଛି । ଘରେ ବାହାରେ କେଉଁଠି କୌଣସିଦିନ ସେ କଥାଟିକୁ ଉଚ୍ଚାରଣ କରିବାକୁ ମଧ ଦେଇନାହିଁ ।

ତାପସୀ ମିଥ୍ୟା ସ୍ୱପ୍ନର ମୋହରେ, ମିଥ୍ୟା ସଂସ୍କାରର ଦାସତ୍ୱରେ ଆଜୀବନ ନିଜେ ମଧ କଷ୍ଟ ପାଇଲା । ଆଉ ମାଆକୁ ମଧ କମ କଷ୍ଟ ଦେଇନାହିଁ । ଚିତ୍ରଲେଖାର

ଏଇ ଯେଉଁ ରାଗ, ରୋଷ, କ୍ଷୋଭ, ଅସହିଷ୍ଣୁତା ସବୁ କିଛିର ମୂଳ କାରଣ ତ ତାପସୀର ଭବିଷ୍ୟତ ସୁଖର ଆଶା । ହୁଏତ ଚିତ୍ରଲେଖାର ଧାରଣାଟା ଭୁଲ, କିନ୍ତୁ ସନ୍ତାନର ସୁଖ-ଚିନ୍ତାରେ ତ ଭୁଲ ନାହିଁ । ତେବେ ତାପସୀ ସେହି ମାତୃହୃଦୟକୁ ଅବହେଳା କରିବ କେଉଁ ଶ୍ରେୟ ବସ୍ତୁର ଆଶାରେ ?

ଆଉ ଶୁଧୁ କ'ଣ ମାତୃ ହୃଦୟ ? ଆଉ ଗୋଟିଏ ଉନ୍ମୁଖ ହୃଦୟକୁ ଚାବୁକ ମାରି ମାରି ଦୂରକୁ ସରାଇ ଦେବାର କଠୋର ଯନ୍ତ୍ରଣା ନିଜର ହୃଦୟକୁ କ'ଣ ଅହରହ କ୍ଷତ ବିକ୍ଷତ କରି ଚାଲିନାହିଁ ? ଯା' ହୋଇଛି— ଆଉ ନୁହେଁ । ଘଟଣାର ପ୍ରବାହରେ ନିଜକୁ ଏଥର ସେ ଛାଡ଼ିଦେବ ।

ଦେଖାଯାଉ ବିବାହର ପ୍ରତିଶ୍ରୁତି ଦେବା ସଙ୍ଗେ ସଙ୍ଗେ ଆକାଶର ବଜ୍ର ଆସି ତାପସୀ ମୁଣ୍ଡରେ ପଡୁଛି କି ନାହିଁ ?

ସ୍ଥାନଭ୍ରଷ୍ଟ କେଶଗୁଚ୍ଛ ଓ ଶାଢ଼ୀର ଅଞ୍ଚଳକୁ ଗୋଛେଇ ନେଇ ଛିଡ଼ାହେଲା ତାପସୀ । ସେ ନିଜକୁ ସମର୍ପଣ କରିଦେବ— ଆଲୋକର ବନ୍ୟାରେ, ଉତ୍ସବର କଳରବରେ । ନିଜକୁ ସମର୍ପି ଦେବ ମାଆ ହାତରେ । ବହୁଦିନରୁ ଗଢ଼ି ଆସୁଥିବା ସଂସ୍କାରର କଠିନ ଶିଳାତଳୁ ସେ ନିଜକୁ ମୁକ୍ତ କରିବ ।

ନିଃଶବ୍ଦରେ ନିଜକୁ ସମର୍ପଣ କରିଦେବ ପ୍ରେମାସ୍ପଦର ଉନ୍ମୁକ୍ତ ବକ୍ଷରେ, ବଳିଷ୍ଠ ବାହୁବନ୍ଧନ ମଧ୍ୟରେ । ତାହାହିଁ ଭଲ । ସେଇକଥା ହେଉ । ତାହାହିଁ ସ୍ୱାଭାବିକ । ଆଜୀବନ ବାଳ-ବିଧବାର ଉଦାସଭଙ୍ଗୀ ଆଉ ନିସ୍ପୃହ ମନ ନେଇ, ଏଇ ଶୋଭା ସମ୍ପଦ ଭରା ପୃଥିବୀରେ ବଞ୍ଚି ରହିବାର ଅର୍ଥ କିଛି ହେଲା ନାହିଁ । ଚୂଡ଼ାନ୍ତ ସିଦ୍ଧାନ୍ତର ନିଶ୍ଚିନ୍ତ ମନଭାବ ନେଇ ଯେପରି ଏଥର ସେ ଉତ୍ସବ ସମାରୋହ ମଧ୍ୟରେ ନିଜକୁ ସମର୍ପଣ କରି ଦେବାକୁ ଯାଉଛି । ହାସ୍ୟ ଲାସ୍ୟମୟୀ ତାପସୀକୁ ଦେଖି ଅବାକ୍ ହୋଇଯାଉ କିରୀଟୀ, ମୁଗ୍ଧ ହୋଇଯାଉ, ଧନ୍ୟ ହୋଇଯାଉ । ଚିତ୍ରଲେଖାର ଆଖି ଉଜ୍ଜ୍ୱଳ ହୋଇଉଠୁ । ଲିଲି ଜଳି ପୋଡ଼ି ମରୁ ।

ଅମିତାଭ ବୁଝୁ ତା'ର ପସନ୍ଦ ଅପସନ୍ଦକୁ ତାପସୀ କେୟାର କରେ ନାହିଁ । ତା'ର ପ୍ରିୟ ମଣିଷକୁ ଅପମାନ ଦେଇ ବିତାଡ଼ିତ କରିବାର ସାଧ କାହାର ନାହିଁ । ପ୍ରେମର ମର୍ଯ୍ୟାଦାରେ ତାହାର ଆସନ ସୁ-ପ୍ରତିଷ୍ଠିତ କରି ରଖିଛି ତାପସୀ ।

ଚଟିଟା ପାଦରେ ପୁରୋଉଛି— ପଛରୁ ଡାକ ଶୁଭିଲା । ନା, ଚିତ୍ରଲେଖାର ନୁହେଁ, ଲିଲିର ନୁହେଁ, ବନ୍ଧୁ-ବାନ୍ଧବୀ କାହାରି ନୁହେଁ, ନିତାନ୍ତ ପ୍ରିୟ ବ୍ୟକ୍ତିଟିର । ଯାହା ଚିନ୍ତାରେ ତାପସୀର ଏତେ ସୁଖ, ଏତେ ଯନ୍ତ୍ରଣା । ଯିଏ ତାପସୀର ଦିନ-ରାତିର ଶାନ୍ତିକୁ ଅପହରଣ କରି ତାପସୀର ପ୍ରିୟତମ ।

ଯିଏ ଆସିଥିଲା– ପଛରୁ କାନ୍ଧ ଉପରେ ଟିକିଏ ହାତ ଛୁଇଁଦେଇ ଆବେଗ ମଧୁର କଣ୍ଠରେ ଡାକିଲା– ତାପସୀ !

ତାପସୀ ! କିରୀଟୀର ଏତେ ସାହସ ହେଲା କେଉଁଠାରୁ ? ତାପସୀର ସିଦ୍ଧାନ୍ତ ଜାଣିପାରିଲା ନା କ'ଣ ମନେ ମନେ ? ଅଥବା ଚିତ୍ରଲେଖାର ସସ୍ନେହ ପ୍ରଶ୍ରୟ ପାଇଁ ? ତାପସୀର କାନ୍ଧରେ ହାତ ରଖିବାର ଦୁଃସାହସ କାଲି ସନ୍ଧ୍ୟାରେ ତ ଥିଲା ନାହିଁ ତାହାର !

କମ୍ପିତ ତାପସୀ ବୁଲିପଡ଼ି ଛିଡ଼ାହେଲା, ସହଜ ହେବା ଚେଷ୍ଟାରେ ଭଙ୍ଗାଗଳାରେ କହିଲା– ଆପଣ କେତେବେଳେ ଆସିଲେ ?

–ଏଇତ ଆସୁଛି । ଗେଟ୍‌ଟା ପାରହେବା ମାତ୍ରେ ଆଖିରେ ପଡ଼ିଲା ଏହି ନିର୍ଜନ କୋଣରେ ତୁମର ଧ୍ୟାନମଗ୍ନ ମୂର୍ତ୍ତି । ଆଜି ଦିନର ତୁମେ ହେଉଛ ମୋ ନିଜସ୍ୱ ଆବିଷ୍କାର । ହାୟ.... ହାୟ ! ନିଜକୁ ଏତେ ସମୟଧରି ପ୍ରସ୍ତୁତ କଲା ତାପସୀ, କୁଆଡ଼େ ଗଲା ସେ ସବୁ ? କେଉଁଠି ସେହି ହାସ୍ୟ ଲାସ୍ୟରେ ଚପଳତାରେ କିରୀଟୀକୁ ବିଭ୍ରାନ୍ତ କରି ପକେଇବାର ନୂଆ ରୂପ ! ଆଗପରି ଅସ୍ୱଚ୍ଛନ୍ଦ ଭାବେ କହିଲା– ଚାଲନ୍ତୁ ଘର ଭିତରକୁ ଯିବା ।

—ନା —ନା, ରୁହ କିରୀଟୀ ବ୍ୟଗ୍ରସ୍ୱରରେ କହିଲା– ଘରତ ଅଛି ରହିବ କେତେଗୁଡ଼ାଏ ଝଞ୍ଜଟ ଗୋଳମାଳ ଆଉ ଆଖିଝଲସା ଆଲୁଅକୁ ନେଇ । ଏମିତି ପରିବେଶରେ ତୁମକୁ ପାଇବା ଦୁର୍ଲଭ ନୁହେଁ କି ? ବସ ମୋ ସୁନାଟା ! ସନ୍ଧ୍ୟାର ଆଭାସରେ ଆକାଶରେ ଛାଇ ପଡ଼ିଛି, ମାଟି ଉପରେ ଗୋଧୂଳିର ସୁନାର ଢେଉ ମ୍ଳାନ ହୋଇ ଆସୁଛି.... ବଗିଚାରେ ଏହି ନିଭୃତ କୋଣରେ ଆହୁରି ଶୀଘ୍ର ଘନିଭୂତ ହେବ ଅନ୍ଧକାର.... ଏଠାରେ ଏକା ଏକା କିରୀଟୀ ସାଙ୍ଗରେ ମୁହାଁମୁହିଁ ହୋଇ ବସିବ ତାପସୀ ?

ଆଶ୍ଚର୍ଯ୍ୟ ପ୍ରସ୍ତାବ ତ !

ନାଃ ସମର୍ପଣର ମନ୍ତ୍ର ବୃଥାରେ ଏତେ ସମୟ ଅଭ୍ୟାସ କରିଛି ସେ । ନିଃସଂକୋଚରେ ପାଖରେ ଆସି ବସିପାରୁଛି କେଉଁଠି ? ବସି ପାରିବ ନାହିଁ, ପ୍ରତିବାଦ ମଧ କଲା ନାହିଁ, ଅଭିଭୂତ ହୋଇ ଛିଡ଼ା ହୋଇ ରହିଲା ।

ଏହି ଅସତର୍କ ମୁହୂର୍ତ୍ତରେ- ଯଦି କିରୀଟୀ ତାକୁ ବାହୁ ବେଷ୍ଟନୀରେ ବନ୍ଦୀ କରନ୍ତା- ତା'ହେଲେ ସବୁଟା ସହଜ ହୋଇଯା'ନ୍ତା । ମୋଡ଼ ଫେରିଯା'ନ୍ତା ତାପସୀ ଅବଶିଷ୍ଟ ଜୀବନର । କିନ୍ତୁ ତାହା ହେଲା ନାହିଁ, କିରୀଟୀର ଏତେ ସାହସ ନାହିଁ ।

ମଣିଷ ଜୀବନରେ ଏମିତି ହୁଏ । ପ୍ରତି ନିୟତ ଏମିତି କେତେ ସମ୍ଭାବନାମୟ ମୁହୂର୍ତ୍ତ ବୃଥା ନଷ୍ଟ ହୁଏ- ସମସ୍ୟା ସମାଧାନର ଶେଷ ସୀମାକୁ ଆସି ଧକ୍କା ଖାଇ

ଫେରିଯାଏ ଜଟିଳତା ପଥରେ । ହୃଦୟ ଆବେଗର ସହଜ ପ୍ରକାଶକୁ ଆଚ୍ଛନ୍ନ କରି ରଖେ ଅକାରଣ କୁଣ୍ଠାର କୁହୁଡ଼ି । ଦସ୍ୟୁପରି ଲୁଣ୍ଠନ କରିନେବାର ସାହସ ସମସ୍ତଙ୍କର ନଥାଏ ।

କିରୀଟୀ ତାପସୀ ପରି ଭୀରୁ, କୁଣ୍ଠିତ, ଲାଜକୁଳିଆ । ସେଇଥିପାଇଁ କାନ୍ଧ ଉପରେ ଟିକିଏ ମାତ୍ର ହାତ ଛୁଆଁଦେଇ କଣ୍ଠସ୍ୱରରେ ସମସ୍ତ ଆଗ୍ରହ ଭରି କହିଲା– ତାପସୀ ଶୁଣ, ପଳେଇ ଯାଅନା । ଆଜି ମତେ କିଛି କହିବାକୁ ଦିଅ । ମୋର ଦିନ-ରାତି-ଅଶାନ୍ତିରେ କଟୁଛି ଯେଉଁକଥା କହିବାପାଇଁ ମୋର ସମସ୍ତ ହୃଦୟ ଅସ୍ଥିର ହେଉଛି, ସାହସ ଅଭାବରୁ ଯାହା କୌଣସିଦିନ କହିପାରିନି, ଆଜିର ଏଇ ଆନନ୍ଦ ମୁହୂର୍ତ୍ତରେ ସେଇକଥା ମତେ କହିବାକୁ ସୁଯୋଗ ଦିଅ ।

'କହିବାକୁ ଦିଅ' ! କହିବାକୁ ଦେବାର ପ୍ରୟୋଜନ ଅଛିନା କ'ଣ ? ତାପସୀ କ'ଣ ଜାଣେ ନାହିଁ ସେହି କଥାଟି ?

ସୃଷ୍ଟି ଆଦିକାଳରୁ ନାରୀ ଉଦ୍ଦେଶ୍ୟରେ ଯେଉଁ କଥା ଧ୍ୱନିତ ହୋଇ ଆସିଛି ପୁରୁଷର ବିହ୍ୱଳ କଣ୍ଠରେ, ସେଇ କଥା ଆଉ ଥରେ ଧ୍ୱନିତ ହେବ ନୂତନ ଛନ୍ଦରେ ନୂତନ ଭାବରେ । କିନ୍ତୁ ନାରୀର କଣ୍ଠ ଧ୍ୱନିତ ହୁଏନା, ତା'ବୋଲି କ'ଣ ତାହାର କଥା ଅପ୍ରକାଶିତ ରହିଯାଏ ? ନାରୀର ଶିରାରେ ଶିରାରେ ରକ୍ତର ଉନ୍ମାଦ ଦୋଳାରେ ସେହି ଚିରନ୍ତନବାଣୀ କ'ଣ ଧ୍ୱନିତ ହୁଏ ନାହିଁ ? ତା'ର ନିର୍ବାକ ଭାବ ଭଙ୍ଗୀରେ ଉଚ୍ଚାରିତ ହୋଇଥାଏ ପ୍ରେମ ନିବେଦନର ବିହ୍ୱଳ ଭାଷା । ଉଚ୍ଚାରଣ କରିବାର ପ୍ରୟୋଜନ ବା କେଉଁଠି ? ସ୍ୱେଦାକ୍ତ ଦୁଇଟି କୋମଳ ହାତକୁ ଦୁଇଟି ତପ୍ତ ମୁଷ୍ଟିରେ ଚାପିଧରି ପାଖାପାଖି ବସିବାହିଁ ଯଥେଷ୍ଟ । ବିଶେଷଣ ଖୋଜି ଖୋଜି କଥା ସଜେଇବାର ଦୂରୁହ ପରିଶ୍ରମରୁ ରକ୍ଷା ମିଳେ ।

କିନ୍ତୁ ପରିଶ୍ରମ ବଞ୍ଚେଇବାର କୌଶଳ ସମସ୍ତେ ଜାଣିଲେ ତ ! ତାପସୀ ଗୋଟିଏ ମୁହୂର୍ତ୍ତରେ ଆଖିଟେକି ଚାହିଁଦେଇ ଅସ୍ପଷ୍ଟ ସ୍ୱରରେ ଯାହା କହିଲା– ତାକୁ ଯଦି କାନଡେରି ଶୁଣାଯାଏ ତା'ର ଅର୍ଥ ହେବ ଏଇଆ– ଏପାଖରେ ହୁଏତ ସମସ୍ତେ ତାପସୀର ଅନୁପସ୍ଥିତିରେ ବ୍ୟସ୍ତ ହେଉଛନ୍ତି, ଖୋଜିବାକୁ ଆସିବେ ବର୍ତ୍ତମାନ ଅତଏବ....

–ଖୋଜନ୍ତୁ ନା କ୍ଷତି କ'ଣ ? ଏଇ ମୁହୂର୍ତ୍ତଟି ନଷ୍ଟ ହୋଇଗଲେ ମୁଁ ଆଉ ଖୋଜି ପାଇବି ନାହିଁ ମୋର ସାହସକୁ ।

–ଏତେ ଭୟ କାହା ପାଇଁ ?

–ଭୟ ? ଠିକ୍ ଭୟ ନୁହେଁ । ତେବେ ଭରସାର ଅଭାବ ବୋଲି କୁହାଯାଇପାରେ । ପ୍ରତିଦିନ ପ୍ରସ୍ତୁତ ହୋଇଆସେ କହିବି ବୋଲି କିନ୍ତୁ ଫେରିଯାଏ । ତେବେ ଆଜି କିନ୍ତୁ ପ୍ରତିଜ୍ଞା କରି ଆସିଛି... ଏ କ'ଣ ତୁମ ଦେହ କ'ଣ ଖରାପ ଲାଗୁଛି ?

—ନା କିଛି ନୁହେଁ । ମୁଁ କ'ଣ କହୁଛି କି- ଏତେଦିନ ଯଦି ନ କହି କଟିଯାଇଛି ତେବେ ଆଜି ବି ଥାଉ ।

—କିନ୍ତୁ କାହିଁକି ? ତୁମେ ମାନ ବା ନମାନ ଶୁଣିବାରେ ତ କିଛି କ୍ଷତି ନାହିଁ ତାପସୀ !

—କ୍ଷତି ? ହଠାତ୍ ତାପସୀ କେମିତି ଅଦ୍ଭୁତ ଭାବରେ ହସି ଉଠିଲା । କହିଲା— ମୋର କ୍ଷତି କରିବା ଭାରଟା ସ୍ୱୟଂ ବିଧାତା ପୁରୁଷ ନିଜ ହାତକୁ ନେଇ ଯାଇଛନ୍ତି, ମଣିଷ ପାଇଁ ସେ କିଛି ବାକି ରଖି ନାହାନ୍ତି । ତେବେ ଥାଉ ।

—ତେବେ ଥାଉ, ହୁଏତ ଆଜି ବି ସମୟ ହୋଇନି । କିନ୍ତୁ ଶୁଣି ପାରିଲେ ବୋଧହୁଏ ଭଲ ହିଁ ହୁଅନ୍ତା । କିମ୍ବା ଏ ଟିକକ ଶୁଣିବାକୁ ଗଲେ ମୋର ସୌଭାଗ୍ୟ ରହିବ କି ନାହିଁ କିଏ ଜାଣେ । ଆଚ୍ଛା ଥାଉ, ଆଜିର ଗୋଳମାଳ କଟିଯାଉ, ଚାଲ, ଭିତରକୁ ଚାଲ ।

—ଯାଉଛି, ଆପଣ ଯା'ନ୍ତୁ ।

ଏପାଖରେ ସତରେ ତାପସୀକୁ ଖୋଜା ଚାଲିଛି । ଅତିଥି ଅଭ୍ୟାଗତ ସମସ୍ତେ ଯେ ତାପସୀକୁ ଦେଖିବାକୁ ଉତ୍ସୁକ । କିରୀଟୀକୁ ଘରେ ପଶିବାର ଦେଖି ଚିତ୍ରଲେଖା ସହାସ୍ୟେ କହି ଉଠିଲା— ଆରେ ତୁମେ ଆସି ଯାଇଛ ! ବେବି ସାଙ୍ଗରେ ଦେଖା ହୋଇଛି ?

—ହଁ, ବଗିଚାର ସେ ପାଖ କଣରେ ଦେଖିଲି ତ ! ଚିତ୍ରଲେଖା ମନେ ମନେ ହସିଦେଇ ଭାବେ— ଆହା ମରିଯାଉଥାଏ, 'ଇନୋସେଣ୍ଟ' ଏକବାର !

ନିଭୃତରେ ଦେଖା କରିବାର ସୁଯୋଗ ସୃଷ୍ଟି କରିବାପାଇଁ ପୂର୍ବାହ୍ନରୁ ଯାଇ ବଗିଚାରେ ବସିଛି ଝିଅ । ଏ ଟିକକ ଯେମିତି ଚିତ୍ରଲେଖା ଧରିପାରିବ ନାହିଁ ! ଦେଖ- ଗୋଟାଏ ଅର୍ଥହୀନ କୁସଂସ୍କାରକୁ ସାରସତ୍ୟ ବୋଲି ଧରିନେଇ, ଆଗ୍ରହ ବ୍ୟାକୁଳ ହୃଦୟକୁ ଦାବି ରଖି କି ବୃଥା କଷ୍ଟ ନ ପାଇଛି ଏତେଦିନ । ଯା'ହେଉ ଶେଷ ଅବଧି ଯେ ସୁମତି ହୋଇଛି । ଏଇଟା ଢ଼େର !

ସ୍ନେହ ମଧୁର କଣ୍ଠରେ ଗଦ୍‌ଗଦ୍‌ଭଙ୍ଗୀ ଆଣି ଚିତ୍ରଲେଖା କିରୀଟୀକୁ ଅନୁଯୋଗ କରେ— ଦେଖିକି ଚାଲି ଆସିଲ, ଡାକି ଆଣିଲ ନାହିଁ ?

—ବର୍ତ୍ତମାନ ଆସିବ ନାହିଁ ବୋଧହୁଏ ।

— ବୋଧହୁଏ ? ବାଃ ବେଶ୍ ପୁଅ ତ ବାପୁ ! ଆଜିପରି ଦିନରେ ସେ ବିଚରାକୁ 'ବୋଧହୁଏ' କଥା ଉପରେ ଛାଡ଼ିଦେଇ ଆସିବା ଉଚିତ ହୋଇନି ତୁମର !

ଏଣେ ତା'ପାଇଁ ସମସ୍ତେ ବ୍ୟସ୍ତ ହେଉଛନ୍ତି । ଖାଇବା ଆଗରୁ ଗୀତ ଗାଇବା, ଆଉ ଖାଇ ସାରିବା ପରେ ଗୀଟାର ବଜେଇ ଶୁଣେଇବାର ପ୍ରୋଗ୍ରାମ ରହିଛି । ଏତିକିବେଳେ ଝିଅ ନିରୁଦ୍ଦିଷ୍ଟ । ବଦ୍ଧ ପାଗଳ ଗୋଟାଏ । ଏବେଠାରୁ ବାପୁ ମୁଁ ନିଶ୍ଚିନ୍ତ, ତା'ର ପାଗଳାମୀ ଛଡ଼ାଇବାର ଭାର ତୁମର ।

କିରୀଟୀ ମନେ ମନେ ହସି ଭାବେ ପାଗଳାମି ଛଡାଇବାର ଭାରଟି ଯିଏ ନେବ ସିଏତ ପାଗଳ ହେବାକୁ ବସିଛି ।

ଏହାପରେ ଚିତ୍ରଲେଖା ନିମନ୍ତ୍ରିତ ମହିଳାମାନଙ୍କ ସାଙ୍ଗରେ କିରୀଟୀର ପରିଚୟ କରେଇ ଦେଇ ପ୍ରତ୍ୟକ୍ଷରେ ତାପସୀର ସୌଭାଗ୍ୟ ପାଇଁ ପ୍ରଶଂସା ଏବଂ ପରକ୍ଷୋରେ ଈର୍ଷା ଅର୍ଜନ କରିବାକୁ ଲାଗିଲେ । ନିଜେ କିଛି କମ୍ ଆତ୍ମପ୍ରସାଦ ଅନୁଭବ କରିନାହିଁ ଚିତ୍ରଲେଖା । ରୂପରେ, ଗୁଣରେ ବିଦ୍ୟାରେ-ବୁଦ୍ଧିରେ, ଅର୍ଥରେ, ସ୍ୱାସ୍ଥ୍ୟରେ ଏପରି ଅତୁଳନୀୟ ଜ୍ୱାଇଁ-ରତ୍ନ ସଂଗ୍ରହ କରିବା କ'ଣ ସହଜ କଥା !

ଏଇ ଯେ ଏତେ ଜଣ ଭଦ୍ରମହିଳା ସଭା ଉଜ୍ଜ୍ୱଳ କରି ବସିଛନ୍ତି, ଏମାନଙ୍କ ମଧ୍ୟରୁ କେତେଜଣ ଏପରି ରତ୍ନର ଅଧିକାରିଣୀ ? ଅଥବା ଅଧିକାରିଣୀ ହେବାର ଆଶା କରନ୍ତି ? ତାଙ୍କର ନିଜ ଝିଅଟି ଅବଶ୍ୟ ଏକ ଦୁର୍ଲଭ ରତ୍ନ ତଥାପି ଚିତ୍ରଲେଖାର 'କ୍ୟାପାସିଟି' କିଛି କମ୍ ନୁହେଁ । କେତେ କଷ୍ଟରେ, କେତେ ଯତ୍ନରେ ଏଇ ପରିସ୍ଥିତି ସୃଷ୍ଟି କରାଯାଇଛି ସେ କଥା କେବଳ ଚିତ୍ରଲେଖା ଜାଣେ ।

ପରିଚୟ-ପର୍ବ ଶେଷ ହେବାପରେ ଚିତ୍ରଲେଖା ଆଉଥରେ ସ୍ନେହ ଗଦ୍‌ଗଦ କଣ୍ଠରେ କହିଲା– ନାଃ ବେବିଟା ଦେଖୁଛି ପାଗଳ ହେଇଯାଇଛି ! କି ଅଦ୍ଭୁତ ପିଲା ଦେଖୁଛ ତ ? ତୁମେ ଆଉ ଥରେ ଯାଅ ବାପୁ ଡାକି ଆଣିବ । ଏତେ ଲାଜକୁଳୀ ଝିଅ-ଉଃ !

ଝିଅର ଲଜ୍ୟାଭାବ ଦେଖି ନିଜେ ଯେମିତି ଧକେଇବାକୁ ଲାଗିଲା ଚିତ୍ରଲେଖା ।

ତେବେ ବେଶି ସମୟ ଆଉ ଏହି କୃତ୍ରିମ ଧକେଇବାର ଏକ ଉପଯୁକ୍ତ କାରଣ ସୃଷ୍ଟି କରିଦେଇଛି ତାପସୀ ।

ଡାକିବାକୁ ଯାଇ ତାକୁ ଆଉ ପାଉନାହାନ୍ତି । ବଗିଚାରେ ନାହିଁ, ଘରେ ନାହିଁ, ସାରା ଅଞ୍ଚଳରେ କେଉଁଠି ବି ନାହିଁ । ଘରେ ଖୋଜିବାର କାମଟା ଶେଷକରି ବଂଧୁ ବାଂଧବ ଆତ୍ମୀୟ ସ୍ୱଜନଙ୍କ ଘର, କ୍ଲବ୍, ଲାଇବ୍ରେରୀ ସବୁଠାରେ ତନ୍ନ ତନ୍ନ କରି ଖୋଜା ହୋଇଛି– ଦି ଚାରିଖଣ୍ଡ ଗାଡ଼ି, ମଟର ଧରି । ଏକା ଚିତ୍ରଲେଖା ନୁହେଁ ଯେଉଁମାନେ ଘରେ ଥିଲେ ଏବଂ ନିମନ୍ତ୍ରିତ ଅତିଥିମାନେ ପ୍ରତ୍ୟେକ ଦୌଡ଼ା ଦୌଡ଼ି କରି ଅସ୍ତବ୍ୟସ୍ତ ହୋଇଗଲେ ।

ଏମିତି ଏକ ଆକସ୍ମିକ ଦୁର୍ଘଟଣା ପାଇଁ କେହି ପ୍ରସ୍ତୁତ ନଥିଲେ ତେଣୁ ନିଜ ନିଜର ଇଚ୍ଛାନୁସାରେ କଳ୍ପନା କରିବାକୁ ତ୍ରୁଟିକଲେ ନାହିଁ । ନିର୍ବନ୍ଧ ଦିନରେ ବାହାହେବା ଝିଅ କୁଆଡ଼େ ଚାଲିଗଲା, ଏମିତି ଘଟଣା ସବୁବେଳେ ଘଟେ ନାହିଁ । ଅତଏବ ଅନେକଙ୍କ ମନ୍ତବ୍ୟ ଯେ ରସାଳ ହୋଇ ଉଠିବ ଏଥିରେ ବୈଚିତ୍ର୍ୟ କ'ଣ ଅଛି ?

ବିଚରା ଭାବି-ଜ୍ୱାଇଁ କନ୍ୟାର ଏମିତି ଅପ୍ରତ୍ୟାଶିତ ଭାବ-ବିପର୍ଯ୍ୟୟ ପାଇଁ ବିମୂଢ଼ ଭାବେ ଗାଡ଼ିଖଣ୍ଡ ଆଣି କେତେଥର ଏପାଖ ସେପାଖ ହୋଇ ନୀରବରେ ଚାଲିଗଲା।

କାନ୍ତି ମୁଖାର୍ଜୀର ପ୍ରତିଷ୍ଠିତ 'ରାଇବଲ୍ଲଭ' ବିଗ୍ରହ ଓ ମନ୍ଦିରର ତତ୍ତ୍ୱାବଧାନ ଭାର ଶେଷ ବେଳକୁ ରାଜଲକ୍ଷ୍ମୀ ଦେବୀ ଉପରେ ପଡ଼ିଛି । ଉପାୟ କ'ଣ ? ନିଜର ବୋଲି କିଏବା ଅଛି ଆଉ କାନ୍ତି ମୁଖାର୍ଜୀର ? ଅବଶ୍ୟ ମନ୍ଦିର ରକ୍ଷାର ପକ୍କା ବ୍ୟବସ୍ଥା ହିସାବରେ— ନିତ୍ୟ ସେବା ଛଡ଼ା ଓଷା, ବାର, ପର୍ବପର୍ବାଣୀ ଇତ୍ୟାଦି ସବୁକିଛିର ବ୍ୟବସ୍ଥା ଅଛି । ପୂଜାରୀଠାରୁ ଆରମ୍ଭକରି ଫୁଲ ତୁଳସୀ ଯୋଗାଉଥିବା ମାଳୀ ପର୍ଯ୍ୟନ୍ତ । ତେବେ ସମସ୍ତେ ଦରମା ଦିଆଲୋକ । ସେମାନଙ୍କ ଉପରେ ତଦାରଖ କରିବାପାଇଁ ଜଣେ ବିନା ଦରମାର ଲୋକ ନ ରହିଲେ ସତରେ କ'ଣ ଶୃଙ୍ଖଳା ରକ୍ଷା କରାଯାଇ ପାରିବ ? ସେଇଥିପାଇଁ ସ୍ୱଇଚ୍ଛାରେ ରାଜଲକ୍ଷ୍ମୀ ନିଜମୁଣ୍ଡ ଉପରକୁ ଏଭାର ନେଇ ଯାଇଛନ୍ତି । ଆଉ ନ ନେଇକି ଚାରା କାହିଁ ? ତାର ତ ପୁଣି ଜୀବନରେ ଗୋଟାଏ ଅବଲମ୍ବନର ପ୍ରୟୋଜନ ଅଛି ?

ବୁଲୁବାବୁତ ଦୀର୍ଘକାଳ ସାଗରର ସେପାରିକୁ ଚାଲିଯାଇ ଏତେଦିନ କଲିକତାରେ ଯେମିତି କୌଣସି କାର୍ଯ୍ୟରେ ଲାଗି ଯାଇଛି । ଲାଗିଲା ଆଉ କ'ଣ ? ନା ବୋହୂ ନା ଘର ସଂସାର ! ଲକ୍ଷ୍ମୀଛଡ଼ା ପରି ରହେ ଫ୍ଲାଟ୍‌ରେ ଖାଏ ହୋଟେଲରେ । ଅବସର ସମୟରେ ହାଓ୍ୱାଗାଡ଼ି ଖଣ୍ଡକ ବାହାର କରି ପବନ ଖାଇବାକୁ ବାହାରକୁ ବୁଲିବାକୁ ଚାଲିଯାଏ । ତା ପାଖକୁ ରାଜଲକ୍ଷ୍ମୀ ଯିବ କେଉଁ ସୁଖ ଆଶାରେ ? ଏକ୍‌ରେ ତ କଲିକତା ନାଆଁ ଶୁଣିଲେ ରାଜଲକ୍ଷ୍ମୀର ଦେହ ଜଳିଯାଏ । ଏଇ ନିଜେ ସେ ଯେ ମଝିରେ ମଝିରେ ଆସି ପିଉସୀକୁ ଦେଖାକରିଯାଏ ସେଇଟା ଢ଼େର୍ ।

କେତେକାଳ ହେଲା ମରିଗଲେଣି କାନ୍ତି ମୁଖାର୍ଜୀ । ତେବେ ବର୍ତ୍ତମାନ ମାମୁଁଙ୍କ କଥା ଉଠିଲେ ରାଜଲକ୍ଷ୍ମୀ ରାଗିଯାଇ ଯାହା ତାହା କହିଦିଏ । ମାମୁଁକୁ ସେତେବେଳେ କି ବୁଦ୍ଧି ଦିଶିଲା କେଜାଣି, ଏକମାତ୍ର ନାତି, ଉତ୍ତର ପୁରୁଷ, ବଂଶ ରକ୍ଷକ ତାହାକୁ ଆଣି କଣ୍ଢେଇ ଖେଳ ଖେଳି ଚାଲି ଯାଇଛନ୍ତି । ପିଲାଟା ମଧ୍ୟ ସେମିତି ଜିଦ୍‌ଖୋର, ଏକବାଗିଆ ତା ନହେଲେ ସେହି ଖେଳଘରର ବାହାଘରଟାକୁ ସତ୍ୟବୋଲି ଧରି ବସିଛି । ଯଦି ବାହା ହେଇଥା'ନ୍ତା ଏତେବେଳକୁ ଦୁଇଟା ପୁଅଝିଅ ହୋଇ ଘର ହସୁଥା'ନ୍ତା । ପାତ୍ରୀର କ'ଣ ଅଭାବ ? ବୁଲୁ ପରି ପିଲାପାଇଁ ? ବୋହୂ ବଂଚିଛି କି ମରିଛି ତାର କିଛି ଠିକ ଠିକଣା ନାହିଁ । ଇଚ୍ଛାକରି ଯିଏ ସବୁ ସମ୍ପର୍କକୁ ଧୋଇପୋଛି ନିଶ୍ଚିହ୍ନ କରି ଦେଇଛି ସେହି ବୋହୂ ଆଶାରେ, ଚିର ଜୀବନ କଟେଇବ ବୋଲି ନା କ'ଣ ? କିଏ ଜାଣେ ? ମୁହଁରେ ତ ଦିନେ ସେକଥା ଧରେନାହିଁ, ଚେଷ୍ଟାକରି ଖୋଜିବା ଦୂରେ ଥାଉ ।

ଏହିସବୁ କଥା କହି କହି ଆଉଥରେ ବାହା କରିବାର ଯୁକ୍ତିକୁ ନିଜ ପକ୍ଷରେ ଛିଡ଼ା କରେଇ ରାଜଲକ୍ଷ୍ମୀ ଯେତେବେଳେ ନୀରବ ରହିଛନ୍ତି ସେତେବେଳେ ହଠାତ୍ ଦିନେ ଅପ୍ରତ୍ୟାଶିତ ଭାବେ ବୁଲୁ ଆସି ହାଜର ହୋଇଗଲା ।

ରାଜଲକ୍ଷ୍ମୀ ଠାକୁର ଘରେ ବସି ବଳିତା ବଳୁଥିଲେ ଏବଂ ଉତ୍କୀର୍ଣ୍ଣ ହୋଇ କ'ଣ ଯେମିତି ଶୁଣୁଥିଲେ । ମଟରର ହର୍ଣ୍ଣ ଶୁଣିବାକୁ ମିଳିଲା ନାହିଁ । ବୁଲୁ ଛଡ଼ା କିଏ ଆଉ ମଟରରେ ଚଢ଼ି ଏଇ ମଫସଲ ଗାଁଆକୁ ଆସିବ ?

ସେ ଟ୍ରେନ୍‌ରେ ଚଢ଼ିବାକୁ ଭଲ ପାଏନା ।

କଲିକତାରୁ ସିଧା ସିଧା ମଟରରେ ଆସେ ଗାଆଁକୁ ।

—ପିଉସୀ ମା' ଆସିଲି । ଟିକିଏ ହସିଦେଇ ପ୍ରଣାମ କଲା ।

—ଆ ବାବା ମୋ ରକ୍ଷୁଣି ଧନ ! ଏତେଦିନେ ବୁଢ଼ୀ ପିଉସୀ ମା' ମନେପଡ଼ିଲା ।

—ବାଃ ! ମନେ ପଡ଼ନ୍ତା ନାହିଁ ବୋଧହୁଏ, ଆସି ପାରିନାହିଁ ଅନେକ ଦିନ ହେଲା । ଆଜି ଆସିଲି ତୁମକୁ ନିମନ୍ତ୍ରଣ କରିବାକୁ ।

—ମତେ ନିମନ୍ତ୍ରଣ ? ରାଜଲକ୍ଷ୍ମୀ ଅବାକ୍ ହୋଇ ଚାହିଁଲେ ।

—ହଁ ମ ପିଉସୀମା' ତମେ ଆଉ ବୋହୂ ବରଣ କରିବ ନାହିଁ ? ରାଜଲକ୍ଷ୍ମୀ କୌତୂହଳ ଦମନ କରି ନିସ୍ପୃହ ସ୍ୱରରେ କହିଲେ— ଏତେ ଭାଗ୍ୟ ମୋର ହେବ ! ବୋହୂ ବରଣ ! ହୁଁଃ !

—ଥଟ୍ଟା ନୁହେଁ ପିଉସୀ ମା', ସତରେ । ତୁମର କଷ୍ଟ ଦେଖିବାକୁ ମତେ ଆଉ ଭଲ ଲାଗୁନାହିଁ ।

ରାଜଲକ୍ଷ୍ମୀ ହସିପକେଇ କହିଲେ– ମୋ କଷ୍ଟ କଥା ଭାବି ତୋ ଆଖିକୁ ନିଦ ଆସୁନାହିଁ ? ତେବେ ଘଟଣା କ'ଣ ? ସୁନ୍ଦର ଝିଅ ଫିଅ ଦେଖିଛୁ କେଉଁଠି ବୋଧହୁଏ ? ଆହା ଭଗବାନ ସୁବୁଦ୍ଧି ଦିଅନ୍ତୁ ।

–ରୁହ ପିଉସୀ ମା' ଭଗବାନଙ୍କ ନାମ ଆଉ ମୋ ଆଗରେ କୁହନା, ସେହି ଭଗବାନଙ୍କ ଦୁର୍ମତିପାଇଁ ଆଜି ମଣିଷର ଏତେ ଜ୍ୱାଳା । ସେ ପୁଣି ଦେବେ ମତେ ସୁବୁଦ୍ଧି । ତଥାପି ହୋଇଛି ! ସତକଥା କହିଲେ ତୁମେ ବୋଧହୁଏ ବିଶ୍ୱାସ କରିବ ନାହିଁ । ତୁମ କଷ୍ଟ ଦେଖି ଦିନେ ପ୍ରତିଜ୍ଞା କଲି ତୁମକୁ ବୋହୂଟିଏ ଆଣି ଦେବି । ତା ପରର କାମ ତୁମର ।

–ଆହା ଏଇ ଖଟଣି ଭୟରେ ହାତଗୋଡରେ ଖିଲି ପଶି ଯାଉଛି । କିନ୍ତୁ ଝିଅଟା ଦେଖିବାକୁ କେମିତି କହ !

–ଆଗତୁରା କହିବି କାହିଁକି ? ତୁମେ ଦେଖିଲେ ବଳେ ଜାଣି ପାରିବ ନାହିଁ ।

–ଘରଦ୍ୱାର କେମିତି ଖବର ନେଇଛୁତ ? ସେମାନଙ୍କ ପରି ଛୋଟଲୋକ ଚମାର ଯେମିତି ନହୁଅନ୍ତି ।

–ଚମାର-କମାର ମୁଁ କିଛି ବୁଝିନାହିଁ । ଧରିଆଣି ତୁମ ପାଖରେ ଦେବି । ତାପରେ ଦେଖ ।

ରାଜଲକ୍ଷ୍ମୀ ଆହୁରି ହସିଉଠିଲେ କହିଲେ– ବାଃ ! ପୁଅର ମନ ହେଇଛିତ ଏକବାର ମିଲିଟାରୀ । ବାବା ମୁଁ ସିନା ନ ଦେଖିଲେ ଚଳିବ କିନ୍ତୁ ଭଟ୍ଟାଚାର୍ଯ୍ୟ ମହାଶୟ, ନାଏ ମନାଶୟ ଏମାନଙ୍କୁ ତ ଥରେ ପଠେଇବାକୁ ପଡ଼ିବ । କନ୍ୟାକୁ ଆଶୀର୍ବାଦ କରିବାକୁ ପଡ଼ିବ । ତାଛଡ଼ା ବାହାଘରର ଝିନ୍‌ଝଟ୍ କ'ଣ କମ୍ ? କଥାରେ କହନ୍ତି ଲକ୍ଷେ କଥା ନହେଲେ ବାହାଘର ହୁଏ ନାହିଁ । ସେଥର କଥା ପଦକରେ ମାମୁଁ ଯା ନାଇ ତାହା କରି ଦେଇଯାଇଛନ୍ତି । ମୁଁ କିନ୍ତୁ ନଦେଖି ନଶୁଣି ସେମିତି ବାହାଘର କରିବି ନାହିଁ ।

–ତାହେଲେ ଠିକ୍ ଅଛି ! ବୁଲୁ ହତାଶ ସ୍ୱରରେ କହିଲା, ମୋର ପାଚିଲା ଫଳକୁ ତୁମେ କଞ୍ଚାକରିଦେବ ବୋଧହୁଏ । ପିଉସୀମା' ତୁମର ଯାହା ଇଚ୍ଛା ତାହାକର କିନ୍ତୁ ତା ଆଗରୁ ମୁଁ ଯଦି ହଠାତ୍ ବୋହୂ ଆଣି ହାଜିର କରିଦିଏ, ତଡି ଦେବ ନାହିଁତ ?

ରାଜଲକ୍ଷ୍ମୀ ରାଗିଉଠି କହିଲେ– ହଁ ସେଇଆତ ତୋ ପାଚିଲାଫଳକୁ କଂଚା କରିବି, ବୋହୂ ଆଣିଲେ ତଡିଦେବି– ଖୁବ ବିଶ୍ୱାସ ରଖିଛୁତ ମୋ ଉପରେ । ଦେଖ ମୁଁ କେତେ ଦିଅଁ ଦେବତାକୁ ପୂଜା କରିଛି ସିରିଣି ମାନସିକ କରିଛି ହରିଲୁଟ୍ ମାସିକ କରିଛି କେମିତି ତୁ ଘର ସଂସାର କରିବୁ । ତୋ କଥାରୁ ମୁଁ ଜାଣୁଛି ତୁ ଗୋଟାଏ

ମେମ୍ ଫେମ୍ ଝିଅ ବୋଧହୁଏ ଠିକ୍ କରିଛୁ ବାହାହେବା ପାଇଁ ସେଇଥିପାଇଁ ତୋର ଏତେ ଭୟ ।

—ନିର୍ଭୟ ହୁଅ ପିଉସୀ ମା' ସେ ସବୁ କିଛି ନୁହେଁ । ଯେଉଁଠି ଯାହା ମାନସିକ କରିଛ ସବୁ ବସି ବସି ଭୋଗଲଗା । ମୁଁ ଗ୍ୟାରେଣ୍ଟି ଦେଉଛି ତୁମେ ବୋହୂ ଦେଖି ଅଖୁସି ହେବ ନାହିଁ । ଆଚ୍ଛା ଏଥର ମୁଁ କଲିକତା ଗଲେ, ତୁମକୁ ସବୁ ବିଷୟରେ ବିଷଦ ଖବର ସଂଗ୍ରହ କରି ଚିଠି ଦେବି । ତାପରେ ତୁମେ ପଠାଅ ତୁମର ନାଏବ, ଭଟ୍ଟାଚାର୍ଯ୍ୟ, ପିଅନ, ପିଆଦା ଯାହାକୁ ଇଚ୍ଛା ।

ଏହାପରେ ରାଜଲକ୍ଷ୍ମୀ ଦେବୀ ତୋଡଜୋଡ କରି ବାହାଘର ଉଦ୍ୟୋଗ-ଆୟୋଜନ କରିବାରେ ଲାଗିଲେ । ଆଉ ମନେ ମନେ ହସିଲେ । ହଁ ବାବା ପିଉସୀର କଷ୍ଟ ପାଇଁତ ଛାତି ଫାଟି ପଡୁଛି ! ଯେତେହେଲେ ତ ପୁଅପିଲା, ଭରା ବୟସ, କେତେଦିନ ଆଉ ବିଧବା ସ୍ତ୍ରୀଲୋକ ପରି ଠେଲି ପେଲି ଜୀବନଟା କଟେଇବ ! ତେବେ ଯାହା ହେଲେବି ଖୁବ୍ ଭଲପିଲା ବୁଲୁ ! ସେଇଥିପାଇଁ ଏତେଦିନ ବିଲାତରେ ବୁଲିଆସି ମଧ୍ୟ ଗଙ୍ଗାପାଣି ପରି ତାର ମନଟି ସ୍ୱଚ୍ଛ । ଚନ୍ଦ୍ରମା ଦେହରେ କଳଙ୍କ ଅଛି କିନ୍ତୁ ବୁଲୁ ଦେହରେ ନାହିଁ । ଆଉ କିଛି ନୁହେଁ— କଲିକତାରେ ତ ସ୍ତ୍ରୀ ପୁରୁଷଙ୍କର ମିଳାମିଶା ଅଛି, କୌଣସି ଝିଅ ସାଙ୍ଗରେ ଭାବଲାଭ ହୋଇଛି ନିଶ୍ଚୟ !

ଗୋଟାଏ ଯୁଗ ପୂର୍ବରୁ ଦେଖିଥିବା ସେହି ଫୁଲପରି ମୁହଁଖଣ୍ଡି ଥରେ ଅଧେ ମନେ ପଡି ମନଟା କେମିତି ହୋଇଯାଏ; କିନ୍ତୁ ଜୋର କରି, ରାଗଆଣି ସେହି ସ୍ମୃତିଟିକୁ ଚାପି ଦିଅନ୍ତି ରାଜଲକ୍ଷ୍ମୀ । ସେଇ "ଗ୍ୟାଡ-ମ୍ୟାଡ" ଝିଅ ଗୋଟାଏ ସାହେବ ସୁବାକୁ ବାହା ହୋଇ ପଡ଼ିଛି କି ନାହିଁ କିଏ ଜାଣେ ? ଯଦି ତାର ରୁଚି ଥା'ନ୍ତା ତାହେଲେ ଏତେଦିନ ହେଲାଣି କ'ଣ ଟିକିଏ ଖୋଜ ଖବର ନିଅନ୍ତା ନାହିଁ ?

ଭଲ କରିବ ବୁଲୁ— ଆଉ ଥରେ ବାହହୋଇ ପଡ଼ିବ । ଜମିଦାରଙ୍କ ବିବାହର ଉପଯୁକ୍ତ ଆୟୋଜନ କରିବାକୁ ଲାଗିଲେ ରାଜଲକ୍ଷ୍ମୀ । ଦଶବାରଟା ଚାକରାଣୀଙ୍କର ଯୋଗାଡ ହେଲା ଯେଉଁମାନେ ରାତିଦିନ ରହି ଖଟିବେ । ବ୍ରାହ୍ମଣ ଚାକରଙ୍କ ଅର୍ଡର ହୁଏ ଦି ଡଜନ ପାଇଁ । ବର୍ଦ୍ଧମାନକୁ ବୟନା ପଠେଇ ଦିଆଗଲା ନହବତ ବଜେଇବାପାଇଁ । ଗହଣା, ଶାଢ଼ୀର ଫେସନ ବୁଝିବାକୁ ସରକାରବାବୁ କଲିକତା ଦୌଡ଼ିଲେ । ଇଆଡ଼େ ବସ୍ତା ବସ୍ତା ମୁଢ଼ି, ଚୁଡ଼ା, ମୁଡ଼କି ତିଆରିର ଧୁମ୍ ଲାଗିଗଲା । ମହଣେ ଖଣ୍ଡ ବିରିରେ ବଡ଼ି ତିଆରି ହେଲା । ଗୁଆ କାଟିବା, ବଳିତା ବଳିବା— ଦରକାରୀ ଅଦରକାରୀ କାମର ସୀମା ଆଉ ସଂଖ୍ୟା ନାହିଁ । ଗାଆଁ ସାଣ୍ଟୁ ନିମନ୍ତ୍ରଣ ହେବେ ନିଃସନ୍ଦେହ । ସରାରେ ସନ୍ଦେଶ ଭର୍ତ୍ତିକରି ଦିଆଯିବ  କି ହାଣ୍ଡିରେ ଭର୍ତ୍ତିକରି ଦିଆଯିବ ଏ ନେଇ ନାଏବ ମହାଶୟଙ୍କ ସାଙ୍ଗରେ ରୀତିମତ ବାକ୍-ବିତଣ୍ଡା ହେଇଗଲା ।

ପ୍ରତିଦିନ ନୂଆ ନୂଆ ଫର୍ଦ୍ଦ କରି କରି ସରକାରବାବୁ ଆଉ ନାଏବ ମହାଶୟ ଅଁଣନିଃଶ୍ୱାସୀ ହୋଇ ପଡିଲେ ।

କ୍ରମଶଃ ସବୁ ସାରା ହୋଇ ଆସିଲା । କେବଳ ମାତ୍ର ସାମିଆନା ଟାଙ୍ଗିବା, ପରଦା ଟାଙ୍ଗିବା ଏଇ କଥା ଦିଟା ବାକି । ଠିକ୍ ଏହି ସମୟରେ ଆକସ୍ମିକ ବଜ୍ରପାତ ପରି ବୁଲୁର ଖଣ୍ଡିଏ ଚିଠି ଆସି ରାଜଲକ୍ଷ୍ମୀର ସମସ୍ତ ଆୟୋଜନକୁ ଲଣ୍ଡଭଣ୍ଡ କରିଦେଲା ।

ବୁଲୁ ଲେଖିଛି–

ପିଉସୀ ମା' ମନେ ହେଉଛି ବୋହୂ ଜିନିଷଟା ବୋଧହୁଏ ମୋ ଧାତୁରେ ସହିବାର ନୁହେଁ । ସେହିଯୋଗୁ ତୁମ କପାଳରେ ମଧ ନାହିଁ । ଅଫିସ କାମରେ ପାଟଣା ଯାଉଛି, ଫେରିଲେ ତୁମ ପାଖକୁ ଯିବି । ପ୍ରଣାମ ନେବ ।

ବୁଲୁ

କାଶୀବାସ କଲେ କାଳେ ପରାମାୟୁ ବଢ଼େ ।

କାଶୀର ଗଙ୍ଗାଘାଟରେ କାଶୀବାସିନୀ ବିଧବାମାନଙ୍କର ଭିଡ ଦେଖିଲେ ଖୁବ୍ ବେଶି ଅବିଶ୍ୱାସ ହୁଏ ନାହିଁ କଥାଟା । ଏଇ ଅଂସଖ୍ୟ ବୃଦ୍ଧାଦଳ ମଧରେ ଆଉ ଗୋଟିଏ ସଂଖ୍ୟା ବୃଦ୍ଧିକରି ହେମପ୍ରଭା ଆଜି ମଧ ବଞ୍ଚିଛନ୍ତି । ଛୋଟକାଟର କୃଶ ଶରୀରଟା ଆହୁରି ଟିକିଏ କୃଶ ହୋଇଛି । ଆଖିର ଦୃଷ୍ଟିଟା ନିଷ୍ପ୍ରଭ ହୋଇଛି ମାତ୍ର, ତାଛଡ଼ା ଆଉସବୁ ପ୍ରାୟ ଠିକ୍ ଅଛି ।

ଘରେ ଆଶ୍ରିତ, ପୋଷ୍ୟମାନଙ୍କର ସଂଖ୍ୟା ବଢ଼ିଛି ସିନା କମି ନାହିଁ । ଏହି ନୂଆ ପାତିଥିବା ସଂସାରର ସମସ୍ତ ଦାୟିତ୍ୱ ଗୋଟିଏ ଝିଅ ଉପରେ ଲଦି ଦେଇଛନ୍ତି । ଯେମିତି ଭଲ ମଣିଷ ସେମିତି ପରିଶ୍ରମୀ ଝିଅ ଏଇ କମଳା ।

ପ୍ରତିଦିନ ପରି ଆଜି ମଧ ହେମପ୍ରଭା ସକାଳ ବେଳା ହରିନାମ ମାଳାଟି ଧରି ଦଶାଶ୍ୱମେଧ ଘାଟରେ ନିର୍ଦ୍ଦିଷ୍ଟ ଆସନଟିରେ ଆସି ବସିଛନ୍ତି । ଟିକିଏ ସମୟପରେ କମଳା ଧଇଁସଇଁ ହୋଇ ଆସି ଉପସ୍ଥିତ ହେଲା ।

–କିରେ, କ'ଣ ହେଇଛି ?

କମଳା ଧଇଁ ସଇଁ ହୋଇ କହିଲା– ମାଉସୀ ଘରକୁ ଚାଲ, ଗୋଟିଏ ଝିଅ ଆସି ଆପଣଙ୍କୁ ଖୋଜୁଛି ।

ହେମପ୍ରଭା ଅବାକ୍ ହୋଇ କହିଲେ–ମତେ ଖୋଜୁଛି ? କେମିତିକା ଝିଅଟିଏ ?

—ଆହା ଯେମିତି ସରସ୍ୱତୀ ପ୍ରତିମା ପରି ଝିଅ ମାଉସୀ ! ଦେଖିଲେ ଦୁଇଦଣ୍ଡ ଅନେଇବାକୁ ଇଚ୍ଛା ହେବ । ରେଳରେ ଆସିଛିତ ସେଇଥିପାଇଁ ଚେହେରାଟା ଟିକିଏ ଶୁଖିଲା ଦିଶୁଛି ।

'ସରସ୍ୱତୀ ପ୍ରତିମା ପରି' ଶୁଣିଦେଇ ଛାତିଟା ଧଡ଼ପଡ଼ ହେଇଛି ହେମପ୍ରଭାଙ୍କର । ଅସମ୍ଭବ କ'ଣ କେବେ ସମ୍ଭବ ହୁଏ ?

ଝୁଲାମାଳ ଗୋଟେଇବା ଅବସରରେ ହୃତ୍ ସ୍ପନ୍ଦନକୁ ସ୍ୱାଭାବିକ ଅବସ୍ଥାକୁ ଆଣୁ ଆଣୁ ହେମପ୍ରଭା ହସର ଆଭା ମୁହଁରେ ଫୁଟେଇ କହିଲେ— ମରାଳ ବାହନ ଛାଡ଼ି, ରେଳ ଚଢ଼ି ପୁଣି କେଉଁ ସରସ୍ୱତୀ ଆସିଲେ ? ନାଆଁ-ଫାଁ କିଛି କହିଛି ?

—ନା ପ୍ରଶ୍ନ କରିବାକୁ ମୁଁ ସମୟ ପାଇନି । ଆପଣଙ୍କ ନାମଧରି କହିଲା ଏଇ ଘରେ ଅମୁକ ଦେବୀ ଅଛନ୍ତି ନା ? ମୁଁ ତାଙ୍କୁ ଛିଡ଼ା କରେଇ ଦେଇ ଦୌଡ଼ି ଆସିଲି ଖବର ଦେବାକୁ ।

କିନ୍ତୁ ହେମପ୍ରଭା ପରି ଏମିତି ଅବିଚଳ ଧୈର୍ଯ୍ୟ ବା କେତେଜଣ ସ୍ତ୍ରୀ ଲୋକଙ୍କର ଅଛି ?

—ବଡ଼ ଝିଅ । ଠିକ୍ ଠଅରେଇ ପାରିନାହିଁ କେତେବଡ଼, ବା-ସାହା ହୋଇନି ଏ ପର୍ଯ୍ୟନ୍ତ । ପାଠ-ଶାଠ ପଢ଼ା ଝିଅପରି ଲାଗିଲା ।

—ସାଙ୍ଗରେ କିଏସେ ଅଛି ?

—କେହି ନାହିଁ, ଏକା । ମୁହଁଟି କେମିତି ଶୁଖିଲା ଶୁଖିଲା ମନେ ହେଉଛି ଯେମିତି କୌଣସି ବିପଦରେ ପଡିଛି । ସେଇଥିପାଇଁ ତ ଛୁଟି ପଳେଇ ଆସିଲି ।

—ଚାଲିଲୁ ଦେଖି । ତୁ ଯେ ଧକୋଉଛୁ ଏକବାରେ !

ସ୍ୱାଭାବିକ ସ୍ୱରରେ କଥା କହିବାକୁ ଚେଷ୍ଟାକଲେ ହେମପ୍ରଭା । ହୃଦୟ ଯେତେ ଛୁଟିଲେ କ'ଣ ହେବ, ପାଦ ଯେମିତି ଚଳିବାକୁ ଚାହୁଁନାହିଁ ।

କିଏ ପୁଣି କେଉଁ ବିପଦରେ ପଡି ହେମପ୍ରଭାକୁ ସ୍ମରଣ କରିବାକୁ ଆସିଲା । ଗୋଟାଏ ଯୁଗ ଆଗରୁ ଆସଥିଲା କଲିକତା ଘରର ଗୁମାସ୍ତା ଲାଲବିହାରୀ । ସେହି ଦିନଠାରୁ ତ ଅତୀତ ଜୀବନ ସଙ୍ଗେ ସମସ୍ତ ପ୍ରକାର ସମ୍ବନ୍ଧ ଶେଷ ହୋଇଯାଇଛି । ଏଇ ଦୀର୍ଘକାଳ ସେ କେତେ ଦୁଃଖ ଓ ଗ୍ଲାନି, ଦୁର୍ବିସହ ଶୋକଭାର ବହନ କରି ଆସିଛନ୍ତି । ଏଠାରେ ସମସ୍ତେ ଜାଣନ୍ତି କାଶୀବାସିନୀ ପାଞ୍ଚଜଣ ବିଧବାଙ୍କ ପରି ସେ ନିହାତି ବଂଧୁବାଂଧବ ଶୂନ୍ୟ । ଅବସ୍ଥା ସେତେ ଖରାପ ନୁହେଁ । କାଶୀର ଏହି ଘର

ଖଣ୍ଡ ତାଙ୍କ ନିଜର । ତାଛଡ଼ା ବର୍ଦ୍ଧମାନ ଜିଲ୍ଲାର କୌଣସି ଏକଗ୍ରାମରୁ ନିୟମିତ ଗୋଟାଏ ମୋଟା ଅଙ୍କର ମନିଅର୍ଡର ଆସେ । ଅବଶ୍ୟ ସେ ସବୁ ଖର୍ଚ୍ଚ ହୁଏ ଆଶ୍ରିତମାନଙ୍କର ପ୍ରତିପାଳନରେ । ବିଧବା ବୁଢ଼ୀର ଖର୍ଚ୍ଚ କରିବାର ଅନ୍ୟବାଟ ବା କ'ଣ ଅଛି ? ନିଜ ଅତୀତ ଜୀବନର କଥା କେବେ କାହାରି ପାଖରେ ସେ ଗପନ୍ତି ନାହିଁ ।

ନିତାନ୍ତ ପ୍ରୟୋଜନ ହିସାବରେ ନିଜପାଇଁ ଯାହା ଟିକିଏ ରଖିଥିଲେ ତାହାରି ଗୋଟାଏ ଭାଗରେ ଚଳେ ହେମପ୍ରଭା । ଗାଆଁରେ ଚିରଦିନ ବିଶ୍ୱାସୀ ସରକାରବାବୁଙ୍କ ହାତରେ ସମସ୍ତ ଭାର ଦିଆଯାଇଛି । ତାଛଡ଼ା ସମସ୍ତ ସମ୍ପତ୍ତିର ଦାୟିତ୍ୱ ତାଙ୍କରି ଉପରେ ନ୍ୟସ୍ତ । ତାପସୀ ନାମରେ ଦାନପତ୍ର ହୋଇଥିବା ସମ୍ପତ୍ତିର ଆୟଟା ଅନୁଗ୍ରହ କରି ଗ୍ରହଣ କଲେ ମଧ, ସେ ସମ୍ପତ୍ତି ଦେଖାଶୁଣା କରିବା କଥା ଚିନ୍ତାକରେନାହିଁ ଚିତ୍ରଲେଖା । ସରକାରବାବୁ ନିହାତି ସାଧୁବ୍ୟକ୍ତି ବୋଲି ଆଜି ପର୍ଯ୍ୟନ୍ତ ସବୁ ସେମିତି ଯଥାଯଥ ବଜାୟ ରହିଛି । ଛାତିକୁ ପଥର କରି ପଡ଼ିରହିଛନ୍ତି ସେ ।

ମନୀନ୍ଦ୍ରର ମୃତ୍ୟୁପରେ ପୁଅଝିଅଙ୍କ ଉପରେ ଏମିତି କଠିନ ଆଦେଶ ଜାରିକରି ରଖିଥିଲା ଚିତ୍ରଲେଖା, ଯାହାଦ୍ୱାରା ସେମାନଙ୍କର ଏକାନ୍ତ ପ୍ରିୟ 'ନାନୀ'କୁ ଖଣ୍ଡିଏ ଚିଠି ଲେଖିବାର ଉପାୟ ମଧ ନଥିଲା ।

ସ୍ୱାମୀଙ୍କ ମୃତ୍ୟୁପରେ ଶାଶୁଙ୍କ ସାଙ୍ଗରେ ସମସ୍ତ ସମ୍ପର୍କ ଛିନ୍ନ କରିବାର ଦୃଢ଼ ସଂକଳ୍ପ ନେଇ ନୂଆଭାବରେ ସଂସାରକୁ ଓହ୍ଲେଇଥିଲେ ଚିତ୍ରଲେଖା । ତାର କେମିତି ଧାରଣା ହୋଇଥିଲା, ମନୀନ୍ଦ୍ରର ଆକସ୍ମିକ ମୃତ୍ୟୁର କାରଣ ହିଁ ହେମପ୍ରଭା ।

ତାହାର ସେହି ଜ୍ଞାନବୁଦ୍ଧି ଶୂନ୍ୟ କାଣ୍ଡ ପାଇଁ ମା'କୁ ପ୍ରାୟ ବର୍ଜନ କରିଥିଲେ ମନୀନ୍ଦ୍ର ! ଅବଶ୍ୟ ଚିତ୍ରଲେଖା ଜାଣିଥିଲା ସେଟା ସାମୟିକ, ନିତାନ୍ତ ଅସ୍ଥାୟୀ । ହେମପ୍ରଭା ନିଜପକ୍ଷରୁ ନିର୍ବାସନ ଦଣ୍ଡ ଗ୍ରହଣ ନ କରିଥିଲେ, ପୁତ୍ର ପୁଣି ମା' ବୋଲି ଭକ୍ତିରେ ଗଦ୍‌ଗଦ୍ ହୋଇଥାନ୍ତା । ଏଇ ଗୋଟିଏ ମାତ୍ର ଉଚିତ କାମ କରିଛନ୍ତି ହେମପ୍ରଭା, ଚିତ୍ରଲେଖା ପ୍ରତି ଏଇ ଟିକକ ଅନୁଗ୍ରହ ।

କିନ୍ତୁ ପୁଅ ମା'ର ପ୍ରଭାବରେ ଏତେ ବେଶି ପ୍ରଭାବିତ ଥିଲେ ନା ମାତୃବିଚ୍ଛେଦ ଦୁଃଖ ତାଙ୍କୁ ଲାଗିଥିଲା । ଯେମିତି ଦିନରାତି ଅନୁତାପର ନିଆଁରେ ପୋଡିଜଳି ଯାଉଥିଲେ । ଆଶ୍ଚର୍ଯ୍ୟ, ମା' ବୋଲି କ'ଣ ସାତଖୁଣ୍ ମାପ୍ !

ତାଛଡା ବେବିର ଭବିଷ୍ୟତ ଚିନ୍ତା !

ଚିତ୍ରଲେଖା ପରି ମନୀନ୍ଦ୍ର ଯଦି ସେହି ଦୁଃଖଦ ଘଟଣାଟାକୁ ଚିନ୍ତାଜଗତରୁ ଝାଡିଝୁଡି ଫୋପାଡି ଦେଇଥା'ନ୍ତେ ତାହାଲେ ସବୁକଥା ଚୁକି ଯାଇଥା'ନ୍ତା । ତା ନୁହେଁ,

ସେଇଆଡକୁ ନେଇ ଅବିରତ ଦୁଶ୍ଚିନ୍ତା । ମନକଷ୍ଟରେ ସେହି ଚିନ୍ତାରେ ଭିତରେ ଭିତରେ ଜଳୁନଥିଲେ ଏପରି ସୁନ୍ଦର ସ୍ୱାସ୍ଥ୍ୟ ଦୀର୍ଘଚେହେରାର ଶରୀରଟା ମୁହୂର୍ତ୍ତିକ ଭିତରେ କର୍ପୁର ପରି ଉଡିଯାଇ ନଥା'ନ୍ତା ।

ସବୁକିଛି ମୂଳାରେ ସେଇ ହେମପ୍ରଭା । ଦୈବକ୍ରମେ ସ୍ୱାମୀର ଜନନୀ ବୋଲି କ'ଣ ତା ପ୍ରତି ଶ୍ରଦ୍ଧାରେ ଭକ୍ତିରେ ବିଗଳିତ ହେବାକୁ ହେବ !

ଏଇତ ଚିତ୍ରଲେଖାର ପିଲାମାନେ ପୁଣି ଅଛନ୍ତି, ମା'ଉପରେ କାହାର କେତେଟା ଭକ୍ତି-ଶ୍ରଦ୍ଧା ତାହା ଜାଣିବାକୁ ବାକି ନାହିଁ । ଏହା ଉପରେ ଯଦି ସେମାନଙ୍କୁ, ଚିତ୍ରଲେଖାର ଚିରଶତ୍ରୁ ସେହି ବଶୀକରଣ ଶକ୍ତିଶାଳୀ 'ନାନୀ'ର କବଳରେ ପଡିବାକୁ ଦିଆଯାଏ ତାହେଲେ ଆଉ ରକ୍ଷା ଅଛି !

ଅତଏବ କଡ଼ା ଶାସନର ମାଧମରେ ସେମାନଙ୍କର ସ୍ମୃତିଜଗତରୁ 'ନାନୀ'ର ମୂର୍ତ୍ତିଟା ପୋଛିଦେବା ଦରକାର ।

ତାଛଡ଼ା ଯେଉଁ କଥାଟା ମନରେ ଆଣିବାକୁ ଘୃଣା ବୋଧହୁଏ, ବେବି ଜୀବନରେ ସେହି ଅବାଂଛିତ ଘଟଣାଟା ଯେଉଁଟାକୁ ଚିତ୍ରଲେଖା ଅସ୍ୱୀକାର କରିବାକୁ ଚାହେଁ, ପିତାମହୀର ସଂସ୍ପର୍ଶରେ ଆସିବାକୁ ଦେଲେ ସେଇଟାକୁ ଜିଆଁଇ ରଖିବାର ସହାୟତା କରାହେବକି ନାହିଁ କିଏ ଜାଣେ ! ତା ନିଜ ପସନ୍ଦ ମୁତାବକ ଯେଉଁ ଅପୂର୍ବ ବିବାହ କରିବାକୁ ସେ ଆଗେଇ ଯାଇଛନ୍ତି ତାକୁ ସଂପୂର୍ଣ୍ଣ ନକରି ସେ କ'ଣ ଛାଡ଼ିବେ !

ଏକରେ ତ ନିହାତି ସରଳପ୍ରକୃତିର ଝିଅଟା, ତା କାନରେ ଯଦି 'ସୀତା, ସାବିତ୍ରୀ'ର ଆଖ୍ୟାନସବୁକୁ ବିଷମନ୍ତ୍ର ପରି ଢ଼ଳାହୁଏ ତହାହେଲେ ଚିତ୍ରଲେଖା ପକ୍ଷରେ ବିଷଖାଇ ମରିବା ଛଡ଼ା ଅନ୍ୟକିଛି ଉପାୟ ରହିବନାହିଁ ।

ବରଂ ସମୟ ଥାଉ ଥାଉ ବିଷ ବୃକ୍ଷର ମୂଳ ଛେଦନ କରିବା ବୁଦ୍ଧିମାନର କାର୍ଯ୍ୟ । ତା ବୁଦ୍ଧିଟା ଯେ ଏକବାର ନିଷ୍ଫଳ ହୋଇଛି ତାହା କେମିତି କୁହାଯିବ ! ବରଂ ଯଥେଷ୍ଟ କାର୍ଯ୍ୟକାରୀ ହୋଇଛି ।

ସ୍ନେହମୟ ପିତାର ଉଦାର ସ୍ନେହସିକ୍ତ ଆଶ୍ରୟ ହରାଇ ଭୀତ-ତ୍ରସ୍ତ ପୁଅ-ଝିଅ ତିନିଟା ଦୁର୍ଦ୍ଧାନ୍ତ ମା'ର କଡ଼ା ଶାସନରେ ପିଲାବେଳେ କୌଣସି ଯୋଗସୂତ୍ର ରଖିପାରିଲେ ନାହିଁ । ହେମପ୍ରଭା କଥା ସତରେ ପ୍ରାୟ ବିସ୍ମୃତ ହୋଇଯାଇଥିଲା । ବଡ ହୋଇ ମଧ କେହି କେତେବେଳେ ନୂଆକରି ଯୋଗସୂତ୍ର ସ୍ଥାପନ କରିବାକୁ ଚେଷ୍ଟା କରିନାହିଁ ।

ସ୍ୱାଭାବିକ ଅନୁମାନରେ ହେମପ୍ରଭା ଅବଶ୍ୟ ପ୍ରକୃତ ଅବସ୍ଥା ବୁଝି ପାରିଛନ୍ତି, ତେବେ ସତରେ କ'ଣ ତାଙ୍କ ମନରେ କେତେବେଳେ ବିନ୍ଦୁଏ ଅଭିମାନ ହୋଇନାହିଁ ? ତାପସୀ ପଛେ ତା ଜୀବନରେ ଶନିଗ୍ରହକୁ ଚିରଦିନ ପାଇଁ ବର୍ଜନକରି ରହୁ କିନ୍ତୁ ଅଭି , ବାବୁଲ୍ ? ଏଇ ବାରବର୍ଷରେ ଅବଶ୍ୟ ଯଥେଷ୍ଟ ସାବାଳକ ହୋଇଛନ୍ତି ସେମାନେ ?

ତେବେ ?

ଦେଖିବାକୁ ନ ଆସନ୍ତୁ ପଛକେ, ଚିଠି ଖଣ୍ଡେ କ'ଣ ଆସିପାରନ୍ତା ନାହିଁ ? ଧରନ୍ତୁ ପରୀକ୍ଷାରେ ସାଫଲ୍ୟ କିମ୍ବା ବିଜୟାଦଶମୀର ପ୍ରଣାମ ସଂବଳିତ ଦୁଇଧାଡ଼ି ଚିଠି ? ହେମପ୍ରଭା ପାଗଳ, ସେଇଥିପାଇଁ ଗୋଟାଏ ସୁନ୍ଦରଝିଅର ନାଆଁ ଶୁଣି ଅସମ୍ଭବ ଆଶାରେ ବିଚଳିତ ହୋଇ ପଡ଼ିଛନ୍ତି । କମଳାର କଥା ତ ! ବେଶ୍ କିଛି ବାଦ ଦେଇ ଗ୍ରହଣ କରିବାକୁ ପଡେ ।

କିନ୍ତୁ କିଏ ଆସିପାରେ ?

ହେମପ୍ରଭାକୁ ଖୋଜୁଛି, ନାଆଁ କହି ସନ୍ଧାନ ଚାହୁଁଛି, ଏମିତି ଲୋକ କିଏ ହୋଇପାରେ କାହାକୁ ସେ ଜାଣିପାରୁ ନାହାନ୍ତି ।

ଯେତେ ବୁଲେଇଲେ ବି ସେହି ଜଣଙ୍କର କଥା ହିଁ ମନେ ପଡେ ।

—'ତାପସୀ'

କହିବା ବାହୁଲ୍ୟ ! ତାପସୀ ବା ଏମିତି ଶୁଖିଲା ମୁହଁ ନେଇ ଏକା ଏକା କଲିକତାରୁ କାଶୀ ଆସିବ କାହିଁକି ? ନା ତା କଥା ସମ୍ଭବ ନୁହେଁ ।

ଆଚ୍ଛା ଇମିତି ହୋଇପାରେ ମା' ସାଙ୍ଗରେ ମନାନ୍ତର ହୋଇ ଅଭିମାନରେ 'ନାନୀ' ପାଖକୁ ପଳେଇ ଆସିଛି । ହାୟ, କପାଳ ! ହେମପ୍ରଭାର ଏମିତିକା ଭାଗ୍ୟ !

ହେମପ୍ରଭା ସ୍ନେହର, ହେମପ୍ରଭା ଆଶ୍ରୟର ଯଦି କୌଣସି ମୂଲ୍ୟ ଥା'ନ୍ତା, ତେବେ କ'ଣ ସେହି ଦୁର୍ଦ୍ଦିନରେ ପୁଅଝିଅ ତିନିଟାକୁ ଛାଡ଼ିଦେଇ ମନୀନ୍ଦ୍ର...

ହଠାତ୍ ସମସ୍ତ ଚିନ୍ତା ସ୍ରୋତ ଉପରେ ପଥର ନଦି ଦେଇ ଦ୍ରୁତଗତିରେ ଚାଲିବାକୁ ଲାଗିଲେ ହେମପ୍ରଭା । ଏତେ ଭାବିବାର କ'ଣ ଅଛି ?

ନିଶ୍ଚୟ କେହି ଫାଲ୍‌ତୁଲୋକ । କୁମାରୀ ଝିଅ କହିଲା ? ହୁଏତ କୌଣସି ପ୍ରତିଷ୍ଠାନର ବା ସ୍କୁଲର ।

ଘର ଭିତରେ ପ୍ରବେଶ କରି ଅବଶ୍ୟ ନିମିଷକ ପାଇଁ ସ୍ଥାଣୁ ହୋଇଗଲେ ।

ମିଛ କଳ୍ପନା ନୁହେଁ, ଅସମ୍ଭବ ସମ୍ଭବ ହୋଇଛି । ସତକୁ ସତ ତାପସୀ ।

ଘରର ବାହାର ପଟେ ଗୋଟେ ଲମ୍ବା ବେଞ୍ଚ୍ ପଡ଼ିଥିଲା । ତାହାରି ଉପରେ ଚୁପଚାପ୍ ବସିଛି । ସାଙ୍ଗରେ ଜିନିଷପତ୍ର କିଛି ନାହିଁ ।

ତାପସୀ ! ହଁ । ତାପସୀ !

ସକାଳର ଝିଲିମିଲିଆ ଖରା । ଆଲୋକ ପରିପୂର୍ଣ୍ଣ ଘର । ଭୁଲ କରିବାର କିଛିନାହିଁ । ବାରବର୍ଷର ବାଳିକା ଉପରେ ଆଉ ବାରବର୍ଷ ଧରି ସୃଷ୍ଟିକର୍ତ୍ତା ତାଙ୍କର ଯେତେ ଶିଳ୍ପ କୌଶଳ ପ୍ରୟୋଗ କରିଥା'ନ୍ତୁ ।

ବାର୍ଦ୍ଧକ୍ୟର ସ୍ତିମିତ ଦୃଷ୍ଟିନେଇ ହେମପ୍ରଭାଙ୍କର ଚିହ୍ନିବାରେ ଭୁଲହେଲା ନାହିଁ ।

ସତରେ ଶୁଖିଲା ଶୁଖିଲା ମୁହଁ, ବିପର୍ଯ୍ୟସ୍ତ କେଶ, ଆଖିତଳେ କଳାଗାର । ବିପଦର ସମ୍ବାଦ ବୋହି ଆଣିବା ପରି ଚେହେରାରୁ ଜଣାପଡୁଛି ।

କିନ୍ତୁ ଏମିତି କ'ଣ ବିପଦ ପଡିପାରେ ଯାହା ଫଳରେ ତାପସୀକୁ ଆସିବାକୁ ପଡ଼ିଛି ସେ ସଂବାଦ ବହନ କରି ?

ତେବେ କ'ଣ ଚିତ୍ରଲେଖା ମନୀନ୍ଦ୍ରର ପଥ ଅନୁସରଣ କଲା କି ? ଅସମ୍ଭବ କ'ଣ ? ହେମପ୍ରଭାପରି ଏତେବଡ଼ ଦୁର୍ଭାଗିନୀ ସଂସାରରେ ଆଉ କିଏ ଅଛି ଯଥା ସମୟରେ ମରି ମୁହଁ ଲୁଚେଇ ପାରେନାହିଁ ।

– ତାପସୀ ! ଡାକିଦେଇ ବେଞ୍ଚ ଉପରେ ବସିପଡ଼ିଲେ ହେମପ୍ରଭା । ତାପସୀ ମୃଦୁ ହସି କହିଲା ମୁଁ ନୁହେଁ, ମୋର ଭୂତ । ସାରାଦିନ ବୋଧହୁଏ ତୁମେ ଗଙ୍ଗା ଘାଟରେ ରୁହ ?

– ରହେତ, କ୍ଷତି କ'ଣ ? ଭାବେ ପ୍ରତିଦିନ ଦେଖୁ ଦେଖୁ ଯଦି ଦୈବାତ ମା'-ଗଙ୍ଗାର ଦୟାହୁଏ କେଉଁଦିନ । କିନ୍ତୁ ତୁ ହଠାତ୍ ଏମିତି ଚାଲି ଆସିଲୁ କାହିଁକି, ସେ କଥା ମତେ କହ । ମୋର ବିଶ୍ୱାସ ହେଉନାହିଁ । ବୁଝିପାରୁନାହିଁ ମୁଁ ଆନନ୍ଦ କରିବ ନା ଆତଙ୍କିତ ହୋଇ ବସି ରହିବି ?

ତାପସୀ ସ୍ୱାଭାବସିଦ୍ଧ ମୃଦୁ ହସ ହସି କହିଲା– ସେ କି କଥା ନାନୀ ! କେତେଦିନ ପରେ ଦେଖିଲୁ ଆନନ୍ଦରେ ଅଧୀର ହୋଇ ଉଠିବା କଥା ତା ନକରି ଭାବି ଚିନ୍ତି ଅଙ୍କକଷି ଠିକ୍ କରିବୁ, କ'ଣ କରିବା କର୍ତ୍ତବ୍ୟ ?

ଈଷତ୍ ପ୍ରକୃତିସ୍ଥ ହୋଇ ହେମପ୍ରଭା କହିଲେ– ଭୟଙ୍କର ଦୁଃସମ୍ବାଦ କିଛି ନାହିଁ ତା ହେଲେ ? 'ଆନନ୍ଦ' କଥାର ବନାନ ଭୁଲିଯାଇଛି ତାପସୀ । ତୁ ହଠାତ୍ ଏମିତି ଏକଲା ଏକବସ୍ତ୍ର ହୋଇ ଏମିତି ଚାଲି ଆସିଲୁ ସେ କଥା ନ ଶୁଣିଲା ପର୍ଯ୍ୟନ୍ତ ମୁଁ ସ୍ଥିର ହୋଇପାରୁନି ।

– ଏମିତି ତତେ ଦେଖିବାକୁ ଇଚ୍ଛା ହେଲା, ଭାବିଲି କେବେ କାଶୀ ଲାଭ ହେବ, ଦେଖା ହେବନାହିଁ ହୁଏ ତ ?

ଏକଥା ତୁ ଆଉ ଯାହାକୁ ବୁଝେଇବୁ ବୁଝା, ମତେ ବୁଝେଇବାକୁ ଦରକାର ନାହିଁ । ମୋ ମନଟା କେବଳ ଖରାପ ଆଡ଼କୁ ଯାଉଛି । କ'ଣ ହେଇଛି କହ ! ଶୁଣି ଟିକିଏ ନିଶ୍ଚିନ୍ତ ହୁଏ ।

— କି ମୁସ୍କିଲ ! ତାପସୀ ଯେମିତି ବିସ୍ମୟ ପ୍ରକାଶ କରି କହିଲା– ବୁଢ଼ା ହେଲେ କ'ଣ ମଣିଷର ବୁଦ୍ଧି ଜ୍ଞାନ ଶୂନ୍ୟ ହୋଇଯାଏନା କ'ଣ ? ଗୋଟାଏ ମଣିଷ ସାରା ରାତି ଟ୍ରେନି ଚଢ଼ି, ଭୋକ ଓପାସରେ କାତର ହୋଇ ଆସି ପଡ଼ିଛି- ତାକୁ ''କାହିଁକି ଆସିଛୁ'' 'କେଉଁଥିପାଇଁ ଆସିଛୁ' ଏଇ ପ୍ରଶ୍ନରେ ଜେରା ଉପରେ ଜେରା । ରହିବାକୁ ଯଦି ନଦବୁ ତା ହେଲେ କହିଦେ ଚାଲିଯିବି ।

— ହେ ମା ଦୁର୍ଗା..... ଦୁର୍ଗା ! ମୁଁ ଯେ ଦିନ ରାତି ଏଇ ଆଶା ଟିକକ ଛାତିରେ ଧରି ଦିନ କାଟୁଛି । ଥରେ ତମ ମାନଙ୍କର ଚନ୍ଦ୍ରମା ମୁହଁ ଦେଖିବି ବୋଲି । ଏମିତି ଅଜଣା ଅଶୁଣା ଭାବରେ ହଠାତ୍ ଆସିଲୁ, ଭୟରେ ଛାତିଟା ଥରି ଉଠିଲା । କହ ସମସ୍ତେ ଭଲରେ ଅଛନ୍ତି ତ ?

— ଅଛନ୍ତି ଅଛନ୍ତି ।

— କିନ୍ତୁ ତତେ କାହିଁକି ଭଲ ଦେଖୁନାହିଁ । ହେମପ୍ରଭା ସନ୍ଦିଗ୍ଧ ଭାବରେ କହିଲେ - ତୁ କେମିତି ଅଛୁ ?

— ଖୁବ୍ ଭଲରେ । ତତେ ଯେ ଏତେବେଳଯାଏ ପ୍ରଣାମ କରି ନାହିଁ । ଗାଡ଼ିର ପିନ୍ଧା ଲୁଗାଟା ଛୁଆଁ ନା କ'ଣ ?

ବାଲ୍ୟର ଶିକ୍ଷା ଆଜି ମଧ ବିସ୍ମୃତ ହୋଇନାହିଁ । ଅଭିଭୂତ ହେମପ୍ରଭା ଏତେବେଳେ ଦୁଇବାହୁ ବଢ଼େଇ ଛାତି ଉପରେ ଚାପି ଧରିଲେ ତାହାର ଚିର ଆଦରର ଆଦରିଣୀୟାକୁ । ଅଭି, ବାବୁଲ ଯେତେ ମୂଲ୍ୟବାନ ହୁଅନ୍ତୁ ପଛେ ତାପସୀର ମୂଲ୍ୟ ଅଲଗା ।

ସଂସାରର ପ୍ରଥମ ଶିଶୁ ।

ମହୀନ୍ଦ୍ରର ପ୍ରଥମ ସନ୍ତାନ

କମଳାର ଉପସ୍ଥିତି କଥା ଆଉ ମନେ ନାହିଁ । ଚିର ଅବିଚଳିତ ହେମପ୍ରଭା କାନ୍ଦି ଭସେଇ ଦେଲେ । କିଏ ଜାଣେ ତାପସୀ ଆଖିର ଖବର କ'ଣ ? ପିତାମହୀର ଛାତିର ଆତୁଆଳରେ ଢ଼ାଙ୍କି ହୋଇ ପଡ଼ିଛି, ସେଇଥିପାଇଁ ହୁଏତ ଲୋକ ଚକ୍ଷୁରେ ମାନ ସଂଭ୍ରମଟା ବଜାୟ ରହିଲା ।

ଗାଧୋଇବା ଖାଇବା ପରେ ହେମପ୍ରଭା ତାହାକୁ ପାଖରେ ଧରି ବସିଲେ । ତାପସୀର ଏହି ଆସିବାଟା ଯେ କେବଳ ମାତ୍ର ନାନୀର କାଶୀପ୍ରାପ୍ତି ହେବାର ଭୟରେ, ଦର୍ଶନ ଲାଭ ଆଶାରେ ଛୁଟି ଆସିବା ନୁହେଁ, ସେତକ ବୁଝିବାର କ୍ଷମତା ହେମପ୍ରଭାର ଅଛି ।

କିନ୍ତୁ ତାପସ କେବଳ ହସି ଉଡ଼େଇ ଦେଉଛି । କହିଲା– ଭଲ ବିପଦରେ ଆସି ପଡ଼ିଲି, ଏମିତି ଜାଣିଥିଲେ ଆସି ନଥା'ନ୍ତି । ନାବାଳକ ଥିଲି ଏକା ଆସିବାକୁ ସାହସ ହେଉନଥିଲା । ଏବେ ସାବାଳକ ହୋଇଛି ସେଇଥିପାଇଁ ଥରେ ଆସିଲି ।

ହେମପ୍ରଭା ହସି ହସି କହିଲେ— ହଠାତ୍ ସାବାଳକ ହୋଇ ଉଠିଲୁ କାହା ଜୋହରରେ ? ତୋ ମା କବଳରୁ କେହି ସାବାଳକ ହେବ ସହଜ କଥା ନୁହେଁ ।

– ମା'କୁ ତୁମେ ଠିକ୍ ଚିହ୍ନିଥିଲ ନାନୀ ନୁହେଁ ? ସତରେ ଅନେକ କ୍ଷମତା ଦରକାର । ସେଇଥିପାଇଁ ତ ପଳେଇ ଆସିଲି ।

– ସେହି କଥାଟା କହ– 'ପଳେଇ ଆସିଲୁ' ! ଆଚ୍ଛା ବର୍ତ୍ତମାନ ତୋର ସବୁକଥା କହ ମୁଁ ଶୁଣିବି ।ଅଭି, ବାବୁଲ କେତେଦୂର କ'ଣ ପଢ଼ିଲେ ? ତୁ କ'ଣ କରୁଛୁ ? ସରକାରବାବୁ ଚିଠିରୁ କେତେବେଳେ କେମିତି ଟିକିଏ ଭସା ଭସା ଖବରପାଏ ମାତ୍ର ।

ହେମପ୍ରଭାର କେମିତି ଗୋଟାଏ ଧାରଣା ହୁଏ- ତାପସୀ ବଡ଼ ହାଇ ବୁଦ୍ଧି ବିବେଚନାର ଅଧିକାରିଣୀ ହୋଇଛି, ଏତେଦିନେ ନିଜ ଜୀବନର ଗୋଟାଏ ସୁବ୍ୟବସ୍ଥା କରିବା ପାଇଁ ହେମପ୍ରଭା ପାଖକୁ ଆସିଛି, ସେହି ବିବାହ-ଅଭିନୟ ନାୟକର ସମ୍ବାଦ ହୁଏତ ସଂଗ୍ରହ କରିବାକୁ ।

ଗୁରୁଦେବ ରକ୍ଷା କରିଛନ୍ତି ଚିତ୍ରଲେଖା ଆକ୍ରୋଶ ମନୋଭାବ ନେଇ ଆଉ ଗୋଟାଏ ବିବାହ ଦେବାକୁ ଚେଷ୍ଟା କରି ନାହିଁ । ଯେତେ ଯାହା ହେଲେ ବି ହିନ୍ଦୁ ଘରର ଝିଅତ ! କିନ୍ତୁ ସତରେ ଯଦି ପ୍ରଶ୍ନକରେ ତାପସୀ ତାହେଲେ କି ସଦୁର ଦେବ ହେମପ୍ରଭା ? ବୁଲୁର ସନ୍ଧାନ ନେବା ପାଇଁ କେତେବାର ଚେଷ୍ଟା କରିଥିଲେ ସିଏ କିନ୍ତୁ ଯୋଗାଡ଼ କରିପାରିଲେ କେଉଁଠି ? ପ୍ରତ୍ୟେକଥର ସରକାରବାବୁ ଲେଖନ୍ତି— ''ଶୁଣିବାକୁ ମିଳେ ପିଲାଟି ପଢ଼ା ପଢ଼ି କରିବା ପାଇଁ ବିଲାତ ଯାଇଛି ।''

ଵିଲାତକୁ ପଢ଼ିବାକୁ ଗଲେ କେତେକାଳ ଲାଗେ ? କ'ଣ ସେ ପଢ଼ା ? ଏସବୁ ଖବର ସଂଗ୍ରହ କରବାକୁ ଆଉ ଚେଷ୍ଟା କରି ନାହାନ୍ତି ହେମପ୍ରଭା । କ'ଣ ପ୍ରୟୋଜନ ତାହାଦ୍ୱାରା କାହାରି କଛି ହେବାର ଆଶା ଯେତେବେଳେ ନାହିଁ । ଚିତ୍ରଲେଖାର ଇଛାଥିଲେ ସେ ଖୋଜଖବର ନେଇ ଝିଅ ପଠେଇବ । ଇଚ୍ଛା ନହେଲେ- ତାପସୀ ଭାଗ୍ୟ ।

ଅନେକ ଭାବି ଭାବି ନିଜକୁ 'ନିମିତ୍ତ ମାତ୍ରର ଭଗୀ' ବୋଲି ମନେକରିବାଟା ଅନେକ ଦିନରୁ ଛାଡ଼ି ଦେଇଛନ୍ତି । ଆଜି ସହସା ତାପସୀକୁ ଦେଖି ଅପରାଧ –ବୋଧଟା ନୂଆଭାବରେ ମୁଣ୍ଡ ଉପରକୁ ଉଠି ଆସିଛି । ଦୋଷ ଯାହାର ହେଉନା କାହିଁକି ଏମିତି ସୁନ୍ଦର ଝିଅଟା ମାଟି ହୋଇଗଲା । କି କୁ-କ୍ଷଣରେ ନାମ ରଖିଥିଲେ 'ତାପସୀ' । ତପସ୍ୟା କରି ଜୀବନ ଯିବ । ନିଜ ସଂସ୍କାରର ଦୃଷ୍ଟିଦେଇ ବିଚାର କଲେ ହେମପ୍ରଭା । ଏହାଛଡ଼ା ଆଉ କ'ଣ ହେବା ସମ୍ଭବ ସେ ଚିନ୍ତା ମୁଣ୍ଡରେ ପଶୁନାହିଁ ।

ବହୁଯୁଗ ସଞ୍ଚିତ ପୁରୁଷାନୁକ୍ରମିକ ସଂସ୍କାର ।

ଯେଉଁ ସଂସ୍କାର ଶାସନରେ ଲୋକେ ବାଲ୍ୟବିଧବାକୁ ଅନାୟସରେ ମାନି ନିଅନ୍ତି । ପତି ପରିତ୍ୟକ୍ତାର ଭାଗ୍ୟକୁ ଧିକ୍କାର ଦେଇ ନିଶ୍ଚିନ୍ତ ରହନ୍ତି ।

ଏତେକଥା ଭାବିବାକୁ ଅବଶ୍ୟ କେତେ ସେକେଣ୍ଡ ସମୟ ମାତ୍ର ଲାଗିଛି । ତାପସୀ ପ୍ରାୟ ନାନୀର ପ୍ରଶ୍ନର ଉତ୍ତର ଦେଇ କହିଲା– ଅଭି ଡାକ୍ତରୀ ପଢୁଛି, ବାବୁଲ ଇଞ୍ଜିନିୟରିଙ୍ଗ କଲେଜରେ ନାମ ଲେଖେଇଛି । ସେମାନଙ୍କ ପାଇଁ ତ ମା'ର ବହୁତ କିଛି ଇଚ୍ଛାଥିଲା, ହେଲା ଆଉ କେଉଁଠି ?

– କେତେ ଖର୍ଚ୍ଚ ଲାଗେ ?

ମନୀନ୍ଦ୍ରର ଅଭାବଟା ଦୁଇଜଣଙ୍କ ମନ ଭିତରେ ଚେଇଁଉଠେ ସ୍ପଷ୍ଟ କରି ଉଚ୍ଚାରଣ କରିବାକୁ ଇଚ୍ଛା ହୁଏ ନାହିଁ । କେତେ ମିନିଟ ନୀରବ ରହି ହେମପ୍ରଭା କହିଲେ– ଆଉ ତୁ କ'ଣ କରୁଛୁ ?

– ମୁଁ ? ତାପସୀ ହସି ହସି କହିଲା – ମୁଁ ନିରୋଳା ବେକାର– କଲେଜ କବଳରୁ ବାହାରିବା ପର୍ଯ୍ୟନ୍ତ ଗୋଟାଏ ଚାକିରି ବାକିରିରେ ପଶିଯିବାକୁ ଛଟ୍‌ପଟ୍ ହେଉଛି କିନ୍ତୁ ମା'ର ଶାସନରେ କିଛି ହୋଇପାରୁନାହିଁ ।

ଫଳରେ ଖାଉଛି-ପିଉଛି ଶାଢ଼ୀ ଗହଣା ପିନ୍ଧି ଘୂରି ବୁଲୁଛି ।

ହେମପ୍ରଭା ଭ୍ରୂକୁଞ୍ଚିତ କରି କହିଲେ– ଚାକିରିରେ ପଶିବୁ ବୋଲି ଛଟପଟ ହେଉଛୁ । ତୁ ଚାକିରି କରିବୁ ?

– କରିବି ନାହିଁ କାହିଁକି କହ ? ଦୋଷ କ'ଣ ? ଜୀବନଟା ଏମିତି ଫାଙ୍କାରେ ଫାଙ୍କାରେ ବିତିଯିବ ! ବାପ ମା'ଙ୍କର ଏତେ ଟଙ୍କା କଉଡ଼ି ଖରଚ କରି ଲେଖାପଢ଼ି ଶିଖିଲି ସେ ଗୁଡ଼ା ଏମିତି ବାଏଁ ବାଏଁ ଉଡ଼ିଯିବ ?

ନାତୁଣୀ କଥାରେ ଧୈର୍ଯ୍ୟଚ୍ୟୁତ ହେଲେ ହେମପ୍ରଭା । ପରିହାସ ଛଳରେ ନିତାନ୍ତ ଅବହେଳାରେ ଉଚ୍ଚାରିତ ତାପସୀ ଜୀବନର ଏହି ମର୍ମାନ୍ତିକ ସତ୍ୟଟା ଯେମିତି ଚାବୁକ ମାରିଲା ତାଙ୍କୁ ।

ସତେତ ଜୀବନଟା ବ୍ୟର୍ଥତାରେ କଟିଯିବାର ଏତେ ପ୍ରଚଣ୍ଡ ଦୃଷ୍ଟାନ୍ତ ଏ ସମୟରେ ଆଉ କିଏ କ'ଣ ଦେଖୁଛି ?

ଅବାଧ ଆଖିର ଅଶ୍ରୁକୁ କିଛି ପରିମାଣରେ ଝରିବାକୁ ଦେଇ ହେଛିପ୍ରଭା ଗଭୀର ଆକ୍ଷେପ ସ୍ୱରରେ କହିଲେ– ସେ କଥା ତୁ କହିପାରିଲୁ ତାହାହିଁ ଠିକ୍; କିନ୍ତୁ ଆରେ ତୋର ମା' କ'ଣ ସେହି ହତଭାଗା ଟୋକାଟାର କିଛି ଖୋଜ ଖବର ନିଏ ନାହିଁ ?

ତାପସୀ କଥାଟା କହି ପକେଇ ଯେଉଁ ଟିକକ ଅପ୍ରତିଭ ହୋଇଥିଲା, ସେତକ ସମାଳି ନେବାର ସୁଯୋଗ ପାଇ ଯେମିତି କୌତୁକ ସହକାରେ ହସି ଉଠିଲା । ହସିପକେଇ କହିଲେ- କାହିଁକି, କେଉଁ ଦୁଃଖରେ ? ମୋର ମା' ଏମିତି ହତଭାଗା ଲୋକମାନଙ୍କୁ ଖୋଜିବାର ଝିଅ ନୁହେଁ । ଖୋଜି ଖୋଜି ରାଜ୍ୟରେ ଯେତେ ଭାଗ୍ୟବାନ ଅଛନ୍ତି ତାଙ୍କୁ ଆଣି ହାଜର କରୁଛି, ଯଦି କିଛି ସୁବିଧା ହୋଇପାରେ । ମୁଁ ଗୋଟାଏ ରାବିଶ !

କଥାଟା ମିଛି ନୁହେଁ । ଝିଅ ଥାର୍ଡ଼ଇୟରରେ ପଢ଼ିବା ବର୍ଷରୁ ଚିତ୍ରଲେଖା ମଝିରେ ମଝିରେ ଗୋଟିଏ ଅଧେ ସମ୍ଭାବିତ ପାତ୍ର ଖୋଜି ଆଣି ଝିଅର ଆଖିଆଗରେ ଠିଆ କରାଏ । ତେବେ ତାପସୀର ମନର ଛୁଆଁ ପାଇବା କାହାରି ଭାଗ୍ୟରେ ଘଟେ ନାହିଁ । ଏଇ ଯା ଦୁଃଖ । ତାପସୀର ସହଜ ପ୍ରସନ୍ନତାର କଠିନ ବର୍ମରେ ଆଘାତ ପାଇ ସେମାନଙ୍କର ସମସ୍ତ ପ୍ରକାର ଅସ୍ତ୍ର ଫେରିଯାଇଛି ।

ଅଥଚ ମା'ର ଏହି ଚେଷ୍ଟା ପାଇଁ ଝିଅ କୌଣସି ଦିନ ଅନୁଯୋଗ କରିନାହିଁ । ସେଇଟା ହିଁ ଚିତ୍ରଲେଖା ପକ୍ଷରେ ଆହୁରି ଅସୁବିଧା । କଥା କଟାକଟି ଯୁକ୍ତିତର୍କ ବହୁବାର ହୁଏ । କିନ୍ତୁ ଦେବିର ଅଦ୍ଭୁତ ଚାଲ୍ ଯେମିତି ସେ ବୁଝିବାକୁ ଅକ୍ଷମ ।

କେବଳ ଏହି କିରୀଟୀ ବେଳକୁ ଘଟଣାର ସ୍ରୋତ ଉଜାଣି ବହିଛି ଓ ଆଗେଇଛି । ଆତ୍ମପ୍ରସାଦ୍-ପ୍ରସନ୍ନ ଚିତ୍ରଲେଖା ଭାବି ସନ୍ତୁଷ୍ଟ ଥିଲା ଯେ ଯାହେଉ ଏତେଦିନେ ମନକୁ ମାନିଲା ପରି ପିଲାଟେ ସେ ଯୋଗାଡ଼ କରି ଆଖି ଆଗକୁ ଆଣିପାରିଛି । ଝିଅର ପସନ୍ଦ ହୋଇଛି । ସେଇଥିପାଇଁ ଏତେଦିନଧରି ସେ ଆଉ କାହାକଥା ଭାବିନାହିଁ । କିନ୍ତୁ ଶେଷ ରକ୍ଷା ହେଲା ନାହିଁ ।

ତାପସୀର କଥାଶୁଣି ମିନିଟିଏ ଖଣ୍ଡ ଗୁମ୍ ହୋଇ ବସିଗଲେ ହେମପ୍ରଭା । 'ଯେତେହେଲେ ହିନ୍ଦୁଝିଅ' ଏହି କଥା ପାଇଁ ନିଜର ମନକୁ ଯେତେ ଆଖିଠାର ମାରିଲେ ମଧ ଏମିତି ଆଶଙ୍କା କ'ଣ ତାଙ୍କ ମନ ଭିତରେ ନଥିଲା ? ତାପସୀର ସିନ୍ଦୂର ବିହିନ ସୀମନ୍ତ ଦେଖି କିଛି ସମୟପାଇଁ ଆଶ୍ୱସ୍ତ ହୋଇଥିଲେ ମାତ୍ର । ସିନ୍ଦୂର ବିହିନତା ଆଖିରେ ପଡ଼ିଲେ ମଧ ନୂତନ ପ୍ରଲେପ ଯେ ପଡ଼ିନାହିଁ ଏଇ ଢ଼େର୍ । ଏଇ ସଂସ୍କାରଟାକୁ ଉଡ଼େଇ ଦେଇ ଅସ୍ୱୀକାର କରିବାକୁ ଚାହୁଁଛି କରୁ, ବିବାହଟାକୁ ଅସ୍ୱୀକାର କରିନାହିଁ ତ !

ଏହି ନୂଆ ସମ୍ବାଦରେ କିଛି ପରିମାଣରେ ଚୁପ୍‌କରି ରହିବାପରେ ତୀକ୍ଷ୍ଣସ୍ୱରରେ ପ୍ରଶ୍ନକଲା– ସୁବିଧା କିଛି ହେଲାନାହିଁ କାହିଁକି ?

ଅର୍ଥାତ୍ ନାତୁଣୀର ମନଟା ଜାଣିବାକୁ ଚାହାନ୍ତି ।

ତାପସୀ ଭଲ ମଣିଷ ବୋଲି ବୋକୀ ନୁହେଁ । ପିତାମହୀର ମନୋଭାବ ବୁଝିବାକୁ ଡେରି ହେଲାନାହିଁ । ମୁହଁରେ ସେମିତି ହସ ଫୁଟେଇ କହିଲା– ହେଲା ଆଉ କେଉଁଠି ? ଭାଗ୍ୟଟା ଯେ ମନ୍ଦ । ଆହା ବିଚରା କେତେ ଚେଷ୍ଟାରେ, କେତେ ଯତ୍ନରେ ବଜାରର ଶ୍ରେଷ୍ଠ ମାଣିକଟି ଆଣି ଗଳାରେ ଝୁଲେଇ ଦେଇଥିଲା । ମତେ ବରଦାସ୍ତ ହେଲା ନାହିଁ । ପଳେଇ ଆସି ପ୍ରାଣ ବଞ୍ଚେଇଲି ।

– ଆହା..... ଏ ଝିଅକୁ ପୁଣି ସେ ସନ୍ଦେହ କରୁଥିଲା । ସତୀଝିଅ ମା'ର ଅନ୍ୟାୟ ଉତ୍ପୀଡ଼ନରେ ଶେଷକୁ ଘର ଛାଡ଼ିବାକୁ ବାଧ୍ୟ ହେଲା । ମୋ ସୁନାରେ ! ବିଗଳିତ ସ୍ନେହରେ ହେମପ୍ରଭା ତାହାକୁ ପ୍ରାୟ କୋଳକୁ ଟାଣିନେଇ କହିଲେ ମାଆରେ କି କଷ୍ଟ ନ ପାଇଲୁ ତୁ ମରିଯାଉଥାଏ ମୁଁ ! ଦେଖୁଛି ଭଗବାନ ସଂସାରରେ ପୁଣି ମତେ ଘଣ୍ଟେଇବାକୁ ଚାହୁଁଛନ୍ତି । କର୍ତ୍ତବ୍ୟରେ ମସ୍ତ ତ୍ରୁଟି ରଖି ଏଠାରେ ତାକୁ ନିଶ୍ଚିନ୍ତରେ ଡାକିବାକୁ ବସିଲେ ଉଚିତ ହେବନାହିଁ । ଯା ହେଉ ପଛେ ତୁ ଯେ ପଳେଇ ଆସି ଏଠାରେ ପହଞ୍ଚିଛୁ, ଭଲ କରିଛୁ । ଦେଖେ ମୋ ଦ୍ୱାରା କ'ଣ ହୋଇପାରିବ– ?

ରାଣ ଖାଉଛି ନାନୀ ଆଉ କିଛି କରିବା ପାଇଁ ଚେଷ୍ଟା କରନା । ଗୋଟାଏ କିଛି ଚାକିରି ବାକିରି ଖୋଜି ନେବା ପର୍ଯ୍ୟନ୍ତ ତୁମ ପାଖରେ ରହିବାକୁ ଖାଲି ଟିକିଏ ଜାଗାଦିଅ । ତା ହେଲେ ହେବ ।

– ମୋ ଉପରେ ତୋର ବଡ଼ ଅବିଶ୍ୱାସ ନା ? ତା ଅବଶ୍ୟ ହୋଇପାରେ । କିନ୍ତୁ ଭୁଲକୁ ସଂଶୋଧନ କରିବାକୁ ସୁଯୋଗ ଥରେ ଦେବା ଦରକାରତ । ଚାକିରି କଥା ମୁହଁରେ ଧରନା ମୋ ସାମ୍ନାରେ । ମୋ ପାଖରେ ଦୁଇ ଦିନ ରହିବାକୁ ତୋ ମା' ଦେଉ । ଥାନା ପୋଲିସ କରି ଛଡ଼େଇ ନ ନେଇ ଯାଉ ।

– ବାଃ ମା' କେମିତି ଜାଣିବ ମୁଁ ଏଠାରେ ଅଛି ? ହେମପ୍ରଭା ଆଶ୍ଚର୍ଯ୍ୟ ହୋଇ କହିଲେ– ଏକବାର କିଛି ନ କହି ପଳେଇ ଆସିଛୁ ନା କ'ଣ ?

– ନା ତ ।

– ଛି ଛି ଏ କାମଟା ତ ତୋର ଭଲ ହୋଇନାହିଁ ତାପସ । ମୁଁ ସିନା ବୁଝୁଛି ତୁ ମା' ଉପରେ ରାଗି ପଳେଇ ଆସିଛୁ । ଲୁଚି ଲୁଚି ପଳେଇ ଆସିଛୁ ତା ହେଲେ ? ବଡ଼ ନିର୍ବୁଦ୍ଧିର କାମ କରିଛୁ ।

ତାପସୀ ମ୍ଳାନହସ ହସି କହିଲା– ମୋ ଅବସ୍ଥାରେ ଯଦି ତୁ ପଡ଼ିଥା'ନ୍ତୁ ତାହେଲେ ଦେଖିଥା'ନ୍ତି ତୋର କେତେ ବୁଦ୍ଧି ଖୋଲି ଥା'ନ୍ତା ।

– ବୁଝୁଛି । ଅନେକ ଯନ୍ତ୍ରଣା ନପାଇଲେ ଏମିତି କାମ କରି ନଥାନ୍ତୁ ତୁ । ଶୁଣିବି, ସବୁ ଶୁଣିବି ରାତିରେ । କିନ୍ତୁ ବର୍ତ୍ତମାନ ତ କଲିକତାକୁ ଗୋଟାଏ 'ତାର' କରିଦେବା ଦରକାର ।

– ବାଃରେ, ବେଶତ୍ ତ ! ମୁଁ ବୋଲି କେତେ କଷ୍ଟ କରି ଲୁଚି ଲୁଚି ପଳେଇ ଆସିଲି । ତୁ ସାଙ୍ଗେ ସାଙ୍ଗେ ଖବର ଦେଇଦେବୁ ମୁଁ ଏଠାର ଲୁଚିଛି ବୋଲି !

ହେମପ୍ରଭା ହସିପକେଇ କହିଲେ– ଆଚ୍ଛା ତବେ କିଛି କହିବାକୁ ହେବ ନାହିଁ । ମୁଁ କାହାକୁ ପଠେଇ ଅଭି ପାଖକୁ 'ତାର' କରି ଦେଉଛି । ସ୍ତ୍ରୀ ଜାତି ଯେ ଏକ ସର୍ବନାଶି ପରାଧୀନ ଜାତି । ରାଗକରି ଘର ଛାଡ଼ି ପଳେଇବାର ସ୍ୱାଧୀନତା କ'ଣ ଅଛି ସେମାନଙ୍କର ? ଘରେ ସମସ୍ତେ ସନ୍ଦେହ କରିବେ । କେହି ବିଶ୍ୱାସ କରିବେ ନାହିଁ ଏକଲା ପଳେଇ ଆସିଛୁ ବୋଲି । ମୋ ପାଖରେ ଆସି ପହଞ୍ଚି ଯାଇଛୁ ରକ୍ଷା ହୋଇଯାଇଛି । ଯେତେ ଶୀଘ୍ର ଖବର ଦିଆଯିବ ସେତେ ମଙ୍ଗଳ । ଯାଏ ଦେଖେ ରାଜେନ ଘରେ ଅଛିକି ନାହିଁ ?

ରାତିରେ ଦୁଇଜଣଯାକ ବିଛଣାରେ ଶୋଇ ପ୍ରାୟ ଉଜାଗର ରହି ଭୋର ହୋଇଗଲା । ଖୁଣ୍ଟିନାଣ୍ଟି ନାନା ପ୍ରଶ୍ନ ପଚାରି ତାରି ସାହାଯ୍ୟରେ ଅନେକ କଥା ଆବିଷ୍କାର କଲେ ହେମପ୍ରଭା ।

ମନଟା ଯେ ଖୁବ ପ୍ରସନ୍ନ ରହେ, ଏମିତି କୁହାଯାଇ ପାରିବ ନାହିଁ । ନିଜର ଅବସ୍ଥା ଏବଂ ଘଟଣାର ବର୍ଣ୍ଣନା କରି ମିଷ୍ଟର ମୁଖାର୍ଜୀ ନାମଧାରୀ ବ୍ୟକ୍ତିଟିର ସମ୍ବନ୍ଧେ ଯେତେକ ଉଦାସୀନତା ପ୍ରକାଶ କଲା ତାପସୀ । ମା'ର ସେହି ପରମ ଅମୂଲ୍ୟ ରତ୍ନ ସଂପର୍କରେ ଯେତେ ଯାହା କହିଲେ ମଧ, ତୀକ୍ଷ୍ଣବୁଦ୍ଧିମତୀ ପିତାମହୀଙ୍କ ଦୃଷ୍ଟି ସାମନାରେ ତାହାର ପ୍ରକୃତ ମନର ଚେହେରା ଧରା ପଡ଼ିବାକୁ ଡେରି ହେଲା ନାହିଁ । ତାହାର ଏଇ ପଳାୟନ ମା'ର ଜବରଦସ୍ତି ପାଖରେ ଅସହାୟ ହୋଇ ନୁହେଁ, ନିଜ ହୃଦୟ ନିକଟରେ ଅସହାୟତା ! ସତ୍ୟର ମୁହାଁ ମୁହିଁ ହୋଇ ଆତ୍ମରକ୍ଷା କରିବାକୁ ଅକ୍ଷମ ହୃଦୟ ନେଇ ପଳେଇ ଯିବାଟା ଅସୁନ୍ଦର ହେଲେ ମଧ ଥରେ ସେ ଧିକ୍କାର କରି ପାରିଲେ ନାହିଁ ।

ଆହୁରି କଠିନ ଆହୁରି ଦୃଢ଼ ହେଲେ ଅବଶ୍ୟ ଭଲ ହୋଇଥା'ନ୍ତା, କିନ୍ତୁ ଏଇ ଶୋଭା ସମ୍ପଦମୟୀ ଧରଣୀରେ ଜଗତର ଯାବତୀୟ ଭୋଗ ଉପକରଣର ମଧ୍ୟବର୍ତ୍ତି ସ୍ଥାନରେ ବସି ଏହି ଅପରୂପ ରୂପଯୌବନର ଡାଲାଟିକୁ ଅଦୃଶ୍ୟ ଦେବତା ଉଦ୍ଦେଶ୍ୟରେ ଉତ୍ସର୍ଗ କରି 'ଦେବୀ' ହେବାଟା କ'ଣ ଏତେ ସହଜ ! ବାଳବିଧବାଙ୍କର କୃଚ୍ଛ୍ରସାଧନା ତ ଭାଗ୍ୟର ବରାଦ ।

କେତେଦିନ କଟିଗଲା । ଚିତ୍ରଲେଖା ପାଖରୁ ଟେଲିଗ୍ରାମରେ ହିଁ ସଂକ୍ଷିପ୍ତ ଜବାବ ଆସିଥିଲା ଧନ୍ୟବାଦ । ନିଶ୍ଚିନ୍ତ । କନ୍ୟାର ପ୍ରଚଣ୍ଡ ଦୁର୍ବ୍ୟବହାରରେ ଚିତ୍ରଲେଖା କେମିତି ପଥର ହୋଇଯାଇଛନ୍ତି, ଭାଷାଟା ତାହାର ନିଦର୍ଶନ ।

ତେବେ ପିତାମହୀ ସାଙ୍ଗରେ ସମସ୍ତ କାଶୀ ସହରଟା ପ୍ରଦକ୍ଷିଣ କରି ଏବଂ ଅସଂଖ୍ୟ ଦେବମୂର୍ତ୍ତି ଦର୍ଶନ କରିବାକୁ ମନ୍ଦ ଲାଗେନା, ଅନାସ୍ୱାଦିତ ବୈଚିତ୍ର୍ୟ । କାଶ ବଜାରରୁ କିଣା ସାଦା ସିଧା କେତେଟା ଶାଢ଼ୀ ଜାମା- ଚିତ୍ରଲେଖା ପାଖରେ ଯାହା ଏକାନ୍ତ ଦୀନବେଶ ସେଇଆକୁ ପିନ୍ଧି ଆନନ୍ଦରେ ଘୂରିବୁଲେ ତାପସୀ । ଯେଉଁ ମୂଲ୍ୟବାନ ନୂତନ ରେଶମୀ ଶାଢ଼ୀ ଖଣ୍ଡ ନିର୍ବନ୍ଧ ଦିନ ପିନ୍ଧିଥିଲା ସେ ଖଣ୍ଡେ ନିତାନ୍ତ ଅନାଦରରେ ଦଉଡ଼ିର ଆଲଣାରେ ଝୁଲି ରହି ଧୂଳି ଖାଉଥିଲା ।

ଏତେ ବୁଲିବାରେ ଅନଭ୍ୟସ୍ତ କ୍ଲାନ୍ତ ହେମପ୍ରଭା ରାତିରେ ବିଛଣାରେ ପଡ଼ିବା ସଙ୍ଗେ ସଙ୍ଗେ ମଢ଼ାପରି ଶୋଇ ପଡ଼ନ୍ତି, ଜାଣିପାରନ୍ତି ନାହିଁ ପାର୍ଶ୍ୱବର୍ତ୍ତିନୀର ଫୁଲକୋମଳ ଦେହ ଖଣ୍ଡକରେ କିପରି ଉତ୍ତାଳ ସମୁଦ୍ର ଢେଉ ଭାଙ୍ଗୁଛି, ଦୂରନ୍ତ କାଳ ବୈଶାଖୀର ଝଡ଼ ବହୁଛି ।

ବିନିଦ୍ର ରଜନୀର ସାକ୍ଷୀ ସେହି ବିନିଦ୍ର ନକ୍ଷତ୍ରର ଦଳ । କୋଟି କଳ୍ପକାଳ ଧରି ଯେଉଁମାନେ ବହୁ କୋଟି ମଣିଷର ବିନିଦ୍ର ରଜନୀର ହିସାବ ରଖି ଆସିଛନ୍ତି ।

କେତେଦିନ ପରେ ।

ଗଙ୍ଗାସ୍ନାନ କରିବାକୁ ଯିବା ପୂର୍ବରୁ ହେମପ୍ରଭା ସୁଦୃଶ୍ୟ ଖଣ୍ଡିଏ ଓଜନିଆ ଲଫାପା ହାତରେ ଧରି ନାତୁଣୀକୁ ଉଦ୍ଦେଶ୍ୟକରି କହିଲେ– ଏଇ ନେ ତୋର ଚିଠି ।

ଠିକଣାଟା ଟାଇପ୍ କରାହୋଇଛି । ହାତଲେଖା ହୋଇଥିଲେ ସେ ଅନ୍ତତଃ ଅନୁମାନ କରନ୍ତା କିଏ ଦେଇଛି ? ସେଟାର ଆଶା ନାହିଁ । ଗୋଟାଏ ଆଶା ଓ ଆଶଙ୍କାରେ ଛାତିଟା ଧଡ଼ ପଡ଼ କରିବାକୁ ଲାଗିଲା ତାପସୀର । ହାତ ବଢ଼େଇ ଆଣିବାର କ୍ଷମତା ପର୍ଯ୍ୟନ୍ତ ନାହିଁ ।

– କାହିଁ ଖୋଲିଲୁ ଦେଖି କ'ଣ ଲେଖିଛି, କାହାର ଚିଠି ?

– ବୁଝିପାରୁ ନାହିଁ କହି– ତାପସୀ ମୁଦାଲଫାପଟାକୁ ଓଲଟ ପାଲଟ କରିବାକୁ ଲାଗିଲା । ଖୋଲିବାର ଲକ୍ଷଣ ଦେଖାଇଲା ନାହିଁ ।

– ଖୋଲିକରି ଦେଖ୍‌ନା– "ହାତରେ ପାଞ୍ଚି ଶୁଭଦିନର ଦରକାର ପୁଣି କାହିଁକି ? ଏ ବୋଧହୁଏ ତୋ ମା'ର ସେହି ଅମୂଲ୍ୟ ରତ୍ନ ମିଷ୍ଟର ମୁଖୁଜ୍ୟେର ଚିଠି ପରି ଜଣାଯାଉଛି ।" ତାପସୀ ବିଚାରୀ ଏତେଦୂର ଦୂରାନ୍ତକୁ ପଳେଇ ଆସି ପ୍ରାଣ ବଞ୍ଚେଇଛି, ସେଥିରେ ବି ନିସ୍ତାର ନାହିଁ । ତୁ ଖୋଲତ ଦେଖିବା କ'ଣ ଲେଖିଛି ସେ ! କଡ଼ାକରି ଉତ୍ତର ଦେଇଦେବୁ ବୁଝିଲୁ ? ଲେଖିବୁ ତୁମ ସାଙ୍ଗରେ ମୋର କୌଣସି ସଂପର୍କ ରଖିବାର ଇଚ୍ଛା ନାହିଁ ।

ତାପସୀ ଉତ୍ତର ଦେଲା ନାହିଁ, ହୁଏତ ଦେଇପାରିବ ନାହିଁ । ଝାଳରେ ଓଦା ହୋଇଥିବା ହାତମୁଠା ଭିତରେ ଚିଠିଟାର ଅବସ୍ଥା ଶୋଚନୀୟ ହୋଇଗଲାଣି ।

ହେମପ୍ରଭା ତୀକ୍ଷ୍ଣଦୃଷ୍ଟିରେ ନାତୁଣୀ ମୁହଁର୍ ଚେହେରାଟା ଦେଖିନେଇ କହିଲେ– ଅବଶ୍ୟ ତୁମର ମନବୁଝା କଥା । ଦେହଟା ନେଇ ପଳେଇ ଆସିହୁଏ କିନ୍ତୁ ମନଟାକୁ ନେଇ ଆସି ହୁଏନା । ତୁ ଯଦି ତୋର ସେହି ଧାଙ୍ଗିଡ଼ୀ ମା'ର ଇଚ୍ଛାନୁସାରେ ସେଇ ଟୋକାଟାକୁ....ଦୁର୍ଗା....ଦୁର୍ଗା ! ରହ ମୋର କିଛି କହିବାର ନାହିଁ । ନିଜ ବିବେକ ଅନୁସାରେ କାମ କରିବାର ସାହସ ଆଉ ନାହିଁ । ଯାହା ଭଲ ବୁଝିବ ତାହା କରିବ ।

ଅନ୍ୟମନସ୍କ ତାପସୀ ବୋଧହୁଏ ଜେଜେମା'ର ଶ୍ଳେଷଟା ବୁଝିଲେ ମଧ କାରଣଟା ହୃଦୟଙ୍ଗମ କରିପାରିଲା ନାହିଁ । ଅସହାୟ ଅନ୍ୟମନସ୍କ ସ୍ୱରରେ କହିଲା – ମୋ ପାଇଁ କେହିତ କୌଣସି ଦିନ କିଛି ବିବେଚନା କଲେ ନାହିଁ ନାନୀ ! ତୁ କାଶୀ ପଳେଇ ଆସିଲୁ, ବାପା ଚିରଦିନ ପାଇଁ ସଂସାରରୁ ବିଦାୟନେଲେ, ମୁଁ ବନ୍ଦୀ ହେଲି ମା' ହାତରେ । ସ୍ୱପ୍ନର ବର ସ୍ୱପ୍ନ ହୋଇ ରହିଲା, ମୁଁ କ'ଣ କରିବି କହତ !

ହେମପ୍ରଭା ଆହତ ହୋଇ ଅପ୍ରତିଭଭାବେ କହିଲେ– ଜାଣେ ତାପସ ତୋ ଉପରେ ସମସ୍ତେ ଅବିଚାର କରିଛନ୍ତି । ଦାରୁଣ ଅଭିମାନରେ ଘରୁ ପଳେଇ ଆସିଥିଲି, କର୍ତ୍ତବ୍ୟ ଠିକ୍ କରି ପାରିନି । ମନି ଯେତେବେଳେ ଚାଲିଗଲା, ସେତେବେଳେ ମୋର ଉଚିତ ଥିଲା ତୋର ବ୍ୟବସ୍ଥା କରିବା । ଡେରି ହୋଇଯାଇଛି, ଏଥର ମୁଁ ପାପର ପ୍ରାୟଶ୍ଚିତ୍ତ କରିବି । ତତେ ଥରେ ନେଇ କୁସୁମପୁର ଯିବି । କେହି ପଛେ ନଥା'ନ୍ତୁ କାନ୍ତି ମୁଖୁଜ୍ୟେର ପ୍ରତିଷ୍ଠିତ 'ରାଇବଲ୍ଲଭ' ମନ୍ଦିରତ ଅଛି ସେଇଠି ଯାଇ ଖୋଜିବି । ଦେଖେ ସେ ଟୋକା ତତେ କେମିତି ଅବହେଳା କରିବ ! ଶୁଣିଥିଲି ବିଲାତ-ଫିଲାତ

ଯାଇଛି ନା କ'ଣ ? ଭଗବାନ ଜାଣନ୍ତି ମେମ ଫେମ ବାହା ହୋଇଛି କି ନାହିଁ । ସେ ଯାହା କଲେବି ମୁଁ ତାକୁ ସହଜରେ ଛାଡ଼ିବି ନାହିଁ ।

ତାପସୀ ମୃଦୁହସି କହିଲା– ମଣିଷ ତ ଅମର ନୁହେଁ ନାନୀ । ତୁ ଦେଇଥିବା ଶାସ୍ତି ଭୋଗ କରିବାକୁ ମଣିଷ ବଂଚି ରହିଲେ ତ !

ହେମପ୍ରଭା ଶିହରି ଉଠିଲେ । ଠିକ୍ ଏଇ ଧରଣର ଗୋଟାଏ ଆଶଙ୍କା ନିଜର କ'ଣ ନାହିଁ ? ଭଲ କରି ତଲେଇ ଦେଖିଲେ ହୁଏତ ଏତେ ନିସ୍ପୃହ ହୋଇ ରହିବାର କାରଣ ମଧ ତାହା ହୋଇପାରେ । କୁମାରୀ ପରି ଅଛି ଥାଉ–ଢିଅା ଖୋଳିବାକୁ ଯାଇ ଶେଷକୁ ସାପ ବାହାର କରି ବସିବେ ?

କିନ୍ତୁ ଏ ଅବସ୍ଥା ଆଉ ସହନୀୟ ନୁହେଁ । କପାଳରେ ଯାହାଥାଉ, ଏଥର ସେ ଗାଆଁକୁ ଯିବେ । ଆଉ ଯାହାହେଉ ପଛେ ପିଉସୀ ଶାଶୁ ବୁଢ଼ୀଟା ନିଶ୍ଚୟ ବଂଚିଥିବ । ବିଧବା ଝିଅର ପ୍ରାଣ ତ ପଥର ପରି ସେ ଆଉ ଯିବାର ନୁହେଁ । କିଛି ସୁବିଧା ଯଦି ନ ହୁଏ ଆଚ୍ଛା କରି **ଦି'ପଦ** ଶୁଣେଇ ଦେବି ।

କାହିଁକି ? ଦୋଷ କ'ଣ କେବଳ ଏ ପକ୍ଷର । କାନ୍ତି ମୁଖୁଜ୍ୟେର ଅବିମୃଷ୍ୟକାରିତା ତାପସୀ ଜୀବନକୁ ମାଟିକରି ଦେବାର ଯଥାର୍ଥ କାରଣ ନୁହେଁ । ସେ ଭୁଲ ସଂଶୋଧନ କରିବାର ଚେଷ୍ଟା ତାଙ୍କର କରିବା ଉଚିତ ଥିଲା ।

ରାଜଲକ୍ଷ୍ମୀଯେ ଚେଷ୍ଟାରେ ତ୍ରୁଟି କରି ନାହିଁ ସେ କଥାଟା ନା ହେମପ୍ରଭା, ନା ତାପସୀ କେହି ଜାଣି ନାହାନ୍ତି । ଯାହାହେଉ ଭିତରେ ଭିତରେ ଯେତେ ଆଶଙ୍କା ଥାଉ ପଛେ ମୁହଁରେ ଦବି ନାହାନ୍ତି ହେମପ୍ରଭା । ଷଠୀ, ଷଠୀ କହି ଉଠିଲେ ହେମପ୍ରଭା, ପୁଣି କହିଲେ ଅଲକ୍ଷଣା କଥାଗୁଡ଼ା ମୁହଁରେ ପୁରାନା ତାପସ । ଦୁର୍ଗା.......ଦୁର୍ଗା ।

ମେମ୍ ମା' ପାଖରୁ ଏଇ ଶିକ୍ଷାଟା ପାଇଛୁ ନୁହେଁ ? ଯାହା ନାହିଁ ତାହା ପାଟିରେ ପୁରେଇବା । ମନେରଖ ସାବିତ୍ରୀ ଦେଶର ଝିଅ ତୁ । ଯମ ବାପର ମଧ ସାଧ ନାହିଁ ତୋ ଆଶାରେ ଧୂଳି ଦେବାକୁ ।

ତାପସୀ ଅବିଶ୍ୱାସର ହସ ହସିଲା ।

ହାତରେଥିବା ଲଫପାଟା ଖୋଲି ଦେଖିବାର ଆଗ୍ରହ ଯେମିତି ଶିଥିଳ ହୋଇଗଲା ସାବିତ୍ରୀ ଦେଶର ଝିଅ ସେ ? ସେଇଥିପାଇଁ ଏ କଥାଟା ଏତେ ସ୍ୱଷ୍ଟ କରି କେହି ଦିନେ ହେଲେ କହି ନାହିଁ ।

ଲଫାପାଟା ହାତମୁଠାଭିତରେ ସେମିତି କାତର ହୋଇଥାଏ । ଚିରି ଫୋପାଡ଼ି ଦେବାକୁ ମନରେ ଜୋର ନାହିଁ ତାପସୀର । ଯେହେତୁ ସାବିତ୍ରୀ ଦେଶର ଝିଅ କି ନା ?

ଗଙ୍ଗାସ୍ନାନର ସମୟ ଡେରି ହେଉଥିବା ଦେଖି ହେମପ୍ରଭା ଆଉ ଚିଠିର ବିଷୟ ବସ୍ତୁ ଦେଖିବା ପାଇଁ ଆଗ୍ରହ ପ୍ରକାଶ କଲେ ନାହିଁ । ଲୁଗାପଟା, ଝୁଲାମୁଣି ଧରି ବାହାରି ଗଲେ ।

ଆଉ ତାପସୀ ?

ଚିଠିଖଣ୍ଡର ବିଷୟବସ୍ତୁ ଜାଣିବାର ପ୍ରୟୋଜନ କ'ଣ ତା'ର ନାହିଁ ? ଜ୍ଞାନ ହେଲା ଦିନରୁ ସେ ଜାଣିଛି ସଂଗ୍ରାମ ହେଉଛି ଜୀବନର ସାଥୀ, ସ୍ପଷ୍ଟ କରି ତାହାର ମୁହାଁ ମୁହିଁ ଛିଡ଼ା ହୋଇଛି ତାପସୀ । ଲୋଭ ସାଙ୍ଗରେ ସତ୍ୟର ସଂଗ୍ରାମ, ବାସ୍ତବତା ସାଙ୍ଗରେ ସଂସ୍କାରର ସଂଗ୍ରାମ ।

ତାପସୀ କ'ଣ ହାର ମାନିବ ?

ହୃଦୟର ସମସ୍ତ ଶକ୍ତିକୁ ଆଙ୍ଗୁଳିରେ ନିମିଷକପାଇଁ କେନ୍ଦ୍ରିଭୂତ କରି ଲଫାପାଟାକୁ ଚିରିଦେଲେତ ସବୁ ଚୁକିଯିବ !

ଆଚ୍ଛା ଇମିତି ହୋଇପାରେ ସବୁ ସନ୍ଦେହ ଅମୂଳକ - ନିହାତି କିଏ ଗୋଟାଏ ବାଜେ ଲୋକର ଚିଠି ! ଲିଲିର ବା ନ ହେଇଥିବ କାହିଁକି ? ବନ୍ଧୁ ବୋଲି ଅବଶ୍ୟ କେହି ନାହାନ୍ତି ତାପସୀର, ତେବେ ଆତ୍ମୀୟତାର ସୂତ୍ରଧରି ଲିଲିତ ପଚାରିପାରେ- ତାପସୀ ଏମିତି ସୃଷ୍ଟିଛଡ଼ା ଭାବେ ପଳାଇ ଆସିବାର କାରଣ କ'ଣ ?

ଅଭି କ'ଣ ଗୋଟେ ଲମ୍ବାଚିଠି ଲେଖି ପାରିବ ନାହିଁ ?

ତାପସୀର ପଳେଇ ଆସିବାର ଅର୍ଥ ଜାଣିବାର ଅଧିକାର ତାହାର ମଧ ଅଛି ।

କିମ୍ବା ମା' ?

ତାପସୀ କିପରି ଭାବେ ତାଙ୍କ ମୁହଁରେ ଚୁନକାଳି ଲେପିଛି, ମୁଣ୍ଡଟାକୁ ତଳକୁ ନଇଁ ଦେଇଛି ସେଇଟା ଶୁଣାଇ ଦେବା ପରି ଉପଯୁକ୍ତ ଭାଷା ହୁଏତ ଏତେଦିନ ସଂଗ୍ରହ କରିଛି ସେ ।

ଟାଇପ୍ ମେସିନର ନିଷ୍ପ୍ରାଣ ଅକ୍ଷରଗୁଡ଼ା ନିତାନ୍ତ ନୀରବ ଦୃଷ୍ଟିରେ ଅନେଇ ଥା'ନ୍ତି । କୌଣସି ଉତ୍ତର ଦେଇ ପାରନ୍ତି ନାହିଁ । ବୋକାଙ୍କ ପରି ଛିଡ଼େଇ ଦେବାର ମାନେ ହୁଏ ନାହିଁ କିଛି । ତେବେ ହଠାତ୍ ସମସ୍ତ ଶକ୍ତି ଏକିଭୂତ କରି ଖାମ୍ ସମେତ ଚିଠିକୁ ଚିରି ଟିକ୍ ଟିକ୍ କରି ଉଡ଼ାଇଦେଲା ତାପସୀ ।

ନା, ହେମପ୍ରଭା ପାଖରେ ସେ ଖେଳଣା ହେବାକୁ ଚାହେଁ ନାହିଁ । ସେ ବୁଝୁ କାହାରି ଉପରେ କୌଣସି ମୋହ ମାୟା ନାହିଁ ତାପସୀର । ସାବିତ୍ରୀ ଦେଶର ଝିଅ କେବଳ ଯେ ନିଜର ଇଜ୍ଜତ ରକ୍ଷା କରି ଜାଣେ ତା ନୁହେଁ, ନିଜର ସମ୍ମାନ ମଧ ରକ୍ଷା କରି ଜାଣେ ।

ସଂସାରରେ ଅନେକ ଅସମ୍ଭବ ସମ୍ଭବ ହୁଏ । ନିତାନ୍ତ କଳ୍ପିତ ଗଳ୍ପପରି ଘଟଣାସବୁ ସତକୁ ସତ ଘଟିଯାଏ । ଏହାକୁ ଦୈବାତ୍ ବୋଲି କୁହାଯାଇପାରେ, ସେହି ଦୈବାତ୍‌ର ଘଟଣା ଆଜି ଦେଖାଗଲା ହେମପ୍ରଭା ଜୀବନରେ ।

ସ୍ପଷ୍ଟକରି କହେ । ନାନା ଚିନ୍ତାର ଘାତ ପ୍ରତିଘାତରେ ଦିଗହରା ହୋଇ ହେମପ୍ରଭା ଯେତେବେଳେ ସ୍ନାନ ପରେ ମାଳ ଜପିବାକୁ ବସିଛନ୍ତି, ଠିକ୍ ସେତିକି ବେଳେ ଜଣେ ଭଦ୍ରମହିଳା ସାମନାକୁ ଆସି ସିଧା ସିଧା ପ୍ରଶ୍ନକଲେ ଗୋଟିଏ କଥା ଟିକିଏ ଶୁଣିବେ ? ଯଦି କିଛି ମନେ ନ କରିବେ ତା ହେଲେ ସାହସ କରି କହିବି ।

ବିସ୍ମିତା ହେମପ୍ରଭା ଚାହିଁ ଦେଖିଲେ ବାର୍ଦ୍ଧକ୍ୟର କ୍ଷୀଣଦୃଷ୍ଟି ଏବଂ ଖରାର ଝିଲ୍ ମିଲ୍ ଏଇ ଦୁଇଟାଯାକ ମିଶି ଆଖିଟା କେମିତି ଛାଲ ଛାଲିଆ ଦିଶୁଛି । ମଣିଷଟିକୁ ଚିହ୍ନିପାରିଲେ ନାହିଁ ହେମପ୍ରଭା ।

ଭଦ୍ରମହିଳା ପୁଣି କହିଲେ– ମନେ ହେଉଛି ଭୁଲ କରିନାହିଁ, ତେବେ ସନ୍ଦେହ ମୋଚନ କରିବାକୁ ପଚାରୁଛି– କାଶୀରେ ଆପଣ କେତେଦିନ ହେଲା ଅଛନ୍ତି ମା' ?

ହେମପ୍ରଭା ଗମ୍ଭୀରଭାବେ କହିଲେ– ଅନେକ ଦିନ ହେଲା । କାହିଁକି କୁହତ ଜାଣିବାକୁ ଚାହୁଁଛ ?

– ଚାହୁଁଛି ମୋର ବିଶେଷ ଦରକାର ବୋଲି । ଆପଣଙ୍କର ଗାଆଁ କେଉଁଠି ? କୌତୂହଳି ହେମପ୍ରଭା ଏଥର ମାଳଝୁଲା ଧରି ଉଠି ଠିଆ ହୋଇ କହିଲେ– ଘାଟ ଛାଡ଼ି ଚାଲ ଗଛ ଛାଇକୁ ଯିବା ଦେଖେ ତୁମେ କିଏ ?

ଦୁଇଜଣଯାକ ଛାଇଆଡ଼କୁ ଆଗେଇ ଗଲେ ।

ଭଦ୍ରମହିଳା ଗୋଟିଏ ଦୀର୍ଘନିଃଶ୍ୱାସ ପକେଇ କହିଲେ– ପରିଚୟ ଦେବାର ମୋର କିଛି ନାହିଁ ତଥାପି ଦେବି ମା', ତେବେ ମୋ ପ୍ରଶ୍ନର ଉତ୍ତରଟା ଆଗେ ଦିଅନ୍ତୁ ।

ହେମପ୍ରଭା ଅତି ତୀକ୍ଷ୍ଣଦୃଷ୍ଟିରେ ଅପରିଚିତାର ଆପାଦ ମସ୍ତକ ଦେଖିନେଇ ସଂକ୍ଷେପରେ କହିଲେ ଆମ ଘର ବର୍ଦ୍ଧମାନ ଜିଲ୍ଲାରେ ।

–ଗାଆଁର ନାଆଁ ? ଆଗ୍ରହର ସ୍ୱର ଧ୍ୱନିତ ହେଲା ଭଦ୍ରମହିଳାଙ୍କ କଣ୍ଠରେ ।

– କୁସୁମପୁର, କାହିଁକି କୁହତ ? ଚିହ୍ନି ପାରୁନାହିଁତ ତୁମକୁ ।

– ମୁଁ କିନ୍ତୁ ଠିକ୍ ଚିହ୍ନିଛି ମା' । ପ୍ରଭୁ ବିଶ୍ୱନାଥ ଚିହ୍ନେଇ ଦେଇଛନ୍ତି । ପରିଚୟ ଦେଲେ ଚିହ୍ନିବେ ନିଶ୍ଚୟ । ମୁଁ ସ୍ୱର୍ଗୀୟ କାନ୍ତି ମୁଖୁଜ୍ଜେ ମହାଶୟଙ୍କର ଭଉଣୀ, ବୁଲୁର ପିଉସୀ, ଚିହ୍ନନ୍ତି କାନ୍ତି ମୁଖୁଜ୍ଜେଙ୍କୁ ?

– 'ଚିହ୍ନି ନାହିଁ ଆହୁରି ' ! ଏକଥା କହିବାକୁ ଇଚ୍ଛାଥିଲେ ମଧ୍ୟ ଜିଭ ଯେମିତି ଲେଉଟିଲା ନାହିଁ ହେମପ୍ରଭାଙ୍କର । ଗୋଟିଏ ମୁହୂର୍ତ୍ତ ପାଇଁ ସେ ସ୍ତବ୍ଧ ହୋଇଗଲେ । ସତରେ କ'ଣ ଭଗବାନ ପ୍ରତ୍ୟକ୍ଷରେ ଅଛନ୍ତି ? ଏହି ଘୋର କଳିକାଳରେ ? ଅନ୍ତରରେ ଯଥାର୍ଥ ବ୍ୟାକୁଳତା ନେଇ ଯାହା କିଛି ପ୍ରାର୍ଥନା କରାଯାଏ, ହାତରେ ତୋଳି ଦିଅନ୍ତି ସେ ? ନା ହେମପ୍ରଭାଙ୍କୁ ଛଳନା କରିବାକୁ, ପରିହାସ କରିବାକୁ ବୁଲୁ ପିଉସୀର ଛଦ୍ମବେଶ ଧାରଣ କରି ସାମନାରେ ଆସି ଛିଡ଼ା ହୋଇଛନ୍ତି । କ୍ଷଣକ ଭିତରେ ପୁଣି ଉଭେଇ ଯିବ ଏହି ମାୟା ମୂର୍ତ୍ତି ?

ବାକ୍‌ଶକ୍ତିକୁ ଫେରାଇ ଆଣି ହେମପ୍ରଭା ଯାହା କହିଲେ, ସେଥିରେ ଅନ୍ତରର ଏହି ବ୍ୟାକୁଳତା ପ୍ରକାଶ ପାଇଲା ନାହିଁ, ନିଷ୍ପୃହ ସ୍ୱରରେ କହିଲେ– ମତେତ ଚିହ୍ନିଛ, କହିଲ ଦେଖି କେଉଁ ସୂତ୍ରରେ ମୋ ସାଙ୍ଗରେ ପରିଚୟ ?

ହେମପ୍ରଭା ପରି ରାଜଲକ୍ଷ୍ମୀର ନିଜର ହୃଦୟ ଯନ୍ତ୍ର ଉପରେ ଏତେଟା ନିୟନ୍ତ୍ରଣ ନାହିଁ, ତେବେ ଅଧାରୁଦ୍ଧ ଉଚ୍ଛ୍ୱସିତ ସ୍ୱରରେ କହିଲେ– ସେ କଥା ପଚାରି ଆଉ ଲଜ୍ଜା ଦିଅନାହିଁ ମା' । ଆପଣଙ୍କ ପାଖରେ ଆମେ ସବୁ ମସ୍ତ ଅପରାଧୀ । କଥାରେ କହନ୍ତି ଦଶଚକ୍ରରେ ଭଗବାନ ଭୂତ ! ଅନେକବାର ଅନେକ ମିନତି କରି ଲୋକ ପଠେଇ ପଠେଇ ହତାଶ ହୋଇ ଚୁପ୍ ହୋଇଯାଇଛି ମା' । ଘରର ଲକ୍ଷ୍ମୀ ଘରକୁ ନ ଆସିଲେ ଘର କ'ଣ ଶୋଭାପାଏ ? ଆମ ହତଭାଗ୍ୟର ଦୋଷ । କୌଣସି ଇଚ୍ଛା ପୂରଣ ହେଲାନାହିଁ ।

ହେମପ୍ରଭାଯେ କଲିକତାର କୌଣସ ଖବର ପ୍ରାୟ ରଖନ୍ତି ନାହିଁ, ନିର୍ବାସିତ ଜୀବନ ଯାପନ କରୁଛନ୍ତି, ସେ କଥାର ଧାରଣା ନାହିଁ ରାଲକ୍ଷ୍ମୀର । ଧାରଣା ରହିବା କଥା ମଧ୍ୟ ନୁହେଁ ।

–ଭାଗ୍ୟର ଦୋଷ ଝିଅ, ବିଧାତାର ବିଧାନ ରଦ୍ଦ କରିବ କିଏ ? ଭାଇ ପୁଅଟିର ପୁଣି ବାହା ଦେଲ କେଉଁଠି ?

ନିଜର ମାନରକ୍ଷାପାଇଁ ହେମପ୍ରଭା ଏଇ ରକମ ବଙ୍କାବାଟରେ ପ୍ରଶ୍ନଟା କଲେ ।

'ଆଉଥରେ ବାହାଦେଇ ନାହଁତ' - ପ୍ରଶ୍ନଟା ବଡ଼ ଅପମାନଜନକ ! ଦେଲେ କେଉଁଠି - ଏ ଯେମିତି ଗୋଟିଏ ନିଶ୍ଚିତ ଘଟଣା ସମ୍ବନ୍ଧେ ବାହୁଲ୍ୟ ପ୍ରଶ୍ନ । ଯେମିତି ବିବାହଟା ଅତି ସାଧାରଣ ଗୋଟାଏ ସମ୍ବାଦ ମାତ୍ର । ଏହା ଉପରେ ଅନେକ କିଛି ନିର୍ଭର କରୁନାହାନ୍ତି ହେମପ୍ରଭା । ଉତ୍ତର ଅପେକ୍ଷାରେ ରୁଦ୍ଧଶ୍ୱାସ ହୋଇ ଇଷ୍ଟଦେବତାଙ୍କ ନାମ ଜପକରିବା ଦରକାର ହୁଏ ନାହିଁ ।

ଯେମିତି ରାଜଲକ୍ଷ୍ମୀର ଭାଇପୁଅ ସମ୍ବନ୍ଧରେ ବେଶିକିଛି ମୁଣ୍ଡବ୍ୟଥା ନାହିଁ ହେମପ୍ରଭାଙ୍କର ।

ଏ ପ୍ରଶ୍ନ ପରେ ଗାଆଁରେ ଧାନ ଚାଉଳ ଫଳିବା, ଅଥବା ମାଛ-ଦୁଧର ମୂଲ୍ୟବୃଦ୍ଧି ସମ୍ବନ୍ଧରେ ପ୍ରଶ୍ନ କରିବାକୁ ଟିକିଏ ହେଲେ ବିକାର ଦେଖାଯିବ ନାହିଁ ତାଙ୍କଠାରେ ।

ରାଜଲକ୍ଷ୍ମୀ ଏ ଚାଲାଖି ବୁଝିପାରିଲେ ନାହିଁ । ଏହିପରି ଉତ୍କଣ୍ଠାକୁ ଚପେଇ ରଖି ନିଷ୍ପୃହତାର ବାହାନା କରିବାର 'ଚାଲ୍' କଲେ । ସେଇଥିପାଇଁ ହେମପ୍ରଭା ପ୍ରଶ୍ନରେ ସେ ଯେମିତି ମନର ଆନନ୍ଦକୁ ଚାପି ରଖିପାରିଲେ ନାହିଁ । ନିଜ ମହତ୍ତ୍ୱର ପରିଚୟ ଦେବାର ଏତେବଡ଼ ସୁବର୍ଣ୍ଣସୁଯୋଗ- ଏ କ'ଣ କମ କଥା !

ଯେଉଁ ନିଦାରୁଣ ଘଟଣାପାଇଁ ଗାଆଁ ଛାଡ଼ିଛନ୍ତି ରାଜଲକ୍ଷ୍ମୀ, ପୋଡ଼ାମୁହାଁ ବିଧାତାକୁ କମ୍ ସେ କମ୍ ଲକ୍ଷେଥର ଗାଳି ଦେଇଛନ୍ତି, ସେଇ ଘଟଣାକୁ ସେ ପ୍ରକାଶ କରିବେ ଏହା ଦେବତାର ଆଶୀର୍ବାଦ ଛଡ଼ା କିଛି ନୁହେଁ ।

ଅତଏବ ଉଚ୍ଚସ୍ୱରରେ ହସି ଅନାୟସରେ କହିଲେ ସେ - ବାହାଘର ! ନା ମା', ମୋର ଭାଇ ପୁଅ ସେମିତି ପିଲାନୁହେଁ । ମାମୁଁ ଯାହା କରି ଯାଇଛନ୍ତି ତା ଉପରେ କଲମ ଚଳେଇବା, ତା ହୋଇପାରିବ ନାହିଁ ।

ପ୍ରାୟ ପାଚି ଉଠିଥିବା 'ବିବାହ' ଫଳଟି ଯେ ହଠାତ୍ ରାଜଲକ୍ଷ୍ମୀର ଅଜ୍ଞାତରେ ପାଚିବା ପରିବର୍ତ୍ତେ ଖସି ପଡ଼ିଛି ସେକଥାଟା ଆଉ ପ୍ରକାଶ କଲେ ନାହିଁ ।

ହେମପ୍ରଭାଙ୍କ ହାତର ମାଳା ଆହୁରି ଦ୍ରୁତଗତିର ଘୂରୁଥାଏ । ଗୁରୁଦେବ, ମୁହଁ ରଖିଛନ୍ତି ତା ହେଲେ । ତାପସୀ ପାଖରେ ଅପଦସ୍ତ ହେବାର ନୂଆ କିଛି ଘଟଣା ଘଟିନାହିଁ । ବର୍ତ୍ତମାନ କେବଳ ସ୍ୱଭାବ-ଚରିତ୍ର ବିଦ୍ୟାବୁଦ୍ଧି ସମ୍ବନ୍ଧରେ ସଂଧାନ ନେବା କଥା । କେଉଁଠି ଅଛି କିଏ ଜାଣେ ? ବର୍ତ୍ତମାନ କ'ଣ କରୁଛି ତୁମର ଭାଇପୁଅ ?

— ବୁଲୁ ? ସେ ତ ଆପଣଙ୍କ ଆଶୀର୍ବାଦରୁ ମଣିଷ ପରି ଗୋଟାଏ ମଣିଷ ହୋଇଛି । ବଡ଼ ଦୁଃଖ ହେଉଛି ମାମୁଁ କିଛି ଦେଖିପାରିଲେ ନାହିଁ । କେତେ ଇଚ୍ଛାଥିଲା ତାଙ୍କର, ସବୁଇଚ୍ଛା ତାଙ୍କର ପୂରଣ ହୋଇଛି । ବୁଲୁ ଆମର ଏଠାରୁ ଦିଟା ପାଶ୍ କରି ବିଲାତ ଚାଲିଯାଇଥିଲା । ସେଠି ସବୁ ଜଣ ଭଲ ଭଲ ପାଶ୍ ଫାସ୍ କରି ଏକବାର ଚାକିରି ପାଇକି ଆସିଛି । ମାସକୁ ଦରମା ଆଠଶହ ଟଙ୍କା । ପରେ ଆହୁରି ଅନେକ ବଢ଼ିବ । ଚାକିରିର ନାଆଁଟା କ'ଣ କହିପାରୁନାହିଁ, କିନ୍ତୁ ଖୁବ୍ ଭଲ ଚାକିରି ।

ହେମପ୍ରଭା ହସିପକେଇ କିହଲେ- ମୋ ଚାଏଁ ତୁମେ ତ ବହୁତ ସାନ ହେବ ଏମିତି ସେନ୍ତରାବୁଢ଼ୀଙ୍କ ଭଳିଆ କ'ଣ କଥା କହୁଛ ? ଆଚ୍ଛା ବୁଲୁ ବିଲାତରୁ ଫେରି ଆସିବା ପରେ ମିଜାଜଟା କେମିତି ଅଛି, ମେମ୍ ଚାହେଁ ନାହିଁ ତ ?

ରାଜଲକ୍ଷ୍ମୀ ଜିଭ କାମୁଡ଼ିଲେ ।

— ଏମିତିକଥା କହିବେ ନାହିଁ । ବୁଲୁ କ'ଣ ସେଇପ୍ରକାର ପିଲା ? ଏ ବେବି ସେ ଘରକୁ ଗଲେ ଆମ ରୋଷେଇ ଘର ଦୁଆର ମୁହଁରେ ବସି, ନଡ଼ିଆକୋରା, ଦୁଧସର ମାଗି ଖାଇବ । 'ରାଇବଲ୍ଲଭ'ଙ୍କ ଆଳତି ସମୟରେ ଧୋତି ପିନ୍ଧି କାନ୍ଧରେ ଚଦର ପକେଇ ଠାକୁରଙ୍କ ଚାମର ପଙ୍ଖା ପକାଏ । କହିଲେ ଅବଶ୍ୟ ଆପଣ କହିବେ ବଢ଼େଇ କରି କହୁଛି - ତଥାପି ଏତିକି କହିପାରେ ହଜାରରେ ଏମିତି ଗୋଟିଏ ମିଳିବା କଷ୍ଟକର । ଆପଣଙ୍କ ପୁଅ ଇଚ୍ଛା କରି ଅବହେଳା କଲେ, ଏବେ ଦେଖିଲେ କହିବେ—

ହେମପ୍ରଭା ରାଜଲକ୍ଷ୍ମୀ କଥାରେ ବାଧାଦେଇ ଉଦାସ ସ୍ୱରରେ କହିଲେ ମୋ ପୁଅ ? ସେ ଦେଖୁଛି, ଉପରେ ବସି ସବୁ ଦେଖୁଛି । ହୁଏତ ଏତେଦିନେ ତା'ର ଅପରାଧୀ ମା'କୁ କ୍ଷମା କରିଛି ।

ରାଜଲକ୍ଷ୍ମୀ ଥତମତ ହୋଇ କହିଲେ- କାହିଁକି ? ସେ କ'ଣ ?....... ହେମପ୍ରଭା ମୁଣ୍ଡ ହଲେଇଲେ- ହଁ, ଗୋଟାଏ ଯୁଗ ହେଇଗଲା । କେହି କାହାରି କୌଣସି ଖବର ରଖିନା । ଆଜି ପ୍ରଭୁ ବିଶ୍ୱନାଥ ହଠାତ୍ ତୁମସଙ୍ଗେ ଯୋଗାଯୋଗ କରି ଦେଲେ । ଦେଖେ ପ୍ରଭୁଙ୍କର କ'ଣ ଇଚ୍ଛା ! ଏବେ ତା ହେଲେ ତୁମ ବୋହୂକୁ ତୁମେ ନେଇଯାଅ । କେବଳ କଥା କହି ରାଜଲକ୍ଷ୍ମୀର ମନୋଭାବ ବୁଝିବାକୁ ଚେଷ୍ଟାକଲେ ।

ରାଜଲକ୍ଷ୍ମୀ ଆହା କରି ଉଠିଲେ — ଆଉ କ'ଣ ବିଶ୍ୱନାଥଙ୍କର ଇଚ୍ଛା ବୁଝିବାକୁ ଭୁଲହେବ ମା' ? ଏଥର କୌଣସି ବାଧା ଶୁଣିବି ନାହିଁ । ଆମ ବୁଲୁ ହାତରେ ପଡ଼ିଲେ କୌଣସି ଝିଅ ଅସୁଖୀ ହେବ ନାହିଁ ଏଇ ଭରସା ମୋର ଅଛି ।

ହେମପ୍ରଭା ତୁଳସୀ ମାଳାକୁ ମୁଣ୍ଡରେ ଛୁଇଁ ମୃଦୁହସିବା ସଙ୍ଗେ କହିଲେ - ମୋ ନାତୁଣୀ ତା'ର ଯୋଗ୍ୟ ନହେଇପାରେ । କିଛିତ ସେ ଜାଣେ ନାହିଁ ।

ରାଜଲକ୍ଷ୍ମୀ ହସି ଉଠିଲେ ଯେମିତି ଗୋଟାଏ ଭାରି ରହସ୍ୟ କରୁଛନ୍ତି ହେମପ୍ରଭା ।

ଏହାପରେ ଅନେକ ଜ୍ଞାତବ୍ୟ ଓ ଅଜ୍ଞାତବ୍ୟ ବିଷୟରେ ଆଲୋଚନା ହେଲା, କେବଳ ତାପସୀ ଯେ କାଶୀରେ ହେମପ୍ରଭାଙ୍କ ନିକଟରେ ରହିଛି ସେଇ କଥାଟାକୁ କୌଶଳରେ ଏଡ଼ାଇଗଲେ ହେମପ୍ରଭା । କେବଳ କହିଲେ ଚାଲନା ଆମ ଘରତ ଏଇ ପାଖରେ । ଏଓଳି ଆମ ଘରେ ଦି'ଟା ଖାଇଦେବେ ।

ସାମାନ୍ୟ ଅନୁରୋଧରେ ରାଜଲକ୍ଷ୍ମୀ ରାଜି ହୋଇଗଲେ । ହେମପ୍ରଭା ସଙ୍ଗେ ସମ୍ବନ୍ଧ ବଢ଼େଇ ରଖିବାର ଗରଜ ଯେମିତି ତାହାର ବେଶୀ ।

'ଦାନାପାଣି' ବ୍ୟତୀତ ରାଜଲକ୍ଷ୍ମୀ ପାଇଁ ଯେ 'ତୃଷ୍ଣାର ଜଳ' ହେମପ୍ରଭା ଘରେ ରଖାଯାଇଛି, ସେ କଥା କ'ଣ ସ୍ୱପ୍ନରେ ଭାବିଥିଲା ରାଜଲକ୍ଷ୍ମୀ ?

ନାନୀ ସାଙ୍ଗରେ ଜଣେ ବିଧବା ଭଦ୍ର ମହିଳା ଆସିବାର ଦେଖି ତାପସୀ ନିଜ ପକ୍ଷରୁ ସେପରି କିଛି ଗୁରୁତ୍ୱ ଦେଲା ନାହିଁ । ଏମିତି ତ ମଝିରେ ମଝିରେ କେତେ ସବୁ ଆସନ୍ତି । ଘର ଭିତରୁ ବାହାରି ଅନ୍ୟ ସାଙ୍ଗରେ ଭଦ୍ରତା ରକ୍ଷାକରି କଥା କହିବାର ଇଚ୍ଛା ତାର ନଥାଏ । ସେହି ଅଜଣା ବ୍ୟକ୍ତିର ଚିଠିସଂପର୍କରେ ଆକାଶ ପାତାଳ ଭାବି ଭାବି କ୍ଲାନ୍ତ ହୋଇପଡ଼ିଛି ବିଚରା ।

ସ୍ୱାଭାବିକ ଦୃଷ୍ଟି ନେଇ ଘରେ ପଶିଥିଲେ, ଛିଡ଼ା ଚିଠିର ଟୁକୁରା ଗୁଡ଼ା ହେମପ୍ରଭାର ଦୃଷ୍ଟିରେ ନିଶ୍ଚୟ ପଡ଼ିଥା'ନ୍ତା କିନ୍ତୁ ବିଶେଷ ବ୍ୟସ୍ତତା ନେଇ ଘର ଭିତରେ ପଶିଲେ ସେ । ତେଣୁ ତାଙ୍କର ଦୃଷ୍ଟି ପଡ଼ିନାହିଁ ।

ତାପସୀ ଶୁଣ, ଆଜି ଏଠାରେ ଜଣେ ଖାଇବେ, ଏଇ ବେଳାଟା କେବଳ । ତୁ ଟିକିଏ ଆସିଲୁ ମୋ ସାଙ୍ଗରେ ମସଲା ମସଲି ବାଟିଦେବୁ । ତାପସୀ ଅବାକ୍ ହୋଇ କହିଲା– ମୁଁ ? ମୋ ହାତରୁ ତୁମେ ସବୁ ଖାଇବ ?

– ହେ ମା' କଥାଶୁଣ ଝିଅର ! ତୋ ହାତରୁ ଖାଇବି ନାହିଁ କାହିଁକିରେ ? ପାଣ, ହାଡ଼ି ଘରର ବୋହୂକି ତୁ ? ନେ ଏଇ ସିଲ୍କ ଶାଢ଼ୀଟା ପିନ୍ଧିପକା ।

ଉଚ୍ଛ୍ୱସିତ ଆନନ୍ଦର ଭାବଟା ନାତୁଣୀ ପାଖରେ ଆଉ ଲୁଚାଇ ପାରିଲେ ନାହିଁ ହେମପ୍ରଭା ।

ତାପସୀ ବିସ୍ମିତ ଦୃଷ୍ଟିରେ ଚାହିଁ ଦେଇ ପଚାରିଲା କିଏ ଆସିଛି ନାନୀ ? ଖୁବ୍ ତ ଖୁସୀ ଦେଖୁଛି । ତୋର କିଏ ବନ୍ଧୁ ନା ଆତ୍ମୀୟ ?

– ଆତ୍ମୀୟ , ବନ୍ଧୁ ସବୁ କିଛି । ଭଗବାନ ମୁହଁ ରକ୍ଷା କଲେ । ଯା ତୁ ଆଉ ଡେରି କରନା - ମୁଁ ଯାଉଛି । ଏ ମା' ଘର ସାରା ଏତେ ଟୁକୁରା କାଗଜ କିଏ ଭର୍ତ୍ତିକଲା ?

– ଚିଠି ।

– ଚିଠି ! ଓଃ ସେଇ ଚିଠିଖଣ୍ଡକ ! ଏମିତି ଛିଡ଼େଇ ପକେଇଲୁ କାହିଁକି ? କିଏ ଦେଇଥିଲା ?

– ଜାଣେ ନାହିଁ ।

– ଜାଣୁନାହିଁ, ଏକି କଥା ? ଦେଖିଲୁ ନାହିଁ ।

— ନା

ହେମପ୍ରଭା ଗୋଟିଏ ମୁହୂର୍ତ୍ତ ଚୁପ୍ ହୋଇ ନାତୁଣୀ ପାଖକୁ ଆଗେଇ ଆସିଲେ । ତା ମୁଣ୍ଡ ଉପରେ ହାତରଖି ଆର୍ଦ୍ର କଣ୍ଠରେ କହିଲେ— ମୁଁ ଜାଣେ ତାପସ ଛୋଟ ହେଲାଭଳି କାମ ତୁ କରିବୁ ନାହିଁ । ଆଶୀର୍ବାଦ କରୁଛି ତୋର ଦୁଃଖର ଦିନ ଏଥର ଶେଷ ହେଉ । ମୋ ସାଙ୍ଗରେ ଯିଏ ଆସିଛି, ପ୍ରଭୁ ବିଶ୍ୱନାଥ ତାକୁ ଆଜି ହାତରେ ଧରେଇ ଦେଇଛନ୍ତି । ବୁଲୁର ପିଉସୀ ହୁଏ ସେ । ତୋର ପିଉସୀଶାଶୁ । ଚମକି ଉଠୁନା, ତତେ କିଛି କହିବାକୁ ହେବ ନାହିଁ । କେବଳ ଯାଇ ପ୍ରଣାମ କରିବୁ । ବୁଲୁ ଆମର ଖାଣ୍ଟିସୁନା, ବର୍ତ୍ତମାନ ସୁଦ୍ଧା ତୋର ବାଟ ଚାହିଁ ବସିରହିଛି । ଭୟର କିଛି କାରଣ ନାହିଁ ।

ତାପସୀ ଆସି ପ୍ରଣାମ କରି ଛିଡ଼ା ହେବା ମାତ୍ରେ, ରାଜଲକ୍ଷ୍ମୀ ଚମକି ପଡ଼ି ଯେମିତି ସ୍ତବ୍ଧ ହୋଇଗଲେ ।

ଏଇ ତାପସୀ ?

ବୁଲୁର ବୋହୂ ?

ସ୍ୱପ୍ନର କଳ୍ପନା ମଧ ହାର୍ ମାନିବ ! ଏହି ବୋହୂପାଖରୁ ବଂଚିତ ହୋଇ ରହିଚି ବୁଲୁ ? ବୁଲୁପରି ସ୍ୱାମୀକୁ ଲାଭକରି ଧନ୍ୟ ହୋଇପାରିଲା ନାହିଁ ବୋଲି ଅପରିଚିତା ବଧୂର ଭାଗ୍ୟକୁ ନିନ୍ଦାକରି ଆସିଛନ୍ତି ଏତେଦିନ ।

ଭାବନାର ସ୍ରୋତଟା ଏବେ ବିପରୀତମୁଖୀ ହୋଇ ବହିଲା । ଉଃ, ନିର୍ଦ୍ଦୟା ମଧରେ କି ଅନନ୍ତ ଦୟା ଭଗବାନଙ୍କର ! ବୁଲୁର ଏବେକାର ବାହାଘରଟା ଯଦି ଭାଙ୍ଗି ନଯାଇ ସତ ସତ ହୋଇଯାଇଥାନ୍ତା । କି ସର୍ବନାଶ ହୋଇଥା'ନ୍ତା !

ଏ ବୋହୂକୁ ରାଜଲକ୍ଷ୍ମୀ ରଖିବ କେଉଁଠି ଛାତିରେ, ନା ମୁଣ୍ଡରେ ? ନା ଏଥର ଆଉ ବୋକାମି କରିବେ ନାହିଁ, ଶାଢ଼ୀ ପଣତରେ ବାନ୍ଧିନେଇ ଯିବେ, ସବୁଆଡୁ କାମ ସରିଯିବ ।

ହେମପ୍ରଭାର ହାତଗୋଡ଼ ଯଦି ଧରିବାକୁ ପଡ଼େ ତାହେଲେ ସେଥିରେ ସେ ରାଜି । ଦୋଷ କ'ଣ ? ସଂପର୍କରେ ଗୁରୁଜନ । ମାନ ମହତ ରକ୍ଷାପାଇଁ ପ୍ରାଣ ପଛେଯାଉ । ଏତେଟା କୁସଂସ୍କାର ନାହିଁ ରାଜଲକ୍ଷ୍ମୀର ।

ହେମପ୍ରଭା ଅବଶ୍ୟ ରାଜଲକ୍ଷ୍ମୀର ହାତପାଦ ଧୋଇ ଦେଇନାହାନ୍ତି, ସେ ନିଜେ ହାତ ପାଦ ଧୋଇ ବସିଥିଲେ । 'କାଶୀବାସ' କରିବାର ସାଧୁ ସଙ୍କଳ୍ପ ଅବଲୀଳା କ୍ରମେ ବିସର୍ଜନ ଦେଇ ରାଜଲକ୍ଷ୍ମୀ ଯେମିତି ମହା ଉତ୍ସାହରେ ଘରକୁ ଫେରିବାର ଉପକ୍ରମ କଲେ । ହେମପ୍ରଭା ମଧ୍ୟ ସେମିତି ଦୀର୍ଘକାଳବ୍ୟାପୀ କାଶୀବାସର ଅଭ୍ୟସ୍ତ ଜୀବନକୁ ଆପାତତଃ ତ୍ୟାଗକରି ଗାଆଁକୁ ଫେରିଯିବାକୁ ଯୋଗାଡ଼ କଲେ ।

ମନ ଜିନିଷଟା ଏମିତି, ଥରେ ଛୁଟିଲେ ଆଉ ତାକୁ ଧରିବା କଷ୍ଟ । ଚିରଦିନର ପ୍ରିୟ ଆବାସସ୍ଥଳି, ସ୍ୱାମୀଙ୍କର ଭିଟାମାଟି ଏହି ଚିତ୍ରଟି ଆଙ୍କି ହୋଇଗଲା ହେମପ୍ରଭାଙ୍କ ଆଖି ଆଗରେ । ଘଣ୍ଟାଏ ବି ତର ସହିଲା ନାହିଁ ।

କେବଳ ମାତ୍ର ତାପସୀର ହିତ ପାଇଁ ନୁହେଁ, ନିଜର ପ୍ରୀତି ପାଇଁ ମଧ୍ୟ ଇଚ୍ଛାଟା ଏତେ ପ୍ରବଳ ହେଲା । ହାୟ, କି ମିଛ ଅଭିମାନରେ ସେ ସେଇ ପୂଣ୍ୟଭୂମି ତ୍ୟାଗକରି ଚାଲି ଆସିଛନ୍ତି ! ଏ ଅଭିମାନର ମର୍ମ ବୁଝିଲା କିଏ ?

ନା, ଶେଷ ଜୀବନରେ ଥରେ ଯାଇ ଏତେଦିନ ପାପର ପ୍ରାୟଶ୍ଚିତ କରି ଆସିବେ ହେମପ୍ରଭା ।

ଅତଏବ 'ଦଶଚକ୍ରରେ ଭଗବାନ ଭୂତ' !

ତାପସୀର ଗାଆଁକୁ ଯିବା ଛଡ଼ା ଆଉ ଗତି କ'ଣ ?

ମା' ଉପରେ ଖପା ହୋଇ ଚାଲି ଆସିଛି, ସେଠାକୁ ତ ଫେରି ଯାଇ ହେବ ନାହିଁ, ବିନା ସାଧ୍ୟ ସାଧନାରେ ଏପରିକି ବିନା ଆହ୍ୱାନରେ । ଅଥଚ ଚିତ୍ରଲେଖାର ମନୋଭାବ ଅନମନୀୟ ।

ତେବେ ଯିବା ପାଇଁ ଲୁଗାପଟା ସଜାଡୁ ସଜାଡୁ ସେ ଚୁପ୍ ଚୁପ କହିଲା — ଦେଖ ନାନୀ ଗାଆଁକୁ ଯାଇ ମୁଁ ଯେ ଯାହା ତାହା ଘରେଯାଇ ରହିବି ସେ କଥା ଭାବନା,

ବୁଝିଲୁ ? ତୋ ବରର ସେଇ ଯେ ଗୋଟାଏ ପୁରୁଣା 'ପ୍ୟାଲେସ୍' ଘର ଅଛି ସେହି ଘରରୁ ଗୋଟାଏ କୋଠରୀ ମୋର ହେଲେ ହେବ ।

ହେମପ୍ରଭା ହସିପକେଇ କହିଲେ- ମୋ ବରର ଘରେ ତତେ କାହିଁକି ରହିବାକୁ ଦେବି ରେ ? ନିଜ ବରଘର ସମ୍ଭାଳିବୁ ଯା ।

– ଦରକାର ନାହିଁ ନାନୀ, ବାଜେ ଜିନିଷ ସମ୍ଭାଳିବାକୁ । ନିଜକୁ ସମ୍ଭାଳି ପାରିଲେ ବଞ୍ଚି ଯିବି ମୁଁ ।

ପରିହାସ ଛଳରେ କହିଲେ ମଧ କଥାଟା ଦୁଃଖମୟ ସତ୍ୟର କରୁଣ ସ୍ୱରଟି ପରି ଫୁଟି ଉଠେ । ସତରେ ତ ନିଜକୁ ସମ୍ଭାଳିବା କ'ଣ ସହଜ କଥା ?

ଏଇ ଦୀର୍ଘକାଳ ଧରି ନିଜକୁ ସମ୍ଭାଳୁ ସମ୍ଭାଳୁ କାଇଲ ହୋଇଗଲା ବିଚରା !

ଟ୍ରେନ୍‌ର 'ଧକ୍ ଧକ୍' ଶବ୍ଦ ସାଙ୍ଗରେ ସୁର ମେଳେଇ ତାପସୀର ହୃତପିଣ୍ଡଟା ଯେପରି 'ଧକ୍ ଧକ୍' କରୁଥାଏ । କ'ଣ କରିବାକୁ ଯାଉଛି ସେ ?

ଖେଳଘରର ସେହି ବାହାଘରଟାକୁ ପୁଣି ତାଳିପକେଇ ଅପରିଚିତ ବର ସାଙ୍ଗରେ ଘର କରିବାକୁ ଯାଉଛି ସେ ? ପୁଣି ବିନା ଆମନ୍ତ୍ରଣରେ ବିନା ଆହ୍ୱାନରେ ।

ତା ଛଡ଼ା ଆଉ କ'ଣ ହୋଇପାରେ । ଭିତରେ ଭିତରେ ସେହିପରି ଗୋଟାଏ ଆକାଂକ୍ଷା କ'ଣ ଲୁଚି ରହିନାହିଁ । ରାଜଲକ୍ଷ୍ମୀର ଆମନ୍ତ୍ରଣଟା କ'ଣ ଯଥେଷ୍ଟ ! ଲୋଭୀ ଭିକ୍ଷୁକ ପରି ସେଇଟିକିକ ସୁଯୋଗ ନେଇ କୃତାର୍ଥ ମୁହଁରେ ସେ ଛିଡ଼ା ହେବ ଯାଇ ସେହି ଆତ୍ମ ଅହଙ୍କାରୀ ଲୋକଟା ପାଖରେ ? ଶେଷ ପର୍ଯ୍ୟନ୍ତ ତାହାର ଟିକିଏ ଅନୁଗ୍ରହ ଲାଭ କରି ସେ ଧନ୍ୟ ହେବ । କ'ଣ କହିବ କେଜାଣି ? କ'ଣ ତାର ମତି ଗତି ? ରାଜଲକ୍ଷ୍ମୀ କଥାବାର୍ତ୍ତା ଅନୁସାରେ ବେଶୀ କିଛି ଆସ୍ଥା ତା ଉପରେ ରଖାଯାଇ ପାରିବ ନାହିଁ । ନିହାତି ସାଦାସିଧା ବୋକା ମଣିଷଟିଏ ।

ତେବେ ?

ତାପସୀ ଏବେ କରିବ କ'ଣ ?

ସେହି ଅଜ୍ଞାତ ସ୍ୱଭାବ ଲୋକଟାର କରୁଣା ଉପରେ ଜୁଲମ କରି ଅଥବା ଆଇନର ଦାବୀ ନେଇ ନିଜର ଆସନଟାକୁ ଦୃଢ଼ କରିବାକୁ ପଡ଼ିବ ତାକୁ । ଫାଙ୍କିରେ ସେହି ସିଂହାସନରେ ବସିବ ପଚିଶ ଜଣରେ ଜଣେ ହୋଇ । ଶାଢ଼ୀ, ଗହଣାର ଛଟକ ଦେଖେଇ ସେ ଘୂରିବୁଲିବ ସମାଜ ଭିତରେ । ଅସ୍ୱୀକୃତ ସଂପର୍କରଂ ଛେଦଟାଣି ନିର୍ଲ୍ଲଜ ପରି ଭିକ୍ଷାପାତ୍ରଧରି କେଉଁ ମୁହଁରେ ଯାଇ ଛିଡ଼ା ହେବ ତାପସୀ ?

କ'ଣ କହିବ ସେ ?

କ'ଣ କହିବ ଚିତ୍ର ଲେଖା ?

କ'ଣ କହିବେ ଭାଇମାନେ ? ଆତ୍ମସମ୍ମାନ ଜ୍ଞାନଟା ଭାରିଥିଲା ନା ତାପସୀର !

ଆଉ—

ଆଉ ଗୋଟିଏ ମୁହଁ ? ସେଇଟାକୁ କ'ଣ ଏକବାର ଉଡ଼େଇ ଦେଇହେବ ? ଅଜନ୍ତାର ଛନ୍ଦରେ ତିଆରି ସେହି ଓଷ୍ଠାଧାରରେ ଇଷତ୍ ହସର ବ୍ୟଞ୍ଜନା ଦେଖାଦେବ, ତାର ତିକ୍ତତା, କଳ୍ପନାରେ ସହ୍ୟକରିବାର କ୍ଷମତା କ'ଣ ଅଛି ତାପସୀର ?

ଭାବିବାକୁଗଲେ ଛାତି ଭିତରଟା ଯନ୍ତ୍ରଣାରେ ଛଟପଟ ହୋଇଯାଏ । କିରୀଟୀ ସାଙ୍ଗରେ ସମସ୍ତ ସଂପର୍କ ଛିନ୍ନ କରିବାକୁ ପଡ଼ିବ ଏଇ କଥାଟା ଯେତେଥର ମନେ ମନେ ଉଚ୍ଚାରଣ କରିବାକୁ ଚେଷ୍ଟା କରେ ତାପସୀ, ନିଜକୁ ଭାରି ଅସହାୟ ଲାଗେ ।

ବୁଲୁ କିଏ ? ବୁଲୁ ସାଙ୍ଗରେ ତାହାର ସମ୍ବନ୍ଧ କ'ଣ ?

ସ୍ୱାମୀତ୍ୱର ଦାବୀନେଇ ବୁଲୁ ଆସି ତାକୁ ଅଧିକାର କରିନେବ ?

'ସ୍ୱାମୀ' ଶବ୍ଦଟାର ମୋହ କ'ଣ ତେବେ ବୁଦ୍ଧି ବୃତ୍ତିକୁ ଆଚ୍ଛନ୍ନ କରି ରଖିଛି ତାପସୀର ? ଏଇ ଶବ୍ଦର ମୋହ ଆଜି ଯେ ଶକ୍ତି ଯୋଗାଉଛି, ସେ କ'ଣ ଚିରଦିନ ଯୋଗାଇ ପାରିବ ? ମୋହ ଯେତେବେଳେ ମୂର୍ତ୍ତି ହୋଇ ଦେଖାଦେବ ? ମୋହକୁ ମନେ ମନେ ଲାଳନ କରିବା ଗୋଟାଏ କଥା, ଆଉ ମୂର୍ତ୍ତିକୁ ସହ୍ୟକରିବା ଅନ୍ୟ ଏକ କଥା । ପ୍ରାୟ ଜୀବନବ୍ୟାପୀ ସଂଗ୍ରାମ ସତ୍ତ୍ୱେ ତାପସୀ ହୃଦୟ-ଧର୍ମ ପାଖରେ ପରାଜିତ ହୋଇଛି । ଏକଥା ତ ଅସ୍ୱୀକାର କରି ଲାଭ ନାହିଁ ।

କିରୀଟୀ ଯେ ଆଜି ତା'ର ଏକାନ୍ତ ପ୍ରିୟ-ପ୍ରିୟତମ ସେଇଟା ସ୍ପଷ୍ଟ ହୋଇଯାଇଛି ସେ ଦୂରକୁ ଚାଲିଆସିବାରୁ ।

ଦୁଇଟା ବୁଢ଼ୀଙ୍କ କଥାରେ ପ୍ରଭାବିତ ହୋଇ ସେ କେଉଁ ପଥରେ ପାଦ ବଢ଼େଇଛି ?

— ଟ୍ରେନ୍‌ର ଧକଡ଼ ଚକଡ଼ରେ ବୋହୂମା'ର ମୁହଁ ଶୁଖି ଆସିଲାଣି, ଟିକିଏ ପାଣି ପିଅନା ମା' । ରାଜଲକ୍ଷ୍ମୀ କାଶୀରୁ ସଂଗ୍ରହ କରିଥିବା ପେଡ଼ା ଓ ଚମ୍ ଚମ୍ ବାହାର କରିବାକୁ ବସିଲେ । ଟ୍ରେନ୍‌ରେ ସେ ମଧ୍ୟ ବହୁତ ଶୋଷେଇଲେଣି କିନ୍ତୁ ବିଧବାଙ୍କର ଏତେ କ୍ଷୁଧା-ତୃଷ୍ଣାର ଧାର ଧାରିଲେ ଚଳେ ନାହିଁ ।

ପ୍ରତିବାଦ କରିବା ଭଙ୍ଗୀରେ ତାପସୀ ହେମପ୍ରଭାଙ୍କ ଆଡ଼େ ଚାହିଁଲା- ଭାବଟା ଯେମିତି ଏତେ ଆତ୍ମୀୟତାପୂର୍ଣ୍ଣ ବରଦାସ୍ତ ହେଉନାହିଁ ବାବା !

ହେମପ୍ରଭା ନାତୁଣୀକୁ ଆଖି ଠାରିଲେ, ଅର୍ଥାତ୍ କରୁନା ସିଏ ଯେତେ ଆତ୍ମିୟତା କରୁଛି କରୁ ।

ରାଜଲକ୍ଷ୍ମୀ ଆଖିରେ ଏ ଦୁଇଜଣଙ୍କର ଚକ୍ଷୁ ବିନିମୟ ଧରାପଡ଼ିନାହିଁ । ସେ ସରଳ ମନରେ ଖାଇବା ଜିନିଷ ସଜାଡୁ ସଜାଡୁ କହିଲେ- ବୁଲୁ ଆମର ପେଡ଼ାର ଭାରିଭକ୍ତ, କହେ ଦି ଚାରିଟା ବାଲିଧୂଳି ମିଶିଥିଲେ ବି ବଢ଼ିଆ ଜିନିଷ । ନହେଲେ ଏଇ ବର୍ଦ୍ଧମାନର ସୀତାଭୋଗ, ମିହିଦାନା ଛୁଏଁନା ସେ ।

ବିରକ୍ତି ସତ୍ତ୍ୱେ ଭାରି ହସମାଡ଼େ ତାପସୀକୁ ।

କାରଣ ଅକାରଣରେ ବୁଲୁ ପ୍ରସଙ୍ଗ ଅବତାରଣା ନକଲେ ଯେମିତି ଚଳେ ନାହିଁ ବୁଢ଼ୀର । ତା ବୁଲୁର ପସନ୍ଦ-ଅପସନ୍ଦ, ରୁଚି- ଅରୁଚି ସମସ୍ତ ତାଲିକା ମୁଖସ୍ତ କରି ଯେମିତି ପ୍ରସ୍ତୁତ କରିବାକୁ ଚାହାଁନ୍ତି ତାପସୀକୁ ।

— ବୁଢ଼ୀ ତୋ ଆଶାରେ ପୋଡ଼ାପାଉଁଶ ପଡ଼ିବ ।

ପ୍ରକୃତରେ କାହାରି ଘର କରିବାକୁ ସୃଷ୍ଟି ହୋଇନାହିଁ ତାପସୀ । ନିଜ ହୃଦୟ ନେଇ ଗୋଟିଏ ପାଖରେ ପଡ଼ିରହିବା ତାହାର ଭାଗ୍ୟଲିପି । ଏତେଦିନ ହେଲା 'ସ୍ୱାମୀ' ନାମକ ଦୂରତିକ୍ରମ୍ୟ ବାଧାଟାକୁ ସ୍ୱୀକାର କରି ନିଜକୁ ପ୍ରିୟତମ ପାଖରେ ନିଃଶେଷ କରି ସମର୍ପି ଦେବାର ଉଦଗ୍ର କାମନାକୁ ଚାପି ଚାପି ଆସିଛି, ସେଇ 'ସ୍ୱାମୀ'ର ଯେତେବେଳେ ସନ୍ଧାନ ମିଳିଛି, ତାହା ହାତରେ ସମର୍ପି ଦେବାପରି କିଛି ଆଉ ଅବଶିଷ୍ଟ ନାହିଁ । ହୁଏତ ନିଜର ଅଜ୍ଞାତ ସାରରେ ବେନାମୀ ଡାକରେ ନିଲାମ ହୋଇ ଯାଇଛି ତାପସୀ ।

ଆଗରୁ ଖବର ଦିଆ ହୋଇଥିଲା ।

ଷ୍ଟେସନକୁ ଦୁଇପକ୍ଷର ଗାଡ଼ି ଆସିଥିଲା ।

ନିଜ ନିଜ ବାସସ୍ଥଳକୁ ଯିବାର ପ୍ରାକ୍ କାଳରେ, ସମ୍ଭାଷଣର ଶେଷରେ ରାଜଲକ୍ଷ୍ମୀ ନିଜ କୋଳକୁ ତାପସୀକୁ ଟାଣିନେଇ ଯେଉଁ କଥାସବୁ କହିଲେ ତାର ସାରାର୍ଥ ହେଲା ଏହି ମୁହୂର୍ତ୍ତରେ ତାପସୀକୁ ନିଜ ଗାଡ଼ିରେ ଉଠେଇ ନେଇ ପଳେଇବାର ଦୁର୍ଦ୍ଦାନ୍ତ

ଇଚ୍ଛାକୁ ଦମନ କରି ନିହାତି ଶୁଖିଲା ମୁହଁରେ ଫେରିଯିବାକୁ ହେଉଛି, କାରଣ ଘରର ଲକ୍ଷ୍ମୀକୁ ତ ଆଉ ସେମିତି ନିଆଯାଏ ନାହିଁ । ଶୁଭ ଦିନରେ ଶୁଭ ଲଗ୍ନରେ ବୁଲୁ ନିଜେ ଯାଇ ହାତଧରି ନେଇଆସିବ । ବୁଲୁକୁ ଗାଆଁକୁ ଆସିବାର ଆଦେଶ ଦେଇ ସେ କାଶୀରୁ ଚିଠି ପଠେଇଛନ୍ତି । ରହସ୍ୟ କିଛି ପ୍ରକାଶ କରିନାହାନ୍ତି । କେବଳ ଜଣେଇଛନ୍ତି ବିଶେଷ କାରଣରୁ କାଶୀ ବାସର ସଂକଳ୍ପ ତ୍ୟାଗକରି ଫେରି ଆସିବାକୁ ହୋଇଛି ରାଜଲକ୍ଷ୍ମୀକୁ । ବୁଲୁ ଯେମିତି ଅବିଳମ୍ବେ ଆସି ଘରେ ପହଁଞ୍ଚେ ।

ଏମିତି ପିଲା ସେ, ଚିଠି ପାଇବା ମାତ୍ରେ ମୋଟର ଗାଡ଼ିରେ ଛୁଟି ଆସିବ, ଏଇ ଦିନେ ଦୁଇଦିନ ଭିତରେ । ଏହାପରେ ସାମନାରେ ଯେଉଁ ଶୁଭଦିନ ମିଳିବ....

— ଆହା ଭଦ୍ରମହିଳା,' ଭାବୁଛନ୍ତି, ତାଙ୍କର ସେହି ସୁନାରଚାନ୍ଦ ଭାଇପୁଅଟିକୁ ମୁଁ ଚାହିଁ ବସିଛି !

ଗାଡ଼ି ଛାଡ଼ିବା ପରେ ମନ୍ତବ୍ୟଟା ବ୍ୟକ୍ତ କଲା ତାପସୀ ।

ଗୋଟାଏ ଯୁଗପରେ ଗାଆଁ ମାଟିରେ ପାଦ ଦେଇଛନ୍ତି ହେମପ୍ରଭା । ତାଙ୍କର ଉତ୍ସୁକ ଦୃଷ୍ଟି ଯେମିତି ରାସ୍ତାର ଦୁଇକଡ଼ରେ ପଡ଼ିଆ, ଧାନବିଲ, ଗଛପତ୍ରରେ ଲାଗିଯାଉଛି । ତାପସୀ କଥାଶୁଣି ଅନ୍ୟମନସ୍କ ଭାବରେ କହିଲେ ତେବେ କାହା ଆଶାରେ ଅଛୁ ?

— କାହାରି ଆଶାରେ ନୁହେଁ । ଦେଖ ତୋ ବରର ସେହି ବିରାଟ ଅଟ୍ଟାଳିକା ଗହ୍ୱର ଭିତରୁ କେହି ମତେ ଟାଣି ବାହାର କରିପାରିବେ ନାହିଁ ।

ହେମପ୍ରଭା ସଚକିତ ହୋଇ କହିଲେ- ଏବେଠାରୁ ମିଜାସ୍ ବଦଳା ତାପସ, ଥଟ୍ଟାରେ କଥା କହୁ କହୁ ଅନେକ ସମୟରେ ସତ ହୋ ଯାଏ । କଥାରେ ଅଛି ‘‘ହସୁ ହସୁ ମୁଣ୍ଡ ବଥା ’’

— ତେବେ ତୁ କ’ଣ କହିବାକୁ ଚାହୁଁ ନାନୀ, ଉଷୁନାଭାତ ଖାଇବି କହିଲେ ବିକଳିଆଙ୍କ ପରି ଦୌଡ଼ିଯାଇ ଭାତ ଥାଳିରେ ମାଡ଼ି ବସିବି ।

— କଥାର ଢ଼ଙ୍ଗ ଦେଖ ! ତୁ କାହିଁକି ଦୌଡ଼ିବୁ - ସେ ଦୌଡ଼ିବେ ।

— ସେମିତି ଆସିବାର ମୂଲ୍ୟକ’ଣ ନାନୀ ? ପିଉସୀ ପଣତକାନିର ବନ୍ଧା ସୁବୋଧବାଳକ ପିଉସୀର ଆଦେଶ ପାଳନ କରିବାକୁ ଆସିବେ....

— ତାହେଲେ ତୁ କହୁଛୁ ଗୁରୁଜନର ଆଦେଶ ପାଳନ କରିବା ଖୁବ୍ ଖରାପ ।

— ଖରାପ କହୁନାହିଁ ନାନୀ, ତେବେ ସ୍ଥାନ-କାଳ-ପାତ୍ର ଭେଦରେ କିଛି ବଦଳିବା ଉଚିତ ।

କାହିଁ ଏତେଦିନ ଭିତରେ କେବେ କ'ଣ ଥରେ ମୋ ପାଇଁ ମୁଣ୍ଡ ବଥେଇଛି ? ମୁଁ ଯେ ନିରୁପାୟ ଏକଥାତ ନୁହେଁ ନାନୀ । ତେବେ ମୁଁ କାହିଁକି.............

ହଠାତ୍ ସମସ୍ତ କୌତୂହଳର ଭାଷା ବନ୍ଦହୋଇଯାଇ ଆଖିରୁ ଝର ଝର ହୋଇ ଗିରିପଡ଼ିଲା ଲୁହ ।

ଘର ଭିତରେ ପ୍ରବେଶ କରିବା ମାତ୍ରେ ନାନା ଲୋକଙ୍କର ଭିଡ଼, ନାନା କଥାରେ । ଦୀର୍ଘ ଅନୁପସ୍ଥିତିର ସୁଯୋଗରେ ଘରଖଣ୍ଡର ଦୁର୍ଦ୍ଦଶା ଆଲୋଚନାରେ ହୃଦୟ-ସମସ୍ୟା ଚାପା ପଡ଼ିଗଲା । ଢେଙ୍କେମା' ଓ ନାତୁଣୀ ମହା ଉତ୍ସାହରେ ଘର ସଜଡ଼ା ସଜଡ଼ିରେ ଲାଗିଗଲେ ।

ସାରାଦିନର ଗୋଳମାଳରେ କିଛି ମନେ ରହିଲାନାହିଁ, ମନେ ପଡ଼ିଲା ବିଛଣାକୁ ଶୋଇବାକୁ ଯିବାବେଳେ ।

ହେମପ୍ରଭା ସେତେବେଳେ ତଳ ତାଲାରେ, ସରକାରବାବୁଙ୍କ ସଙ୍ଗେ ଅନେକକଥା ଅନେକ ଆଲୋଚନାରେ ବିଭୋର । ସେ ସବୁ ସମ୍ପତ୍ତି ବାଡ଼ି ତାପସୀ ନାଆଁରେ ଦାନପତ୍ର କରିଦେଇ ଯାଇଥିଲେ, ତାର ବ୍ୟବସ୍ଥା କ'ଣ ହୋଇଛି, ଧାନ ଚାଉଳ, ବିରି ମୁଗ ଠିକ ଭାବେ ଆଦାୟ ହେଉଛିକି ନାହିଁ, ହିସାବ ପତ୍ର ଠିକ୍ ଲେଖା ହେଉଛି କି ନାହିଁ, ନାତି ମାନେ ମଝିରେ ମଝିରେ ଏଠାକୁ ଆସନ୍ତି କି ନାହିଁ ଇତ୍ୟାଦି ଇତ୍ୟାଦି ସହସ୍ର ପ୍ରଶ୍ନ ।

ଦୂରକୁ ଚାଲିଗଲେ ମନେହୁଏ ଯେମିତି ଖୁବ୍ ତ୍ୟାଗ କରିଲି, ପାଖକୁ ଆସିଲେ ଧରାପଡ଼େ- ଯଥାର୍ଥ ଭାବେ ତ୍ୟାଗ କରିବା କେତେ କଠିନ ।

ଚିର ବିଶ୍ୱସ୍ତ ସାଧୁପ୍ରକୃତିର ସରକାରବାବୁଙ୍କୁ ମଝିରେ ମଝିରେ ଜେରାକରି ବସୁଛନ୍ତି ।

ତାପସୀକୁ ଘଟଣାସ୍ଥଳରେ ଉପସ୍ଥିତ ରହିବା ପାଇଁ କହିବା ସତ୍ତ୍ୱେ ''ଗରଜ ପଡ଼ିଛି ମୋର, ତୁମର ଏଇସବୁ କାଗଜପତ୍ର ଦେଖିଲେ ମୋ ଦେହ ଜଳିଯାଏ'' କହିଦେଇ ଉପର ତାଲାକୁ ପଳେଇ ଆସିଛି । ପଳେଇ ଆସି ଛିଡ଼ା ହୋଇଛି ବଗିଚା ଆଡ଼କୁ ଥିବା ଛୋଟ ଛାତ ଉପରେ । ପୁରୁଣା ଘର । ମାପି ଚୁପି ଅଙ୍କକରା ଘରନୁହେଁ, ଅକୃପଣ ଭାବରେ ଯେଉଁଠି ସେଇଠି ଛାତ, ବାରଣ୍ଡା ଇତ୍ୟାଦି ତିଆରି ହୋଇଯାଇଛି । କରିଯାଇଛନ୍ତି ଗୃହକର୍ତ୍ତାମାନେ । ବଗିଚାପାଖକୁ ଏହି ଛାତଟା ଭାରି ଚମତ୍କାର । ଆସି ଛଡ଼ା ହୋଇଗଲେ ସୁଲସୁଲିଆ ପବନ ସାଙ୍ଗରେ ଗୋଟାଏ ଦୂର ବିସ୍ମୃତ ସୁଗନ୍ଧରେ ଭାର ଯେମିତି ତାପସୀର ସର୍ବାଙ୍ଗରେ ଆସି ନେସି ହୋଇଯାଏ ।

କିଏ ଏସବୁ- କେଉଁଠିଥିଲେ ଏମାନେ - ଏଇ ଚମ୍ପା, ମୁଚୁକୁନ୍ଦ ମଲ୍ଲିକାର ଦଳ ! ଏକଦା ଯେଉଁମାନେ ତାପସୀର ଘୁମନ୍ତ ଶିଶୁମନକୁ ଜାଗରିତ କରି କୈଶୋରର ସୁନାଦରଜାର ଚାବି ଖୋଲି ଦେଇଥିଲେ ।

ସେଇ ବୈଶାଖୀ ରାତ୍ରି !

ଆଶ୍ଚର୍ଯ୍ୟ, ତାପସୀର ବାରବର୍ଷ ବୟସ ପରେ ଆଉ କ'ଣ କୌଣସିଦିନ ବୈଶାଖମାସ ଆସିନାହିଁ । କେତେ ସମୟତ କେତେ ଜାଗାରେ ଘୂରିଛି, କିନ୍ତୁ କେଉଁଠି ତ ଫୁଟେ ନାହିଁ, ଚମ୍ପା, ମୁଚୁକୁନ୍ଦ, ମଲ୍ଲିକା ।

ମନେପଡ଼ିଲା— ଫୁଲମାଳ ପିନ୍ଧିବା ପାଇଁ ସାନଭାଇ ପାଖରୁ ଲାଞ୍ଛନା । ଆଉ- ଆଉ ସେଇଦିନନା ବଲ୍ଲଭଜୀଙ୍କ ମନ୍ଦିରକୁ ଯାଇଥିଲେ ସେମାନେ ।

ଏଇ ପରିବେଶ, ଆଉ ଏଇ ଗନ୍ଧ ସମାରୋହର ଦ୍ୟୋତ୍ୟ ବେଶ୍ ସ୍ପଷ୍ଟ କରି ସବୁ ମନେ ପଡ଼ିଯାଉଛି । କାହିଁ ଏତେଦିନେ ଏମିତି କରି ଆଖି ଉପରେ ଭାସିଉଠିଲା ନାହିଁ ବଲ୍ଲଭଜୀଙ୍କ ରୌଦ୍ରାଲୋକିତ ପ୍ରାଙ୍ଗଣରେ ମଝିରେ ସେଇ ପ୍ରସ୍ଫୁଟିତ କମଳ ପରି ରକ୍ତାଭ ଦୁଇଗୋଟି ପାଦ ଚିହ୍ନ, ବନାରସୀ ଯୋଡ଼ର ଝଲମଲିଆ ଅଞ୍ଚଳର ଚାକଚକ୍ୟ, ଇଷତ୍ କୁଞ୍ଚିତ ଘନ କଳାକେଶରାଶି ଭିତରେ ଗୋଟିଏ ଉଜ୍ଜ୍ୱଳ ମୁହଁ ।

ମୁହଁ ନୁହେଁ- ମୁହଁର ଆଭାସ । ମୁହଁଟା କୌଣସି ପ୍ରକାରେ ମନେ ପଡୁ ନାହିଁ । ସ୍ମୃତିର ଦରଜାରେ ମୁଣ୍ଡ ବାଡ଼େଇଲେ ବି ମନେ ପଡୁନାହିଁ ।

ସେହି ପାଦତଳେ ନିଜକୁ ସମର୍ପଣ କରିଦେବା । ଆଜି କ'ଣ ଏହା ଅସମ୍ଭବ ! କିଏ ଜାଣେ ହୁଏତ ଏଇ ଆବେଷ୍ଟନ ମଧ୍ୟରେ ନିଜକୁ ଅଟକାଇ ରଖିବା ଖୁବ ଅସମ୍ଭବ ନୁହେଁ ।

— କେଉଁଟା ଧର୍ମ କେଉଁଟା ନ୍ୟାୟ ?

ମୁଣ୍ଡ ଉପରେ ଯେଉଁ ନକ୍ଷତ୍ରର ଦଳ-ତଳର ମଣିଷ ପ୍ରତି ଅନୁକମ୍ପାର ଦୃଷ୍ଟି ମେଲି ଚାହିଁଛନ୍ତି ସେମାନେ କ'ଣ କହିପାରିବେ ତାପସୀର କର୍ତ୍ତବ୍ୟ କ'ଣ ?

ଅନେକ ରାତିରେ ହେମପ୍ରଭା ଉପରକୁ ଆସି ଛାତ ଉପରେ ତାପସୀକୁ ଆବିଷ୍କାର ଅବାକ ହୋଇଗଲେ ।

— ଏତେବେଳେ ଯାଏ ଶୋଇନାହୁଁ ତୁ ? ଏଠି ଘୂରି ବୁଲୁଛୁ ?

— ନିଦ ଆସୁନାହିଁ ନାନୀ ।

ହେମପ୍ରଭା ମନେ ମନେ ହସି ଉଠିଲେ । ନ ଆସିବା ତ ଉଚିତ । ଏଟା କ'ଣ ଶୋଇବାର ବୟସ ନା ଶୋଇବାର ରାତ୍ରି ! ତେବେ ତ ମରୁଭୂମି ପରି ଜୀବନ ତାପସୀର ।

ଛାୟାଛନ୍ନ ସ୍ନିଗ୍ଧଶୀତଳ ଜୀବନରେ କିମ୍ବା ବିରହର ରାତିରେ ଆଖିକୁ କ'ଣ ନିଦ ଆସେ ?

ଏଇ ଛାତରେ ଏମିତି ଶିଥିଳ ଭଙ୍ଗୀରେ ହେମପ୍ରଭା କ'ଣ ଛିଡ଼ା ହେଇ ନାହାନ୍ତି କେତେଥର ? ପନ୍ଧିଥାନ୍ତି ନୀଳାମ୍ବରୀ ଶାଢ଼ୀ- ଖୋସାରେ ଫୁଲରମାଳ- ଆଖିରେ ପ୍ରତୀକ୍ଷାର କ୍ଳାନ୍ତି ଆଉ ମୁହଁରେ ଅଭିମାନର ଭାର । ଉତ୍‌କୀର୍ଣ୍ଣ ହେଇ ଛିଡ଼ା ହୋଇଥା'ନ୍ତି ଘୋଡ଼ା ଖୁରାର ଶବ୍ଦକୁ କାନପାତି । ଘୋଡ଼ା ଚଢ଼ିବା ଥିଲା ବ୍ରଜେନ୍ଦ୍ରର ଏକମାତ୍ର ସୌକ ।

ମୁଣ୍ଡ ଉପରେ ଥିବା ନକ୍ଷତ୍ରଦଳ ଆଜିର ହେମପ୍ରଭାକୁ ଦେଖି କ'ଣ ଏକଥା ବିଶ୍ୱାସ କରିବେ- ନା ଏକ ସାଙ୍ଗରେ ହସି ଉଠିବେ !

କିନ୍ତୁ ସେ କଥା ଥାଉ ଆଜିର ସମସ୍ୟା ହେମପ୍ରଭାର ନୁହେଁ - ତାପସୀର । ଯାହା ଜୀବନରେ କୌଣସି ପରିଚିତ ପଦଧ୍ୱନି ନାହିଁ ।

—ନିଦ ସହଜରେ ଆସିବ ନାହିଁ, ନୂଆ ଜାଗା କି ନା, ଚାଲ ଶୋଇ ଶୋଇ କଥାବାର୍ତ୍ତା ହେବା । ତୋ ମା' କଥା ଆଶା କରୁନାହିଁ । ଅଭି, ସିଧୁ ଯଦି ଆସନ୍ତେ ଭଲ ହୁଅନ୍ତା । ଜୀବନର ଯାତ୍ରା ପୂର୍ଣ୍ଣ କରିବା ଆଗରୁ ଜୀବନର ଶେଷଇଚ୍ଛା ମେଣ୍ଟାଇ ନିଅନ୍ତି ।

ହେମପ୍ରଭାଙ୍କ ଜୀବନର ଯାତ୍ରା ଶେଷ ହେବାର ସମୟ ହୋଇଛି କି ନା ଭଗବାନ ଜାଣନ୍ତି । କିନ୍ତୁ ଆଶା ମେଣ୍ଟାଇବାର ଦାୟିତ୍ୱଟା ସ୍ୱୟଂ ନିଜେ ସେ ବହନ କରି ଚାଲିଛନ୍ତି ।

ପରଦିନ ସକାଳେ ଦୁଆର ମୁହଁରେ ଛୋଟିଆ ମଟରକାର୍‌ଟିଏ ଆସିଲାଗିଲା । ସରକାରବାବୁ ଲୋକ ପଠେଇ ଯେଉଁ ଖବର ଦେଇଥିଲେ ସେ କଥା ହେମପ୍ରଭାଙ୍କୁ ଜଣା ନଥିଲା । ସେ ଅବାକ୍ ହୋଇଗଲେ ।

ଅଭି ଆସିଛି ! ସତ୍ୟ ନା ସ୍ୱପ୍ନ ?

ଏକା ନୁହେଁ - ଗାଡ଼ି ମାଲିକ ଜଣେ ବନ୍ଧୁଙ୍କୁ ସାଙ୍ଗରେ ଧରି ।

ଠିକ୍ ସମବୟସୀ ବନ୍ଧୁ ନୁହେଁ, ତେବେ ଅସମବୟସୀମାନେ ମଧ୍ୟ ବେଳେ ବେଳେ ବନ୍ଧୁ ହୋଇଯା'ନ୍ତି ।

— ନାନୀ....ନାନୀ ଦେଖୁଛ ତ ତୁମରି ଟଣାରେ କେମିତି ଚାଲିଆସିଲି ।

— ଏ ମା' ମୋର ଭାଗ୍ୟ । ଗୁରୁଦେବ ମୋ କଥା କାନରେ ଶୁଣିଛନ୍ତି । କିଏ ଖବର ଦେଲା ? ସରକାରବାବୁ ନିଶ୍ଚୟ ? ଥରେ ଏଇ ଚାନ୍ଦ ମୁହଁଗଡ଼ିକୁ ଦେଖିବା ପାଇଁ ଯେ କି ଉତଲା ହେଉଥିଲି । ସିଧୁ ବୋଧହୁଏ ଆସିନାହିଁ ?

— ନା, ମା'ର ଦେହ ଭଲ ନାହିଁ, ଦିଜଣଯାକ ଆସିଲେ ନାହିଁ । ଅବଶ୍ୟ ହିସାବ କରି ଦେଖିଲେ ଆମେ ଦିଜଣ ଆସିଛୁ । ସାଙ୍ଗରେ ଜଣେ ବନ୍ଧୁ ଆସିଛନ୍ତି- କହିପାରିବି ନାହିଁ ସେ କାହା ଡାକରା ପାଇ ଆସିଛନ୍ତି । ଏତକ କହି ଦେଇ ଅମିତାଭ ଭଉଣୀ ଆଡ଼କୁ ଗୋଟାଏ ବଙ୍କା ଦୃଷ୍ଟି ହାଣିଲା - ଶ୍ଳେଷର ନୁହଁ କୌତୁକର ।

ଧକ୍ କରି ଉଠେ ତାପସୀର ଛାତିଟା । କିଏ ଆସିଛି ସାଙ୍ଗରେ ? ତାହା କ'ଣ ସମ୍ଭବ ? ନା, ନା ଅମିତାଭ ଯେ ତାକୁ ଦି ଆଖିରେ ବିଷ ପରି ଦେଖେ । ନିଜ ସାଙ୍ଗରେ ପୁଣି ଆଣିବ ? ପାଗଳ ନା କ'ଣ ତାପସୀ ? କିନ୍ତୁ କିଏ ?

ଏକରେ ତ ଘରଛାଡ଼ି କାଶୀ ପଳେଇବା ଲଜ୍ଜାରେ ତାପସୀ ସାନଭାଇଟିକୁ ଦେଖି ସେମିତି ଉଚ୍ଛ୍ୱସିତ ଅଭ୍ୟର୍ଥନାରେ ଛୁଟି ଆସି ପାରିଲା ନାହିଁ, ପ୍ରସନ୍ନ ମୁହଁରେ

କେବଳ ନାନୀ ପଛପାଖରେ ଆସି ଛିଡ଼ା ହୋଇଥିଲା । ବର୍ତ୍ତମାନ ଅଭିର କଥା ଶୁଣି ଏକବାର ମୂକ ହୋଇଗଲା ବିଚରା ।  ବେଶୀ ସମୟ ଚିନ୍ତା କରିବାକୁ ହେଲା ନାହିଁ, ଗୋଟାଏ ଦି'ଟା କଥାପରେ ଅଭି ବ୍ୟସ୍ତ ହୋଇ କହିଲା ଆରେ ଭଦ୍ରଲୋକଙ୍କୁ କ'ଣ ଗାଡ଼ିରେ ବସା ହୋଇଥିବ । ଯାଇ ଡାକି ଆଣେ । ଦିଦି ମିଷ୍ଟର ମୁଖାର୍ଜୀ ଆସିଛନ୍ତି କହି ବାହାରକୁ ଛୁଟି ଚାଲିଗଲା । ଦିଦି ସେଇଠି ଛିଡ଼ା ହୋଇ ପରଫ ହୋଇଗଲାଣି ।

ଯା' ଆଶଙ୍କା କରିଥିଲା ତାହା ସତ୍ୟ ! କି ସର୍ବନାଶ ! ଅଭିଟା ହଠାତ୍  ଏମିତି ବଦଳିଗଲା କିପରି ? କେଉଁପ୍ରକାର ଉତ୍କୋଚ ଦ୍ୱାରା ଅଭିକୁ ହାତ କରାଯାଇପାରେ !

ହେମପ୍ରଭା ସଚକିତ ହୋଇ କହିଲେ— ଅଭି କ'ଣ କହିଗଲା ? କିଏ ଆସିଛି ? ସେଇ ହତ ଭାଗାଟା ? ଆଉରି ଏଠିକି ଧାରଣା ଦେବାକୁ ଆସିଛି । କିମିତିକା ଅଲାଜୁକ ମଣିଷକି ? ଖବରଦାର ତୁ ସାମନାକୁ ବାହାରିବୁ ନାହିଁ, ବୁଝିଲୁ ?

ତାପସୀର କ'ଣ ବୋଧଶକ୍ତି ଅଛି ସେ ବୁଝିବ ! ତାହାର ସମସ୍ତ ସ୍ନାୟୁ ଶିରାରେ ଅଣୁ ପରମାଣୁରେ ଧ୍ୱନିତ ହେଉଛି କେବଳ ଗୋଟାଏ ଅବୋଧ ହାହାକାର ।

ଚିଠିଟା ନପଢ଼ି ଛିଡେଇ ଫୋପାଡ଼ିଦେବା ଅପେକ୍ଷା ଦେଖା ନକରି ଫେରାଇଦେବା ଯେ ଆହୁରି କେତେ କଠିନ ସେ ଅନୁଭବ ତାପସୀର ନାହିଁ ।

'ବେହିଆ ହତଭାଗା'ଟାକୁ ସାଙ୍ଗରେ ଆଣିଥିବାରୁ ଅମିତାଭର ବୁଦ୍ଧିକୁ ଧିକ୍କାର କରି କରି ହେମପ୍ରଭା ଉଙ୍କିମାରି ଦେଖିବାପାଇଁ ସିଢ଼ୀପାଖକୁ ଗଲାବେଳକୁ ଅପରାଧୀ ଯୁଗଳ ଉପରତାଲାକୁ ଉଠିଆସୁଛନ୍ତି ।

ଆଗପଛ ହୋଇ ଦୁଇଟି ପଦଧ୍ୱନି ।

ପ୍ରଥମ ପଦଧ୍ୱନି ତାରୁଣ୍ୟରେ ଉଜ୍ଜ୍ୱଳ ଅକୁଣ୍ଠ ଦାବୀର, ଦ୍ୱିତୀୟଟି ଯୌବନ ସଂଯତ କୁଣ୍ଠିତ ସଂଶୟର ।

—ନାନୀ ଏଇ ମୋର ବଂଧୁ— ଏଙ୍କରି ଗାଡିରେ ଆମେ ଆସିଛୁ । ଅମିତାଭର କଥାର ଉତ୍ତରରେ ହେମପ୍ରଭା ନିଜର ବୀରକ୍ତ-ତିକ୍ତ ସ୍ୱରକୁ କୌଣସି ପ୍ରକାର ସହଜ କରି କହିଲା— ବେଶ୍ ବେଶ୍ ନେଇଯା ସେ ଘରେ ବସେଇବୁ ।

ବାଃ ରେ ! ଘରେ ବସେଇବି ମାନେ ? ତୁମ ସାଙ୍ଗରେ ଟିକିଏ ଭାବଲାଭ କରିବା ଇଚ୍ଛାନେଇ ସେ ଏଠାକୁ ଆସିଛି, ସେଇଆ  ନା ନାହିଁ ମିଷ୍ଟର ମୁଖାର୍ଜୀ ?

ଅଜନ୍ତାର ଛନ୍ଦରେ ଗଠିତ ଓଷ୍ଠଧାରରେ ଇଷତ୍ କୌତୂକ ହାସ୍ୟର ରେଖା ଫୁଟି ଉଠିଲା ।

ହେମପ୍ରଭା ଅବାକ୍ ହୋଇ ଭାବିଲେ କେଉଁଠି ଯେମିତି ଦେଖିଛନ୍ତି ପିଲାଟିକୁ ? ଠିକ୍ ମନେ ପଡୁନାହିଁ; କିନ୍ତୁ ଭାରି ସୁକୁମାର ମୁହଁଖଣ୍ଡି । ନୀରସ କଣ୍ଠରେ କହିଲେ– ମୋ ସାଙ୍ଗରେ ଭାବ ଲାଭ ! ଦରମଲା ବୁଢ଼ୀଟେ ମୁଁ ଭଦ୍ର ସମାଜକୁ ଅଯୋଗ୍ୟ । ହୋ ହୋ କରି ହସିଉଠିଲା ଅମିତାଭ ।

ଏ ପାଖରେ ତାପସୀର ଅବସ୍ଥା ଶୋଚନୀୟ । ଛିଡ଼ା ହୋଇ ରହିବା ଯେତେ ଅସ୍ୱସ୍ତିକର, ହଠାତ୍ ଚାଲିଯିବାଟା ତା ଚାଏଁ କିଛି କମ୍ ଅସ୍ୱସ୍ତିକର ନୁହେଁ ।

ହେମପ୍ରଭା ନିତାନ୍ତପକ୍ଷେ ଅମିତାଭର ମାନ ବା ମନ ରଖିବାପାଇଁ କହିଲେ– ପୁଅଟିର ନାମ କ'ଣ ? –କିରୀଟୀ କୁମାର ମୁଖାର୍ଜୀ । ଉତ୍ତର ଦେଲା ଅମିତାଭ ।

–ବାପ ମା' ଅଛନ୍ତି ତ ? କେତୋଟି ଭାଇ ଭଉଣୀ ତୁମର ?

ଏଇ କେତୋଟି ମାମୁଲି ପ୍ରଶ୍ନ କଲେ ହେମପ୍ରଭା ।

–ନା ନାନୀ, ବାପ-ମା' ଭାଇ-ଭଉଣୀ କେହି ନାହାନ୍ତି ମୋର ।

–ନାନୀ !

ହଠାତ୍ ଯେପରି କେଉଁଠୁ ଆଞ୍ଜୁଳା ଏ ମମତା ଆସି ହେମପ୍ରଭାଙ୍କ ହୃଦୟରେ ବିଛାଡ଼ି ହୋଇ ପଡ଼ିଲା । କେହି-କୁଆଡ଼େ ନାହାନ୍ତି ! ଆହା ! ସେଇଥିପାଇଁ ଏମିତି ସ୍ନେହକାଙ୍ଗାଳ ମୁହଁ ।

–ଜୋର କରି ମଧ୍ୟ ବିଦ୍ୱେଷ ଆଣି ହେବନାହିଁ । ମୁହଁରେ ସେହି 'ଆହା' ଶବ୍ଦ ଉଚ୍ଚାରିତ ହେଉଥାଏ । କେହି ନାହିଁ, ଆହା ! ଘର କେଉଁଠି ତୁମର ପୁଅ !

–ଏଇ ପାଖ ଗାଆଁରେ ।

ତାପସୀ ଏତେବେଳେ ଆସ୍ତେ ଆସ୍ତେ ଘୁଞ୍ଚି ଘୁଞ୍ଚି ଛାତର ସେପାଖ କଡ଼କୁ ଚାଲିଯାଇ କାନ୍ଥ ସାଙ୍ଗରେ ମିଶିଯାଇଛି । ତଥାପି କାନରେ ବାଜିଗଲା– ପାଖ ଗାଆଁରେ କାହିଁ ଏକଥାତ କୌଣସି ଦିନ ଜଣାନଥିଲା । ତାପସୀ କ'ଣ କୌଣସି ଦିନ ଜାଣିବାକୁ ଚାହିଁଥିଲା, କିରୀଟୀର ଘରଦ୍ୱାର କେଉଁଠି ? ଅନାଗ୍ରହ ଦେଖାଇବାକୁ ଯାଇ ଭଦ୍ରତାବୋଧ ରହେନାହିଁ ସବୁ ସମୟ । ମା-ବାପ ଯେ ନାହାନ୍ତି ଏଇ କଥାଟା କେବଳ ଆଳାପ, ଆଲୋଚନାର ମାଧ୍ୟମରେ ଜଣାପଡ଼ିଛି ମାତ୍ର ।

ହେମପ୍ରଭା ଚମକିଲେ ନାହିଁ, ବରଂ ପ୍ରସନ୍ନ ମୁହଁରେ କହିଲେ ତାହା ବୁଝିଲି । ସେଇଥିପାଇଁ ଭାବୁଛି କେଉଁଠି ଯେମିତି ଦେଖିଛି । ପାଖ ଗାଆଁରେତ– ପିଲାବେଳେ କୌଣସି ସୂତ୍ରରେ ଦେଖିଥିବେ ।

—ଦେଖିଛନ୍ତି ନିଶ୍ଚୟ । ନିହାତି କ୍ଷୀଣ ହେଲେ ମଧ୍ୟ ଯୋଗସୂତ୍ର ଯେତେବେଳେ ରହିଛି ଗୋଟାଏ ।

ବଙ୍କା ଓଠ ଧାରରେ ସେମିତି ବଙ୍କା ହସ ଲାଗିଥାଏ ବିଦ୍ରୂପର ନୁହେଁ, କୌତୂକର । ଅମିତାଭ ମଧ୍ୟ ହସୁଛି । ତାହାର ଚାପା ହସର ଆଭାରେ ମୁଖର ଉଜ୍ଜଳତାକୁ ଦେଖି କେମିତି ଯେପରି ବୋକା ହେଇଯାଇଛି ତାପସୀ । କ'ଣ ଘଟଣା ?

ଯୋଗସୂତ୍ର ଯାହା ଅଛି ସେଥିରେ ନାନୀ ସାଙ୍ଗରେ ସଂପର୍କ କ'ଣ, ସେଟାକୁ ଏମିତି କହି ବୁଲିବାର ଅର୍ଥ କ'ଣ । ତେବେ ? ଅମିତାଭ ମୁହଁରେ ଯେମିତି ଗୋଟାଏ ଷଡଯନ୍ତ୍ରର ରହସ୍ୟ ଅଙ୍କା ହୋଇଛି । ଏମାନେ ଏଠାକୁ ଆସିଛନ୍ତି କେଉଁ ଫନ୍ଦି ଆଣ୍ଟକରି, ସେହି ବାହାଘର କଥାଟା ହୋଇଥିବ ଆଉ କ'ଣ ହୋଇପାରେ ? କିନ୍ତୁ ଅଭି...

ହେମପ୍ରଭା ନିଜ ମନେ ମନେ ଉତ୍ତର ଦେଲେ ଯୋଗସୂତ୍ର ! ସେ କ'ଣ ? ବୁଝିପାରୁନାହିଁତ ! କିଏ ତୁମେ ପୁଅ, ବାପାଙ୍କ ନାମ କ'ଣ ?

—ବାପାଙ୍କ ନାମ ଥିଲା କନକ ମୁଖୋପାଧ୍ୟାୟ, କିନ୍ତୁ ସେ କଥା କହିଲେ କ'ଣ ଚିହ୍ନି ପାରିବେ ଆପଣ ? ଜେଜେଙ୍କ ନାମଟା ବରଂ ଆପଣ ଜାଣିଥିବେ ।

—ଜେଜେ ! କିଏ ତୁମର ଜେଜେ କୁହତ ? ଏ ଅଞ୍ଚଳରେ ପୁରୁଣା କାଳର ସମସ୍ତଙ୍କ ନାମ ଜାଣେ । ତେବେ ଅନେକଦିନ ହେଲା ଗାଆଁ ଛାଡ଼ିଥିଲି । ଭୁଲି ଯାଉଛି...

ତାପସୀ ଏମିତି କରି ଚାହିଁଛି କାହିଁକି ? ସମସ୍ତ ଇନ୍ଦ୍ରିୟ ଦେଇ ଉତ୍ତରଟାକୁ ଶୁଣିବାକୁ ଚାହେଁନା କ'ଣ— କ'ଣ କହିବ କିରୀଟୀ ?

—ଭୁଲି ଯିବେ ନାହିଁ ଆପଣ, ଭୁଲିଗଲେ ହିଁ ସର୍ବନାଶ ! ଜେଜେଙ୍କ ନାମ ଥିଲା ସ୍ୱର୍ଗତ କାନ୍ତିଚନ୍ଦ୍ର ମୁଖୋପାଧ୍ୟାୟ । ମୁଁ ବୁଲୁ... ।

କି ଚମତ୍କାର ହସଭରା ମୁହଁରେ କଥାଟା ଉଚ୍ଚାରଣ କଲା । ଜିଭ ଅଟକିଲା ନାହିଃ, ଗଳା ମଧ୍ୟ ଅଟକିଲା ନାହିଁ । ଅନାୟାସ ଭାବେ କିରୀଟୀ ଉଚ୍ଚାରଣ କଲା ମୁଁ ବୁଲୁ । ଏଟା କ'ଣ ଗୋଟାଏ ବିଶ୍ୱାସ କରିବା ଭଳି କଥା ? ପରିହାସ କରିବାକୁ ଆଉ ଭାଷା ପାଇଲାନାହିଁ ? ନା ଅମିତାଭ ସାଙ୍ଗରେ ଷଡଯନ୍ତ୍ର କରି ନାନୀକୁ ଠକେଇବାକୁ ଆସିଛି ? ଅମିତାଭ କେବେ ତାର ବଂଧୁ ହେଲା ? ତାପସୀ ଚାଲି ଆସିବା ପରେ ପରେ କ'ଣ ପୃଥିବୀ ଓଲଟି ଯାଇଥିଲା ? ନାନୀକୁ ଠକେଇ ସେ କ'ଣ ତାପସୀକୁ ଗ୍ରାସ କରିବାକୁ ଚାହେଁ ? ତାପସୀ ଏସବୁ କ'ଣ ଭାବୁଛି ?

ସେମାନେ କ'ଣ କୁହାକୁହି ହେଉଛନ୍ତି ।

ଏସବୁ କଥାର କୌଣସି ଅର୍ଥ ଅଛିନା କ'ଣ ? କ'ଣ କହୁଛନ୍ତି ?

ମୋର ପିଉସୀ ରାଜଲକ୍ଷ୍ମୀ ଦେବୀଙ୍କଠାରୁ ଚିଠିପାଇ ଅବଶ୍ୟ ଆସିଛି ମୁଁ । ତେବେ ଅମିତାଭ ମତେ ଜୋରକରି ଏଠିକି ଟାଣି ଆଣିଛି । 'ଚିହ୍ନି ନାହିଁ' ବୋଲି କହି ତଡିଦେବେ ନାହିଁ ତ !

ସେ କ'ଣ ମଣିଷ ? ସେ କ'ଣ ପାଷାଣ ? ତାପସୀ କ'ଣ ବର୍ତ୍ତମାନ ସଜ୍ଞାନରେ ଅଛି ? କିରୀଟୀ ନାମଟା ତେବେ ଛଦ୍ମ ନାମ— ନା ସତ୍ୟ ? ଏଇ ଦୀର୍ଘକାଳ ସମୟ ମଧ୍ୟରେ ସ୍ୱାମୀର ନାଆଁଟା କେବେତ ଜାଣିବାକୁ ଚେଷ୍ଟା କରିନାହିଁ ତାପସୀ । ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ ! ବୁଲୁ ଯେ ଗୋଟାଏ ସତ ସତିଆ ନାଆଁ ହୋଇପାରେନା, ନିତାନ୍ତ ଆଦରର ଡାକ । ସେଇଥିପାଇଁ ଖିଆଲ ହୋଇନାହିଁ କୌଣସିଦିନ । ତାପସୀ ମୂର୍ଖ, ତାପସୀ ଅବୋଧ । ତାପସୀ ବାସ୍ତବ ବୁଦ୍ଧିହୀନ ସ୍ୱପ୍ନ ଜଗତର ଜୀବ ।

ସେ କ'ଣ ତାପସୀ ପରି ଅବୋଧ ? ନା ଏମିତି ଜାଣିଶୁଣି ବସି ବସି ମଜା ଦେଖୁଛି । ନିର୍ଦ୍ଦୟ ଆମୋଦରେ ଏଇ ନିଦାରୁଣ ଯନ୍ତ୍ରଣାକୁ ଉପଭୋଗ କରୁଛି । ତାପସୀ ତାର ସେହି ନିଷ୍ଠୁର ଆନନ୍ଦର ଖୋରାକ ଯୋଗାଇ ଆସୁଛି ।

କିରୀଟୀର ସମସ୍ତ ବ୍ୟବହାରଟା ପୂର୍ବ ପରିକଳ୍ପିତ, ଏଇ କଥାଟା ମୁଣ୍ଡରେ ଖେଳିଯିବା ମାତ୍ରେ ମୁଣ୍ଡର ସମସ୍ତ ରକ୍ତ ଯେମିତି ନିଆଁ ହୋଇଗଲା । ତାପସୀକୁ ନେଇ କେବଳ ଖେଳ ହିଁ ଚାଲିବ ? ଆଚ୍ଛା ତାର ମତଲବଟା ତେବେ କ'ଣ ଥିଲା— ଛଦ୍ମବେଶର ଆଢୁଆଳରେ ନିଜକୁ ଢାଙ୍କି ତାପସୀକୁ ପରୀକ୍ଷା କରିବା ? ତରଳଚିତ୍ତ ତାପସୀ ପୁରୁଷକଣ୍ଠର ଆହ୍ୱାନ ମାତ୍ରେ ଜବାବ ଦେଉଛି କି ନାହିଁ ତାହାରି ପରୀକ୍ଷା ? ଯେତେବେଳେ ସେ ଏମିତି ହୁଏତ ଭାବିଛି— ଏଇ ପ୍ରକାର ସ୍ୱଭାବ ତାପସୀର— ଯାହାର ତାହାର ଡାକରେ ନିଜକୁ ବିକ୍ରୀ କରିଦେବ । ଭାବିଛି ଆଉ ମନେମନେ ନଜାଣି କେତେ ହସିଛି । ହୁଏତ ଆଜି ଧିକ୍କାର ଦେବାକୁ ଆସିଛି ।

ଦୁରନ୍ତ ଅଭିମାନରେ ସମସ୍ତ ବୁଦ୍ଧିବୃତ୍ତି ଉଗ୍ର ହୋଇ ଉଠେ । ଏହି ଲୋକ ସାଙ୍ଗରେ ପୁଣି ନୂଆ କରି ଛିଣ୍ଡା ଗଣ୍ଠିକୁ ଯୋଡ଼ିବାକୁ ପଡ଼ିବ । କୃତାର୍ଥଚିତ୍ତରେ ଏହାର ପଦଚିହ୍ନ ଅନୁସରଣ କରି ଯିବାକୁ ହେବ ତା ସାଙ୍ଗରେ ସଂସାରବାଂଧିବାକୁ ।

ଅସମ୍ଭବ !

ତାପସୀର ଧ୍ୟାନର ଦେବତାକୁ ଭାଙ୍ଗି ଚୋରିକଲା କିରୀଟୀ— 'ବୁଲୁ' ବିଲୁପ୍ତ ହୋଇଗଲା; କିନ୍ତୁ ତାପସୀକୁ ଇଚ୍ଛାକଲେ ଯେ ଅଧିକାର କରାଯାଇପାରିବ ଏକଥା ମନେକରିବାପରି ଧୃଷ୍ଟତା ଯେପରି ତା ମନ ଭିତରେ ନଆସେ । ଆତ୍ମପରିଚୟ ଗୋପନକାରୀ କାପୁରୁଷ ସାଙ୍ଗରେ ତାପସୀର କୌଣସି ସମ୍ବନ୍ଧ ନାହିଁ ।

ହେମପ୍ରଭାର ବହୁ ସାଧ ସାଧନା, ଅମିତାଭର ତୀକ୍ଷ୍ଣ ବାକ୍‌ଚାତୁରୀ, କୌଣସିଟା ଯେତେବେଳେ ତାପସୀକୁ ଟଳାଇ ପାରିଲା ନାହିଁ, 'କେବଳ ଟିକିଏ ଦେଖାକରିବା'

ପ୍ରସ୍ତାବ ପର୍ଯ୍ୟନ୍ତ କାଟ ଖାଇଗଲା, ଅଗତ୍ୟା ମ୍ଳାନ ହସହସି ବୁଲୁକୁ ବିଦାୟ ଦେବାକୁ ପଡ଼ିଲା । ରାଗକରି ଅମିତାଭ ମଧ୍ୟ ଭୋକ ଉପାସରେ ସନ୍ଧ୍ୟା ଟ୍ରେନ୍‌ରେ ଫେରିଗଲା । ଭଉଣୀର ବ୍ୟବହାର ଚିରଦିନ ତା ପକ୍ଷରେ ବିରକ୍ତିକର ଓ ପ୍ରହେଳିକାପୂର୍ଣ୍ଣ ।

ଆଗରୁ ଅବଶ୍ୟ କିରୀଟୀକୁ ସେ ଦି ଆଖିରେ ଦେଖି ପାରୁ ନଥିଲା; କିନ୍ତୁ ସେତେବେଳେ ପରିଚୟ ଜଣାନଥିଲା । ବର୍ତ୍ତମାନ ଯେତେବେଳେ ସବୁଆଡୁ ସୁବ୍ୟବସ୍ଥା ଦେଖାଗଲା । ସେତିକିବେଳେ ମୁହଁ ବୁଲେଇ ବସୁଛି ଦିଦି । ଖାମ୍‌ଖିଆଲର ଗୋଟାଏ ସୀମା ରହିବା ଉଚିତ ନୁହେଁ ?

ଦିବ୍ୟ ପ୍ରେମରେ ପଡ଼ି ଉବୁଟୁବୁ ହେଉଥିଲା, ବର୍ତ୍ତମାନ ସତସତକା ସ୍ୱାମୀ ଜାଣିବାପରେ ସେ ସବୁ କୁଆଡ଼େ ଉଡ଼ିଗଲା । ଈଶ୍ୱର ଜାଣନ୍ତି ସେହି ବାହାଘର ନିର୍ବନ୍ଧ ଦିନ ସେହି ଆସରରୁ କିଏ କ'ଣ ନିରୁଦ୍ଦିଷ୍ଟ ହୁଏ ?

ତାପସୀ ନିଖୋଜ ହୋଇଯିବାପରେ ପାଟଣାରୁ ବୁଲି ଫେରିଆସି କିରୀଟୀ ଯେଉଁଦିନ କେବଳ ମାତ୍ର ଅମିତାଭ ପାଖରେ ନିଜର ପରିଚୟ ବ୍ୟକ୍ତକରି କ୍ଷମା ଚାହିଁଲା ସେହିଦିନଠାରୁ ତାକୁ ଏତେ ଭଲପାଇ ବସିଛି ଅମିତାଭ । ଯେଉଁ ଭଲପାଇବାଟା ପ୍ରାୟ ପୂଜା ପର୍ଯ୍ୟାୟକୁ ଉଠିଛି ।

ଏ ସେହି ବ୍ୟକ୍ତି ଯାହାକୁ, ଅମିତାଭ ଦେବତାର ପାଖାପାଖି ନେଇ ଆସିଛି । ତାହାଙ୍କୁ ଅପମାନ ଦେଇ ତଡିଦେଲା ଦିଦି । ନିର୍ବନ୍ଧ ହେଲାଦିନ ଘରଛାଡ଼ି ପଳେଇବାର ଗୋଟାଏ ଯୁକ୍ତି ଅଛି, କିନ୍ତୁ ଆଜିର ଘଟଣା ଘୋର ଅପମାନ ।

ଅପମାନ ଛଡ଼ା ଆଉ କ'ଣ ?

କାହା ସଙ୍ଗେ ଦେଖାକରିବାକୁ ମନାକରିବା ତ ଅପମାନ କରିବା ସଙ୍ଗେ ସମାନ ।

ବିରାଟ ଘରଟାର ନିତାନ୍ତ ନିର୍ଜନ ଗୋଟିଏ କଣରେ ସ୍ତମ୍ଭିତ ହୋଇ ବସିଥିଲା ତାପସୀ ।

ସ୍ତମ୍ଭିତ, ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ନିଜ ବ୍ୟବହାରରେ,. କିରୀଟୀର ବ୍ୟବହାରରେ, ମନେହୁଏ ସ୍ୱୟଂ ବିଧାତା ପୁରୁଷର ବ୍ୟବହାରରେ ସ୍ତମ୍ଭିତ ହୋଇ ଯାଇଛି ସେ । ତାପସୀକୁ ସଂସାରକୁ ପଠେଇବା ପରେ ତାପସୀ ସମ୍ବନ୍ଧରେ ଏତେ ସଚେତନ କାହିଁକି ସେ ?

ଭୁଲିକି ରହିପାରୁ ନାହାନ୍ତି ନିଶ୍ଚିନ୍ତ ହୋଇ, ଅବିରତଭାବେ ତାକୁ ପିଟି ପିଟି କେଉଁ ଭାବରେ ଗଢ଼ିବାକୁ ଚାହାଁନ୍ତି ।

ଆଚ୍ଛା— ସାବିତ୍ରୀ ଦେଶର ଝିଅମାନଙ୍କର ଗଠନ କାର୍ଯ୍ୟଟା କ'ଣ ସେ ଇଟା-କାଠ ଦେଇ କରିଛି ? ରକ୍ତ ମାଂସ ନଥାଏ ? ହୃଦୟ ବୋଲି କୌଣସି ବସ୍ତୁ ରହିବାର ଆଇନ କ'ଣ ସେମାନଙ୍କର ନାହିଁ । ସେହି ଅନ୍ୟାୟ ଆଇନକୁ ଅମାନ୍ୟ କରେ ନାହିଁ କାହିଁକି ତାପସୀ ? କାହିଁକି ହୃଦୟର ଅନୁଶାସନ ମାନି ଯାହା ଖୁସି ତାହା କରିନାହିଁ ଏତେଦିନ ହେଲା ?

ମନ ଭାସିଯାଏ ଅନ୍ୟ ସ୍ରୋତରେ ।

ଚିରଦିନର ସ୍ୱପ୍ନମୟ 'ବୁଲୁ' କାଳେ ମିଷ୍ଟର ମୁଖାର୍ଜ୍ଜୀ, ଏତେ କାଣ୍ଡ ପରେ ବି ଠିକ୍ ବିଶ୍ୱାସ ହୁଏନାହିଁ ।

ଆଚ୍ଛା କେଉଁ ନାମଟା ମନାଏ ତାହାକୁ ? କିରୀଟୀ ନା ବୁଲୁ ? ବୁଲୁ... ବୁଲୁ... । ତାପସୀର ଆବଲ୍ୟର ଧ୍ୟାନର ମନ୍ତ୍ର । କିରୀଟୀର ଚେହେରାଟା କିଛିଦିନ ପାଇଁ ତାହାର ବୁଦ୍ଧିକୁ ଆଚ୍ଛନ୍ନ କରି ରଖିଥିଲା ସେଥିରେ ସନ୍ଦେହ ନାହିଁ; କିନ୍ତୁ ନାମ ?

ନାଃ ନାମଟାକୁ କୌଣସିଦିନ ପ୍ରାଧାନ୍ୟ ଦେଇ ନାହିଁ ତାପସୀ । 'ମିଷ୍ଟର ମୁଖାର୍ଜ୍ଜୀ' ଛଡ଼ା ଆଉ କୌଣସି ସଂଜ୍ଞା ତାହାର ଯେ ଅଛି, ସେ କଥା ମନେ ପଡ଼ିନାହିଁ କୌଣସି ଦିନ । କିରୀଟୀ ନାମଟା କେବେ କ'ଣ ହୃଦୟରେ ସ୍ପନ୍ଦନ ସୃଷ୍ଟି କରିଛି । ସେ ନାମଟା ଥିଲା କେବଳ ପରିଚୟ ମାତ୍ର ।

ମଣିଷଟା ଥିଲା ସତ୍ୟ ।

କିନ୍ତୁ 'ବୁଲୁ' ଶବ୍ଦଟାତ କେବଳ ମାତ୍ର ଗୋଟାଏ ନାମ ନୁହେଁ, ଏଟା ଯେମିତି ଗୋଟାଏ ଧ୍ୱନିମୟ ଅନୁଭୂତି— ଯେଉଁ ଅନୁଭୂତି ମିଶି ଯାଇଛି ତାପସୀର ସମସ୍ତ ସତ୍ତାରେ ସମସ୍ତ ଚେତନାରେ ।

ସେଇ ବୁଲୁକାଳେ ଅକପଟ ଭାବରେ ହେମପ୍ରଭାଙ୍କ ନିକଟରେ ସ୍ୱୀକାର କରିଯାଇଛି, ସେ ତାପସୀକୁ ସେହି ବିବାହର ଶୁଭରାତ୍ରୀଠାରୁ ରୀତିମତ ଭଲ ପାଇବାକୁ ଆରମ୍ଭ କରିଛି ।

ଏଇ ଦୀର୍ଘକାଳ ଧରି ତାପସୀକୁ ପାଇବାର ସ୍ୱପ୍ନ ହିଁ ଥିଲା ତାର ଧ୍ୟାନ ଜ୍ଞାନ ଧାରଣା ।

ସେଇ ଲୋଭରେ ଆପଣା ପରିଚୟ ଗୋପନ କରି ଏ ପରିବାର ସାଙ୍ଗରେ ଘନିଷ୍ଠତା କରିଛି ।

ଅର୍ଥାତ ତାପସୀର ଧାରଣା ଭୁଲ୍ ନୁହେଁ । ଯଚେଇ ।

ହେମପ୍ରଭା କହୁଛନ୍ତି ବୁଲୁ କିଛି ଅନ୍ୟାୟ କରିନାହିଁ । ସତରେ ତ ଏତେ ବର୍ଷ ଆଗର ସେହି ଛୋଟ କିଶଳୟଟି ଏତେଗୁଡେ ବର୍ଷର ଖରାଝାସରେ, ଶୀତରେ, ଝଡ଼ରେ ବିବର୍ଣ୍ଣ ହୋଇଯାଇ ନାହିଁ, ମ୍ଳାନ ହୋଇଯାଇ ନାହିଁ ଠିକ୍ ସେମିତି ଅଛି, ଏ ପ୍ରମାଣ ସେ ପାଇବ କେଉଁଠୁ ? ପରୀକ୍ଷା କରିବାର ଇଚ୍ଛାଟା ସ୍ୱଭାବିକ । ସେଇ ଇଚ୍ଛାର ଆକର୍ଷଣରେ ଚିତ୍ରଲେଖା ପରିବାରର ପାଖାପାଖି ଆସିବାର ସୁଯୋଗ ସୃଷ୍ଟି କରିବାକୁ ପଡ଼ିଛି ତାହାକୁ– ଅନେକ ଚେଷ୍ଟାରେ ଅନେକ କୌଶଳରେ ।

ଅବଶ୍ୟ ଚିତ୍ରଲେଖାର ଆଖିରେ ପଡିବାପରେ ଆଉ ବେଶି ପରିଶ୍ରମ କରିବାକୁ ପଡ଼ିନାହିଁ ତାକୁ । ଅଜସ୍ର ସୁଯୋଗ ସେ ସୃଷ୍ଟି କରି ଦେଇଛନ୍ତି ।

ହୁଏତ ହେମପ୍ରଭାର କଥା ଠିକ୍ ।

କିନ୍ତୁ ସେହି ନିଦାରୁଣ ପରୀକ୍ଷା ଦେବାକୁ ଯାହାର ଛାତି ଥରି ଉଠିଛି, ଟୀଳଟୀଳ ହୋଇ ପେଷି ହୋଇ ଯାଇଛି ସେ କ'ଣ - କହିବ ? କହିବ କାମଟା ଖୁବ୍ ନ୍ୟାଯ୍ୟ– ଖୁବ୍ ଭଲ ହୋଇଛି ବୁଲୁର ? ତାପସୀ ଯେ ଅହରହ ଯନ୍ତ୍ରଣା ଭୋଗ କରୁଛି, ସେ କଥା କ'ଣ ତା' ଆଖିରେ ପଡ଼େନାହିଁ ? ଦିନପରେ ଦିନ ସେହି ଯନ୍ତ୍ରଣାକୁ ଦେଖି ମଧ ପରୀକ୍ଷାର ଇଚ୍ଛା ମେଣ୍ଟେ ନାହିଁ ? ଅବଶେଷରେ ସେଇ ଶାନ୍ତ ଅବସନ୍ନ ମଣିଷଟି ଘର ଛାଡ଼ି ପଳେଇ ଆସିଲା, ତାପରେ ଆସିଲେ, ହସ ହସ ମୁହଁରେ ଅଭୟବାଣୀ ଶୁଣାଇବାକୁ ! ଦୀର୍ଘଦିନ ଧରି ଏକା ଲୁଚୁକାଳି ଖେଳୁଥିଲ ପଦୁଟିଏ କହି ପାରିଲ ନାହିଁ– ମୁଁ ହେଉଛି ତୁମର ଇଷ୍ଟଦେବତା, ପ୍ରଲୋଭନର ଛଦ୍ମବେଶରେ ପରୀକ୍ଷା କରୁଥିଲି ମାତ୍ର ।

ଦୀର୍ଘ ଚିଠିର ମାର୍ଫତରେ ସେଇକଥା କାଲେ ଜଣେଇ ଦେଇଥିଲା ସେ– ସେ ଚିଠିକୁ କାଶୀରେ ରହିବାଘରେ ଅପଠିତ ଅବସ୍ଥାରେ ଚିରି ଫୋପାଡ଼ି ଦେଇଥିଲା ତାପସୀ । କିଏ ଜାଣେ ଖୋଲି ପଢ଼ିଥିଲେ ଆଜିର ଇତିହାସ ହୋଇଥା'ନ୍ତା ଅନ୍ୟରୂପ ।

କିନ୍ତୁ ବର୍ତ୍ତମାନ ଆଉ ବଦଳା ଯାଇ ପାରିବ ନାହିଁ ।

କୌଣସିଥିରେ ପ୍ରୟୋଜନ ନାହିଁ ତାପସୀର– ନା ଯୁଦ୍ଧରେ, ନା ରାଜତ୍ୱରେ । ଛାତି ଫାଟିଗଲେ ମଧ ମୁହଁରେ ହସ ଫୁଟେଇ ସେ ହେମପ୍ରଭା ପାଖରେ ଘୋଷଣା କରିଛି– କେହି ଯେ ମତେ ବଛେଇ ଯଚେଇ କରି ଅବଶେଷରେ ଗ୍ରହଣ କରି କୃତାର୍ଥ କରିବ, ଏସବୁ ବରଦାସ୍ତ ହେବ ନାହିଁରେ ବାବା । ତୋର ଆଦରର କୁଟୁମ୍ବ ଆସିଛନ୍ତି, ସନ୍ଦେଶ, ରସଗୋଲା ଖୋଇ ଆପାୟିତ କର ତାଙ୍କୁ, ମୋ ଆଶା ଛାଡ଼ିଦେ ।

ହେମପ୍ରଭା ପ୍ରଶ୍ନ କରିଥିଲେ– ତୁ ଯେ ଘର ଛାଡ଼ି ପଳେଇ ଆସିଥିଲୁ ବରଖୋଜିବାକୁ, ସେଇ ବରକୁ ପାଇଲୁ ଛାଡ଼ିବୁ ? ଏମିତି ଫେରେଇ ଦେଲେ ସେ କ'ଣ ଆଉ ତତେ ଖୋଜିବାକୁ ଆସିବ ?

ହୃଦୟର ସମସ୍ତ ଶକ୍ତିକୁ ଏକତ୍ରକରି ମୁହଁରେ ହସ ଫୁଟେଇଥିଲା ତାପସୀ–

କ'ଣ କରିବି କହ ନାନୀ ? ସମସ୍ତଙ୍କୁ କ'ଣ ବର ଜୋଟେ ? ମୋର ଅଦୃଷ୍ଟରେ ବର ବଦଳରେ ଅଭିଶାପ !

ହେମପ୍ରଭା କପାଳରେ କରାଘାତ କରି କହିଥିଲେ– ଏ କି ସର୍ବନାଶା ବୁଦ୍ଧି ତୋ ମୁଣ୍ଡରେ ପଶିଛି ତାପସ ? ଭଗବାନ ନିଜେ ହାତରେ ଯେତେବେଳେ ଏତେବଡ଼ ସୌଭାଗ୍ୟ ଆଣି ଦେଇଛନ୍ତି, ତୁ ଏଇ ଛୋଟିଆ କଥାରେ ଅବହେଳା କରିବସିବୁ ସେଇ ସୌଭାଗ୍ୟକୁ । ତୋର ଅଭିମାନଟା କ'ଣ ଏତେବଡ଼ ହେଲା ।

–ଅଭିମାନ କାହାର ? କେବଳ ମାତ୍ର 'ମାନ' ନାନୀ ।

ମା' ବସୁମତୀ ଯେ ଆଜିକାଲି ବୁଢ଼ୀ ହେଇ ସ୍ଥବିର ହୋଇ ଯାଇଛନ୍ତି ତାକି ମରିଗଲେ ବିଚରା ଝିଅମାନଙ୍କର ମାନସମ୍ମାନ ବଂଚେଇବାକୁ ଦ୍ୱିଧା ହୋଇ କୋଳକୁ ଆଉ ଟାଣିନେବେ ନାହିଁ । ତା ନହେଲେ ଏ ପରୀକ୍ଷାର ଜ୍ୱାଳାରେ ପାତାଳରେ ପ୍ରବେଶ କରି ବଂଚିଯା'ନ୍ତି ।

ଅଗତ୍ୟା ରାଗିକରି ଉଠିଗଲେ ହେମପ୍ରଭା । ଇଆଡ଼େ ରାଗ ଜଣେଇବାପାଇଁ ଜଳ ସ୍ପର୍ଶ ନକରି ଚାଲିଗଲା ଅମିତାଭ । ଆଉ କାଲେ ମ୍ଳାନ ହସହସି ବିଦାୟ ନେଇଛି ବୁଲୁ !

ତାପସୀ ରହିଯାଇଛି ଏକା ।

ସମସ୍ତେ ଯେମିତି ତାପସୀକୁ ତ୍ୟାଗ କରି ଚାଲିଯାଇଛନ୍ତି ।

ତେବେ କ'ଣ ତାପସୀର ଭୁଲ ? ଦୁଇଟି ବଡ଼ ସମସ୍ୟାର ଗଣ୍ଠି ତାପସୀ ଜୀବନକୁ ଜଟିଳକରି ଦେଇଥିଲା, ଏତେ ସହଜରେ ସେ ଗଣ୍ଠି ଯେ ଖୋଲି ଯିବ

ସେଥିପାଇଁ ଭାଗ୍ୟପାଖରେ ସେ କୃତଜ୍ଞ ହେବା ଦରକାର । ସମସ୍ତ ଦ୍ୱନ୍ଦର ଅବସାନ ପରେ କାମ୍ୟ ପ୍ରିୟତମକୁ ଲାଭକରି କୃତାର୍ଥ ଚିତ୍ତରେ ପଚିଶ ଜଣକ ଭିତରେ ଜଣେ ହୋଇ ବୁଲି ପାରିଥିଲେ ତାହା ସ୍ୱାଭାବିକ ହୋଇଥା'ନ୍ତା ।

ନା, ତା ହେଲା ନାହିଁ ।

ସୁଖ ବଦଳରେ ସମ୍ମାନ ବିକାଯାଏ ନାହିଁ । ସୁଖ ପଛେ ବିଦାୟ ନେଉ ସମ୍ମାନ ଥାଉ ।

ହେମପ୍ରଭା ପୁଣି କାଶୀ ଫେରିଯିବା ପାଇଁ ଜିନିଷ ଯୋଗାଡରେ ଲାଗିଲେ । ମିଛରେ ଏଠି ବସି ଲାଭ କ'ଣ ? ଉଚ୍ଚ ମଥାଟା ତଳକୁ ନଇଁପଡ଼ିଥିଲା ତଥାପି କ'ଣ ବିଧାତାର ଆଶା ମେଣ୍ଟିଲା ନାହିଁ । ମାଟି ସାଙ୍ଗରେ ମିଶେଇ ଛାଡ଼ିଲେ । ଆଉ ଏଠି କାହିଁକି ? ରାଜଲକ୍ଷ୍ମୀ ସାଙ୍ଗରେ ଅନେକ ପରାମର୍ଶ କରି, ଅନେକ ଆଶାନେଇ ସେ ଗାଆଁକୁ ଆସିଥିଲେ, ସବୁଆଶାରେ ଧୂଳି ଢ଼ାଳିଛି ତାପସୀ ନିଜେ ।

ଏତେଦିନକେ ହୋସ୍ ହେଲା ହେମପ୍ରଭାର, ତାପସୀ ଚିତ୍ରଲେଖାର ଝିଅ । ଦେଖିବାକୁ ଯେତେ ନିରୀହ ହେଉ କିନ୍ତୁ ଜିଦ୍‌ରେ ମା ଠାରୁ ଟିକିଏ ବି କମ୍ ନୁହେଁ । ଯା ହେଲେ ବି ହେମପ୍ରଭାର ବିଧିଲିପି ଏଇ । ତାପସୀର ଭଲ କରିବା ତା ଭାଗ୍ୟରେ ନାହିଁ ।

ରାଜଲକ୍ଷ୍ମୀକୁ ମୁହଁ ଦେଖାଇବାକୁ ତାର ଆଉ ମୁହଁ ନାହିଁ । ଦୁଇ ଦୁଇଥର ଶୁଭଦିନ ଦେଖି ରାଜଲକ୍ଷ୍ମୀ ଗାଡ଼ି ପଠାଇଥିଲା ବୋହୂକୁ ନେଇଯିବା ପାଇଁ; କିନ୍ତୁ ଗାଡ଼ି ଖାଲି ଖାଲି ଫେରିଗଲା ।

ତାପସୀର କାଳେ, ସ୍ୱାମୀଘରେ ବୋହୂହୋଇ ଘର କରିବାର ସ୍ପୃହା ଆଉ ନାହିଁ । ସେ କଲିକତା ଫେରିଯାଇ ଚାକିରି କରିବ ।

ଆଉ କେବଳ ରହିବେ ହେମପ୍ରଭା ?

ଗଳାରେ ଦଉଡ଼ି ଦେବାର ବୟସ ନାହିଁ, ସେଇଥିପାଇଁ ବଂଚିବା କଥା । କାଶୀ ଯିବାର ଆଗଦିନ ଶେଷଥର ପାଇଁ ବଲ୍ଲଭଜୀଙ୍କ ମନ୍ଦିରକୁ ଦର୍ଶନପାଇଁ ଯିବାର ଆୟୋଜନ କରୁଥିଲେ ହେମପ୍ରଭା । ଗାଡ଼ିକଥା କୁହା ହୋଇଛି କେବଳ ମାଳି ଫୁଲଧରି ପହଁଞ୍ଚିଲେ ହେଲା ।

ଡ଼େରି ହେଇଯାଉଛି ବୋଲି ଘରୁ ବାହାର ବାହାରୁ ଘର ହେଉଛନ୍ତି । ହଠାତ୍ ଦେଖିବାକୁ ପାଇଲେ ତାପସୀ ଗୋଟିଏ ଛୋଟ ଡାଲାରେ ଫୁଲ ନେଇ ଆସୁଛି । ଅର୍ଥାତ୍ ଭୋରବେଳୁ ସେ ବଗିଚାରେ ଥିଲା ।

ଏଇ କେତେଦିନ ହେଲା ଢେଙ୍କେମା' ଆଉ ନାତୁଣୀ ଭିତରେ ବେଶି କଥାବାର୍ତ୍ତା ନଥିଲା । ଦିଚ୍ଛଣ ଯାକ ଚୁପ୍ ଚାପ୍ ଗମ୍ଭୀର । ଆଗଭଳି ଥିଲେ ହୁଏତ ତାପସୀ ଖିଲିଖିଲି ହସି ଛୁଟି ଆସି ବଗିଚାର ଫୁଲ ସମ୍ଭାରର ଉଚ୍ଛ୍ୱସିତ ବର୍ଣ୍ଣନାରେ ମୁଖର ହୋଇ ଉଠିଥା'ନ୍ତା ନ ହେଲେ ହେମପ୍ରଭା ନାତୁଣୀକୁ ଫୁଲରାଣ ସଙ୍ଗେ ତୁଳନା କରି ନାତୁଣୀର ରୂପ ପ୍ରଶଂସା କରୁଥା'ନ୍ତେ ।

ଆଜି କିନ୍ତୁ ମନର ଅବସ୍ଥା ଅନ୍ୟ ପ୍ରକାର ।

ସେଇଥିପାଇଁ ହେମପ୍ରଭା କେବଳ ଆଖିଟେକି ଅନେଇ ରହିଲେ । ତାପସୀ ଧୀରେ ଧୀରେ ପାଖକୁ ଆସି ମ୍ଳାନ ହସ ହସି କହିଲା–

–ଚାଲ ନାନୀ ମୁଁ ତୁମ ସାଙ୍ଗରେ ଯାଇ ଟିକିଏ ପୁଣ୍ୟ ଅର୍ଜନ କରି ଆସେ ।

–ତୁ କେଉଁଠିକି ଯିବୁ ?

ତୀକ୍ଷ୍ଣପ୍ରଶ୍ନ କରନ୍ତି ହେମପ୍ରଭା ।

–ସେଇ ଯେ କେଉଁଠି ତୁମର 'ରାଇବଲ୍ଲଭ' ନା 'ରାଧାବଲ୍ଲଭ' ଅଛନ୍ତି ଦର୍ଶନ କରି ଆସିବି ଥରେ ।

–'ବୁଢ଼ୀଟିଏ ହୋଇଥା' ।

ନିଜର ଅଜ୍ଞାତ ସାରରେ ଅତି ବ୍ୟବହୃତ ଏଇ କଲ୍ୟାଣ ମନ୍ତ୍ର ଟିକକ ଉଚ୍ଚାରଣ କରି ହେମପ୍ରଭା କହିଲେ– ତା ଉପରେ ଦୟା କାହିଁକି ? ତାକୁ ତ ଅନେଇ ଦେଇ ମୁହଁ ଫେରେଇ ନେଉଛୁ !

–କିଏ ଯେ କାହାଠାରୁ ମୁହଁ ଫେରାଏ, କେତେବେଳେ ବିମୁଖ ହୁଏ ସବୁ କ'ଣ ମୁଁ ବୁଝିପାରେ ନାନୀ ? ଚାଲନା ଦେଖି ଆସିବି ତମ ଦୟାଳୁ ପ୍ରଭୁଙ୍କୁ ।

ହେମପ୍ରଭା ଈଷଦ୍ ଗମ୍ଭୀର ହୋଇ କହିଲେ– ବ୍ୟଙ୍ଗକରି ଦେବଦର୍ଶନ କରିବାକୁ ଯାଆନା ଝିଅ, ଯାଇ ଲାଭ କିଛି ହେବନାହିଁ ।

–ନା, ନା ଟିକିଏ ବୁଲିଆସେ । ତୁମ ପ୍ରଭୁଙ୍କୁ ବ୍ୟଙ୍ଗ କରୁନାହିଁ କରୁଛି ତାଙ୍କର ନାଆଁଟାକୁ । କଣାପୁଅର ନାମ ପଦ୍ମଲୋଚନ ଆଉ କାହାକୁ କୁହାଯାଏ !

–ନିଜର ଆଖି ଅନ୍ଧ ହେଲେ, ତାଙ୍କୁ ଅନ୍ଧ ଦେଖେ । ହେମପ୍ରଭା ରାଗି ଉଠିଲେ– ଦୟାର ସାଗର ସିଏ, ତତେ ଯାହା ଦୟା କରିଥିଲେ, ତୋଠାରେ ଯଦି ହିତାହିତ ଜ୍ଞାନ ଟିକିଏ ମାତ୍ର ଥା'ନ୍ତା ତୁ ସେ ଦୟାକୁ ଅବହେଳା କରି ନଥା'ନ୍ତୁ । ସେଇଥିପାଇଁ କହୁଛି– ଭକ୍ତି-ବିଶ୍ୱାସ ଯଦି ନାହିଁ ତାହେଲେ କାହିଁକି ଯିବ ?

—ଲୋକେ ତ ପୁଣି ମାଟି ତିଆରି କଣ୍ଢେଇ ଦେଖିବାକୁ ଯାଆନ୍ତି– ସେକଥା ହୁଏନା, ନାହିଁ ଖୁବ ରାଗିଛୁ ବୋଧେ ।

—ହୁଁ ! ମୋର ପୁଣି ରାଗ ! ରାଗିବି କାହା ଉପରେ କଥାକୁ କହିଲି । ଚାଲ୍ ଚାଲ୍ ଯିବୁ ଯଦି ବାହାରି ପଡ଼ । ବସ୍ତୁତଃ ଗୋଟାଏ ଝୁଙ୍କରେ ଏକ ବସ୍ତ୍ର ହୋଇ କଲିକତାରୁ ବାହାରି ଯାଇଥିବା ତାପସୀ ପାଖରେ ଆଉ ଭଲ ଲୁଗା କାହିଁ ? କାଶୀ ବଜାରରୁ କେତେ ଖଣ୍ଡ ସାଧାରଣ ଶାଢ଼ୀ କିଣିଥିଲା । ସେତକ ଉପରେ ତାହାର ଯା’ ଭରସା ।

ହେମପ୍ରଭାର ପ୍ରାଣଟା ‘ହାୟ ହାୟ’ କରି ଉଠିଲା– ଏ ଯେମିତି ଲକ୍ଷ୍ମୀହୋଇ ଭିଖ ମାଗିବା ! ରାଜାର ଐଶ୍ୱର୍ଯ୍ୟ ପାଦରେ ଠେଲି ଦେଇ ଏବେ କ’ଣ ନା ଶାଢ଼ୀ ନାହିଁ । ଉଃ ଆଧୁନିକ ଝିଅମାନଙ୍କ ଚରଣରେ ଶତକୋଟି ପ୍ରଣାମ ! ସର୍ବସ୍ୱ ହରାଇ ସ୍ୱଚ୍ଛନ୍ଦରେ ହସିହସି ବୁଲିବା ଆଜି କାଲିକା ଝିଅମାନଙ୍କ ପକ୍ଷରେ କେବଳ ସମ୍ଭବ ।

ବୁଲୁମା’ର ଏକ ବାକ୍ସ ଗହଣା, ଆଉ ସୁନାଜରିଦିଆ ଖଣ୍ଡେ ବନାରସୀ ଶାଢ଼ୀ ବୋହୂ ନେବାପାଇଁ ପଠେଇଥିଲା ରାଜଲକ୍ଷ୍ମୀ । ଗାଡ଼ି ଫେରସ୍ତ ଗଲାବେଳେ ସେଗୁଡ଼ା ମଧ ଫେରସ୍ତ ଦେବାକୁ ହୋଇଛି । ନୂଆଭାବରେ ସେହି ଶୋକଟା ପୁଣି ଉଥୁଳି ହୋଇ ଉଠିଲା ହେମପ୍ରଭାର ।

କିନ୍ତୁ ଏ କ’ଣ ?

ସବୁ ଶୋକକୁ ଉଡ଼େଇ ଦେଇ ଆଖିକୁ ଝଲସେଇ ଦେଲା ତାପସୀ । ଏତେକାଳ ଆଗର ଶାଢ଼ୀଖଣ୍ଡ କେଉଁଠୁ ପାଇଲା ସେ ।

ଟକ୍ ଟକ୍ ଲାଲ୍ ଜର୍ଜେଟ ଉପରେ ରୂପାଲି ଜରିର ଚଉଡ଼ା ଧଡ଼ି ବସା ସେଇ ଶାଢ଼ୀ । ସେହି ଶାଢ଼ୀପିନ୍ଧା ଲକ୍ଷ୍ମୀରୂପକୁ ଦେଖି ବୁଢ଼ା କାନ୍ତି ମୁଖୁଜ୍ୟେର ମୁଣ୍ଡ ଘୂରି ଯାଇଥିଲା । କିଏ ଜାଣେ କେଉଁଠି କେଉଁ ଟ୍ରଙ୍କରେ ପଡ଼ି ରହିଥିଲା । ମୂଲ୍ୟବାନ ଜିନିଷ ଏଇ ଦୀର୍ଘଦିନ ହେଲା ବ୍ୟବହାର ନ ହୋଇଥିଲେ ମଧ ମ୍ଳାନ ହୋଇନାହିଁ । ପ୍ରାୟ ସେମିତି ଉଜ୍ଜ୍ୱଳ ସେମିତି କୋମଳ ଅଛି ।

ହେମପ୍ରଭାର ଅନେକ ଭାବରେ-ଭରା ଦୃଷ୍ଟି ସାମ୍ନାରେ ଟିକିଏ କୁଣ୍ଠିତ ହୋଇପାରେନା ତାପସୀ ।

—ଏ ଶାଢ଼ୀ କେଉଁଠୁ ପାଇଲୁରେ ?

କଥା କହିବାର ଉପଲକ୍ଷ ପାଇ ବଂଚିଯାଏ ତାପସୀ । ଶୀଘ୍ର ଶୀଘ୍ର କହେ– ଏଇଠି ଥିଲା ନାନୀ, ତୋର ସେଇ ବଡ଼ ସିନ୍ଦୁକଟାରେ । କେତେସବୁ ସାଲ୍, ର୍ୟାପାର ପୁରୁଣା ପୁରୁଣା ସେଦିନ ଦେଖିଥିଲି । ଏ ଶାଢ଼ୀଖଣ୍ଡଟା କେମିତି ତା ସାଙ୍ଗରେ ଭର୍ତ୍ତି

ହୋଇଯାଇଛି କିଏ ଜାଣେ ! କିନ୍ତୁ ଦୁଃଖର ବିଷୟ ଅନେକ ଜାଗାରେ ପୋକ କାଟିଦେଇଛନ୍ତି ଶାଢ଼ୀଟାକୁ ।

—ଆହାରେ ! ସେଇ କଥା କହୁଛି କାଟିବେ ନାହିଁତ କ'ଣ କରିବେ, ଏତେଦିନ୍ ଯେ ରଖିଛି ଏଇଟା ଢ଼େର; ତୁ ଅଫିସକୁ ଯିବୁ, ସାଇକେଲ ଚଢ଼ିବୁ, ଟ୍ରାମ ଗାଡ଼ିରେ ଉଠିବାପାଇଁ ଦୌଡ଼ା ଦୌଡ଼ି କରିବୁ ତତେ ଏ ସୁବିଧା ହେବନାହିଁ । ବରଂ ଖାକି କନାର କୋଟ୍ ପାଇଜାମା ପିନ୍ଧିବା ଉଚିତ୍ । ଏଟାତ ବାହା ହେଉଥିବା କନ୍ୟାପିନ୍ଧା ଶାଢ଼ୀ ।

—ଧେତ୍ ଶାଢ଼ୀରେ ଯେମିତି ଲେଖାଥାଏ । ହଉ ଚାଲଚାଲ ଫୁଲଗୁଡ଼ା ଶୁଖିଯାଉଛି ।

—ସବୁ ଫୁଲକୁ ତ ଶୁଖେଇଲୁ ଦେବତା ଚରଣରେ ଆଉ ଦେଲୁ କେତେବେଳେ ? ନାରାୟଣ, ନାରାୟଣ ! ଗାଡ଼ି ଆସି ଡକାଡକି କରୁଛି ।

ଆଗାମୀ କାଲି ଦୋଳ ପୂର୍ଣ୍ଣିମା ।

ମନ୍ଦିର ସାଜସଜା, ବିଗ୍ରହ ମାନଙ୍କର ସାଜସଜା, ଆସନ୍ନ ଉତ୍ସବର ସମାରୋହ । ଝୁଣାଧୂପ, ଅଜସ୍ର ସୁଗନ୍ଧି ଫୁଲର ସମ୍ମିଳିତ ସୁରଭିରେ ବୈଶାଖୀ ପ୍ରଭାତର ଚଳ ଚଞ୍ଚଳ ପବନ କମ୍ପିତ ହେଉଛି ।

ନିଜ ନିଜ ହାତର ଫୁଲଡ଼ାଲା ବିଗ୍ରହ ସମାନାରେ ଥୋଇଦେଇ ଜେଜେମା-ନାତୁଣୀ ସାମନା ଚାନ୍ଦିନୀର ଗୋଟିଏ କଡ଼ରେ ବସିପଡ଼ିଲେ । ବୈଶାଖର ଶୁଚିସ୍ନିଗ୍ଧ ନିର୍ମଳ ସକାଳରେ, ଶୁଭ୍ର ନିର୍ମଳ ମାର୍ବଲ ପଥରର ଚଟାଣରେ ବସିବାକୁ ଲୋଭହୁଏ ।

ଉତ୍ସୁକ ଦୃଷ୍ଟିନେଇ ଚାରିଆଡ଼କୁ ଅନାଏ ତାପସୀ– ବହୁଦିନ ପୂର୍ବେ ଏଠାକୁ ଯେ ଥରେ ଆସିଥିଲା, ସେଦିନଟା ମଧ ବୈଶାଖ ପୂର୍ଣ୍ଣିମା ଥିଲା, କି ଅଦ୍ଭୁତ ଯୋଗାଯୋଗ ! ସେ ଦିନର ସେଇ ସୁରଭିଭରା ଚଳଚଞ୍ଚଳ ପବନ କ'ଣ ଏତେଦିନ ହେଲା ଲୁଚିକରି ଥିଲା ଏହି ମନ୍ଦିର ଗାତ୍ରରେ ? ଆଜି ତାପସୀ ଆସିଛି ବୋଲି ଖବର ପାଇ ବାହାରି ପଡ଼ିଛି ।

ସୁଗନ୍ଧ ପରି ବିସ୍ମୃତ ସ୍ମୃତିର ବାହକ ଏମିତି କିଏ ଆଉ ଅଛି ? କାଳର ପ୍ରାଚୀର ଅତିକ୍ରମ କରି ମୁହୂର୍ତ୍ତକ ମଧରେ ଅତୀତକୁ ଫେରାଇ ଆଣିବାର ଏମିତି କ୍ଷମତା ଆଉ କାହାର ନାହିଁ ବୋଧହୁଏ ।

ସେଇ ବିସ୍ମୃତ ଦିନର ସୁନେଲି ସକାଳଟି ଯେପରି ସହସା ଏଇ ଫୁଲ ଚନ୍ଦନ, ଧୂପଧୂଆଁର ସୌରଭଜଡ଼ିତ ଶରୀରରେ ଉତ୍ତରୀୟ ଧାରଣ କରି, ଓଠରେ ହସ ଫୁଟେଇ ତାପସୀ ସାମନାରେ ଉପସ୍ଥିତ ।

—ଆଚ୍ଛା ନାନୀ ସେଇ ଘୋଡ଼ାଟା ଅଛି ଏବେ ? ରଥର ସେହି ଯେଉଁ କାଠ ଘୋଡ଼ାଟା ? ଅକସ୍ମାତ ଏପରି ଏକ ଅଭିନବ ପ୍ରଶ୍ନ ଶୁଣି ଚମକି ପଡ଼ିଲେ ହେମପ୍ରଭା । ହାତର ଜପାମାଳିକୁ ସ୍ଥଗିତ ରଖି କହିଲେ— କ'ଣ ଅଛି ? ରଥର ଘୋଡ଼ା !

— ହଁ ହଁ ନାନୀ ସେହି ଘୋଡ଼ାଟା ଯାହାକୁ ଦେଖି ଭାରି ଖୁସି ଲାଗିଥିଲା ।

— ହା କପାଳ ! ଏତେ ବେଶ ଥାଉ ଥାଉ ସେଇ କାଠ ଘୋଡ଼ାଟାର ଚିନ୍ତା ? ଅଛି ନିଶ୍ଚୟ, ଯିବ ଆଉ କୁଆଡ଼େ ?

— ଚାଲିଲୁ ଦେଖି ବୁଲି ବୁଲି ସବୁ ଦେଖି ଆସିବା । ହେମପ୍ରଭା ଅସମାପ୍ତ ମାଳା ଗୋଛାଟି କପାଳରେ ଛୁଇଁ କହିଲେ— ଦେଖିବାର ଆଉ କ'ଣ ଅଛି ? ଏଇ ଯାହା ଦେଖୁଛୁ ଏହା ହେଲା ଜଗତର ସାରବସ୍ତୁ । ତୋର ଯଦି ଇଚ୍ଛା ହେଉଛି ତା'ହେଲେ ବୁଲାବୁଲି କରି ଟିକିଏ ଦେଖି ଆ, ଅଳ୍ପ ସମୟରେ ପରେ ଜୟକୃଷ୍ଣ ହୁଏତ ଗାଡ଼ିଆଣି ଡକାଡକି କରିବ ।

ତାପସୀ ଇତସ୍ତତ ହୋଇ କହିଲା— କେହି କିଛି କହିବେ ନାହିଁତ ?

—ହେ ମା', କହିବେ ଆଉ କ'ଣ ? ଏତେ ଲୋକ ଆସୁଛନ୍ତି ଯାଉଛନ୍ତି, ବସୁଛନ୍ତି, ପୂଜା ଦେଉଛନ୍ତି ଫୁଲମାଳ ଦେଉଛନ୍ତି କିଏ କାହାକୁ କିଛି କହୁଛି !

— ମୁଁ ଏକଲା ଯିବି ? ତୁମେ ଯିବ ନାହିଁ ନାନୀ ?

— ନା ଆଉ ଘୂରି ବୁଲିବାର ଇଚ୍ଛା ନାହିଁ କି ସମର୍ଥ ମଧ ନାହିଁ । ତୁ ଟିକିଏ ବୁଲି ନିଜେ ଦେଖିଆ । ମନ୍ଦିର ପଛ ପାଖରେ ମସ୍ତ ବଡ଼ ଫୁଲ ବଗିଚା ରହିଛି ।

ତାପସୀ କୁଣ୍ଠିତ ଭାବରେ ଏପାଖ ସେପାଖ ଚାହିଁ ମନ୍ଦିର ପ୍ରାଙ୍ଗଣରେ ବୁଲିବାକୁ ଲାଗିଲା । କାହିଁକି କେଜାଣି ରଙ୍ଗଛଡ଼ା ରଥ, କାଠର ଘୋଡ଼ା, ମାଟିର ସଖୀ କଣ୍ଢେଇ ଯେଉଁଠି ସବୁ ରଖା ହୋଇଥିଲା ସେଇ ଅବହେଳିତ ସ୍ଥାନଟିକୁ ଦେଖିବାର କୌତୂହଳ ପ୍ରବଳ ହେଲା ତାପସୀର ।

ମନ୍ଦିର ପଛପାଖର ଏଇ ଜାଗାଟା ଏକବାରେ ନିର୍ଜ୍ଜନ । ମନ୍ଦିରକୁ ଆସି ଭଙ୍ଗା କଣ୍ଢେଇ ଦେଖିବାର ସୌକ ଆଉ କାହାର ହୁଏ ତାପସୀପରି ! ଟଣା ଲମ୍ବା ଗୋଟାଏ ଦଲାଣ ଭିତରେ ନୂଆ ପୁରୁଣା ଭଙ୍ଗା ବହୁ କଣ୍ଢେଇ ଜମା ହୋଇଛି । ଛୋଟ ଛୋଟ ଏଇ ମଣିଷଆକୃତି ବିଶିଷ୍ଟ କଣ୍ଢେଇଗୁଡ଼ିକ ଦେଖିବାକୁ ମଜା ଲାଗେ । ଛୋଟ ପିଲାଙ୍କପରି କୌତୂହଳୀ ଦୃଷ୍ଟିନେଇ ଦେଖି ଚାଲିଛି ତାପସୀ । ସେଥର ଏତେ କଣ୍ଢେଇ ତ ନଥିଲା । ପ୍ରତିବର୍ଷ ନୂଆ ନୂଆ କଣ୍ଢେଇ ବୋଧହୁଏ ତିଆରି ହେଉଛି । ଦଲାଣ ବାହାରେ ଖୋଲାପଡ଼ିଆରେ ଚିତ୍ ହୋଇ ପଡ଼ିଛି ଘୋଡ଼ାଟା । କି ଆଶ୍ଚର୍ଯ୍ୟ !

ଏମାନଙ୍କର ମାୟା ମମତା ବୋଲି କ'ଣ କିଛି ନାହିଁ ?

'ଏମାନଙ୍କ' କଥା ଭାବିଲାବେଳକୁ ଅକସ୍ମାତ ଗୋଟାଏ କଥା ମନେ ପଡ଼ି ମୁହୂର୍ତ୍ତିକ ଭିତରେ ଲଜ୍ୟାରେ ଲାଲ ହୋଇ ଉଠିଲା ତାପସୀ । ମନ୍ଦିରଟା କାନ୍ତି ମୁଖୁଜ୍ୟେର ନା ବୁଲୁ ଜେଜେ ବାପାଙ୍କର ? ଆସିବା ଆଗରୁ ଏକଥା ଖିୟାଲ ହୋଇ ନାହିଁ ତ !

ହେମପ୍ରଭା ଆସିଛନ୍ତି ଶୁଣି ମନଟା କେମିତି ଚଞ୍ଚଳ ହୋଇ ଉଠିଥିଲା । ସେମାନଙ୍କର ଲୋକ ଯଦି କେହି ଏଠାରେ ଉପସ୍ଥିତ ଥାଏ ?

କିଏ ଆଉ ଆସିପାରେ– ରାଜଲକ୍ଷ୍ମୀ !

ଦେଖା ହୋଇଗଲେ ଲଜ୍ଜାରେ ମରିଯିବ ତାପସୀ ।

ଆଖିର ଆଢୁଆଳରେ ଗାଡ଼ି ଫେରସ୍ତ ଦେବା ଯେତେ ସହଜ, ମୁହାଁମୁହିଁ ହୋଇ ପ୍ରତ୍ୟାଖ୍ୟାନ କରିବା ଏତେ ସହଜ ନୁହେଁ । ଥାଉ ବାବା ଆଉ ଭଙ୍ଗା କଣ୍ଢେଇ ଦେଖିବା ଦରକାର ନାହିଁ । ନିଜର ଭଙ୍ଗା ଭାଗ୍ୟକୁ ନେଇ ଶୀଘ୍ର ଶୀଘ୍ର ଚାଲିଯିବା ହିଁ ଭଲ ।

କିନ୍ତୁ ଏ କ'ଣ !

ଫେରିଯିବାର ବାଟ କୁଆଡ଼େ ? ବାଡ଼ ଓଗାଳି ଯିଏ ଛିଡ଼ା ହୋଇଛି ତା'ରି ସାଙ୍ଗରେ ମୁହାଁମୁହିଁ ହୋଇଗଲା, ଚାରିଆଖିର ମିଳନ ହୋଇଗଲା ।

ମିଷ୍ଟର ମୁଖାର୍ଜୀ ବୋଲି ଚିହ୍ନିବାର ଉପାୟ ନାହିଁ । କିନ୍ତୁ ଖୋଦ୍ ବୁଲୁ ।

ଚଉଡ଼ା ଜରିର ଧଡ଼ିଲଗା ବନାରସୀ ଯୋଡ଼ ପିନ୍ଧିଛି, ସୁଗଠିତ ସୁଠାମ ଦେହ । ରକ୍ତ ପଦ୍ମପରି ଦୁଇଟି ଖାଲି ପାଦ । ଅବିନ୍ୟସ୍ତ ଚୂଳର ତଳେ ମସୃଣ ଲଲାଟରେ ଧଳା ଚନ୍ଦନର ଗୋଟାଏ ବଡ଼ ଚୋପା ।

ଗୋଟାଏ ଯୁଗ ପୂର୍ବର ସେଇ କିଶୋର ଦେବତାର ମୂର୍ତ୍ତି ଧରି ତାପସୀକୁ କେହି ଛଳନା କରିବାକୁ ଆସିଲା ନା କ'ଣ ? କେଉଁ ଏକ ଅଜଣା ଆଶଙ୍କାରେ ଛାତିଟା ଥରୁଛି ।

ହାୟ ! ହାୟ ! ତାପସୀ କାହିଁକି ଆସିଥିଲା ଏଠାକୁ ? ବର୍ତ୍ତମାନ ସେ ଏଠାରୁ ପଳାଇବ କେମିତି ? ତା'ପାଖରେ ଘସି ହୋଇ ଯିବା ଛଡ଼ା ତ ଅନ୍ୟ ଉପାୟ ନାହିଁ । ତେବେ ?

ମାଟିର ଏହି କଣ୍ଢେଇପରି କେବଳ ନିଶ୍ଚଳ ହୋଇ ଠିଆ ହେବ ନିଷ୍ପଲକ ଦୃଷ୍ଟିରେ ? ତେବେ କେମିତି ସେ ନିଜକୁ ସମ୍ଭାଳିବ ? କେମିତି କଠିନ ହୋଇ ରହିବ ମାନ ସଂଭ୍ରମର ଦୁର୍ବହ ଭାର ବହନ କରି ।

ହାୟ ଭଗବାନ ! ସମସ୍ତ ମାନ ସଂଭ୍ରମ ଜଳାଞ୍ଜଳି ଦେଇ ଏ କ'ଣ କରି ବସିଲା ତାପସୀ ? ନିତାନ୍ତ ଅସହାୟପରି ନିଜକୁ କେଉଁଠି ସମର୍ପି ଦେଲା ବିନା ଦ୍ୱିଧାରେ, ବିନା ପ୍ରତିବାଦରେ ? କେଉଁଠି ଲୁଚିଥିଲା ତାପସୀର ପରାଜୟର ଶୃଙ୍ଖଳ ! ବନାରସୀ ଚାଦର ଖସି ପଡ଼ିଥିବା ଆବରଣମୁକ୍ତ ସନ୍ଦିତ ବକ୍ଷର ସ୍ପର୍ଶରେ, ଆବେଗତପ୍ତ ବଳିଷ୍ଠ ବାହୁବେଷ୍ଟନୀ ମଧ୍ୟରେ ସେ ହଜିଗଲା ।

ପରାଜୟ !

ପରାଜୟର ପୁଣି ଏତେ ସୁଖ ? ଏମିତି ନିଶ୍ଚିନ୍ତ ଶାନ୍ତି ? ବିଜୟୀର ନିବିଡ଼ ଆଲିଙ୍ଗନ ମଧ୍ୟରେ ନିଜକୁ ସମର୍ପଣ କରିଦେବା ଏତେ ତୃପ୍ତି ! !

ଏକଥା ତ ଆଗରୁ କେହି କହିନାହିଁ ତାପସୀକୁ !

ଆବାଲ୍ୟ ସଂଚିତ ବ୍ୟର୍ଥବେଦନାର ଜ୍ୱାଳା, ସଦ୍ୟ-ପ୍ରଜ୍ୱଳିତ ଅଗ୍ନିପରୀକ୍ଷାର ଜ୍ୱାଳା, ନିଜକୁ ବଶ କରି ରଖିବାର ଅକ୍ଷମତାର ଜ୍ୱାଳା ସବୁ ଯେମିତି ଏକାଠି ହୋଇଗଲା ।

ଏଇ ଅନସ୍ୱାଦିତ ଶାନ୍ତି କ'ଣ ଅବାସ୍ତବ ? ଏଇ ଅଜଣା ଅନୁଭୂତି କ'ଣ ସ୍ୱପ୍ନ ? ଏଇ ନିର୍ଜନ ପରିବେଶ, ଏଇ ପୁଷ୍ପଗନ୍ଧବହନକରୀ ଚଞ୍ଚଳ ବତାସ, ଏଇ ଚିର ଆକାଂକ୍ଷିତ ଉଷ୍ଣ ସ୍ପର୍ଶ ସମସ୍ତ କ'ଣ କଳ୍ପନା ?

ସତ୍ୟ ହୋଇଥିଲେ କ'ଣ ଏତେ ଅନାୟସରେ ମାନି ନେଇଥା'ନ୍ତା ତାପସୀ ?

ନା-ନା ମୁହୂର୍ତ୍ତର ବିହ୍ୱଳତାକୁ ପ୍ରଶ୍ରୟ ଦେବ ନାହିଁ ସେ । ପରୀକ୍ଷକ ପାଖରେ ହାର ମନା ଯାଏନା ।

—ଛାଡ଼ିଦିଅ ମତେ !

— ଛାଡ଼ିଦେବି ? ନା,ନା ଆଉ ଛାଡ଼ିବି ନାହିଁ ତୁମକୁ, କେବେ ନୁହେଁ କି କେଉଁଦିନ ନୁହେଁ ।

ତେବେ ନିଜକୁ ଛଡ଼ାଇନେଲା ତାପସୀ ।

ମୁକ୍ତ କରିନେଲା ନିଜର ପରମ ଆକାଂକ୍ଷିତ ସେହି ବାହୁବନ୍ଧନରୁ । ପ୍ରାୟ କାନ୍ଦ କାନ୍ଦ ହୋଇ କହିଲା— ଆପଣ କାହିଁକି ମତେ ଅପମାନ କରିବେ ?

— ଛି ତାପସୀ ! ସେ କଥା ମୁହଁରେ ଧରନା ।

— ହଁ, ହଁ ଚିରଦିନ ଆପଣ ମତେ ଅପମାନ କରିଛନ୍ତି । ସେଥିରେ କ'ଣ ଆଶା ମେଣ୍ଟି ନାହିଁ । ଆହୁରି ଚାହାନ୍ତି ଆପଣଙ୍କ ପାଖରେ... ଆବେଗଭରା କଣ୍ଠ ରୁଦ୍ଧ ହୋଇ ଆସେ ତାପସୀର ।

କିରୀଟୀର କଣ୍ଠସ୍ୱର ଗଭୀର ଆବେଗପୂର୍ଣ୍ଣ– ହଁ ତାପସୀ ଆଉ ଥରେ ନୁହେଁ– ବରାବର ଚାହେଁ, ଚିରଦିନ ଚାହେଁ । ଦିନରାତି ଅହରହ ଚାହିଁଛି ତୁମେ ମୋ ପାଖରେ ଆସି ଧନ୍ୟକର ମତେ । ସେଇ ତୀବ୍ର ଆକାଂକ୍ଷାର ବଶବର୍ତ୍ତୀ ହୋଇ, ପିଲାଦିନେ କଲେଜ କମାଇ କରି ଘୂରି ବୁଲିଛି ତୁମ ସ୍କୁଲ ପାଖ କଲେଜ ରାସ୍ତାରେ । ସନ୍ଧ୍ୟାର ଅନ୍ଧକାରରେ ତୁମ ଘର ପାଖ ପାର୍କର ବେଞ୍ଚ ଉପରେ ଘଣ୍ଟା ଘଣ୍ଟା ଧରି ବୋକା ପରି ବସି ରହିଛି ଆଉ ଅନେଇ ରହିଛି ଦୋତାଲା ଘରର ଝରକା ଆଲୁଅ ଆଡ଼େ । କେଉଁ ଘରେ ତୁମେ ରୁହ, କେଉଁ ଘରେ ତୁମେ ବସ, କିଛି ମୁଁ ଜାଣେ ନାହିଁ, ତଥାପି ବସି ରହେ । ସାତବର୍ଷ ଧରି ଘୂରି ବୁଲିଛି କେତେ ଦେଶ-ବିଦେଶ, ତେବେ ସବୁବେଳେ ମନେ ପଡ଼ିଛି– କ'ଣ ଗୋଟାଏ ଅଦୃଶ୍ୟ ସୂତ୍ରରେ ମୁଁ ବନ୍ଧା ହୋଇଛି ତମ ସାଙ୍ଗରେ । ଫେରିଆସି ଲୋଭ ସମ୍ବରଣ କରିପାରିଲି ନାହିଁ, ଅଥଚ ସହଜ ଭାବରେ ନିଜର ପରିଚୟ ଦେଇପାରିଲି ନାହିଁ । ସାହସ ହେଲା ନାହିଁ, ଯେଉଁ ବନ୍ଧନ ମୋ ପାଖରେ ସତ୍ୟ ତାହା ହୁଏତ ତୁମ ପାଖରେ ନିତାନ୍ତ ମିଥ୍ୟା । ଏହା ଥିଲା ମୋର ଆଶଙ୍କା ।

– ଆଉ କି ଯନ୍ତ୍ରଣା ମୁଁ ପାଇଛି, ଅହରହ କି ଯୁଦ୍ଧ କରିବାକୁ ହୋଇଛି ତା' କ'ଣ ତୁମେ ବୁଝିପାରିନା ।

ହୁଏତ ପାରିଛି, ହୁଏତ ପାରିନାହିଁ ବୁଦ୍ଧିର ବଡ଼ାଇ ଦେଖାଇବାକୁ ଚାହିଁ ନାହିଁ ତାପସୀ । କିନ୍ତୁ ପ୍ରତି ମୁହୂର୍ତ୍ତରେ ଚେଷ୍ଟା କରିଛି ଛଦ୍ମବେଶ ମୋଚନ କରିବାକୁ, ସହଜ ଭାବରେ ନିଜକୁ ଧରା ଦେବାକୁ କିନ୍ତୁ ପାରିନାହିଁ । ମୋର ଏହି ଅକ୍ଷମତା ହିଁ ତୁମର ଯନ୍ତ୍ରଣାର ମୂଳ । କିନ୍ତୁ ମୋର ଦୁର୍ଭାଗ୍ୟ, ଯେଉଁଦିନ ସମସ୍ତ ଶକ୍ତି ଏକତ୍ରିତ କରି ପ୍ରତିଜ୍ଞା ନେଇଗଲି, ଠିକ୍ ସେଇଦିନ ତୁମେ ଅଭିମାନରେ ଘର ଛାଡ଼ି ଚାଲିଗଲ । ଚିଠିରେ ଅପରାଧ ସ୍ୱୀକାର କରି ତୁମଠାରୁ କ୍ଷମା ଚାହିଁଲି କିନ୍ତୁ ନାନୀ ପାଖରୁ ଶୁଣିଲି ତୁମେ ସେ ଚିଠିକୁ ପଢ଼ିଲ ନାହିଁ ଚିରି ଫୋପାଡ଼ି ଦେଲ ।

—କ'ଣ ଲେଖିଥିଲେ ସେଥିରେ ? ହାଲ୍‌କା ଭାବେ ପ୍ରଶ୍ନକଲା ତାପସୀ ।

– ଆଉ କ'ଣ ହୋଇପାରେ, ମୋ ଦୁଷ୍କୃତିର କାହାଣୀ । ଅବଶେଷରେ ପରିଚୟ ଦେଲି ଅଭି ପାଖରେ । ସେ ବିଚରା ଅନୁତାପାନଳରେ ଦଗ୍ଧ ହେବାକୁ ଲାଗିଲା ।

– ଆଉ ମା' ?

– ମା'– ମୃଦୁ ଭାବେ ହସିଲା ବୁଲୁ । ମା' ଏକଥା ଶୁଣି ଗୁମ୍ ହୋଇଗଲେ ଏବଂ ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ମୋ ସାଙ୍ଗରେ କଥା କହିଲେ ନାହିଁ । ବୋଧହୁଏ ଭାବିଲେ ମୁଁ ତାଙ୍କୁ ଠକେଇଛି । କିନ୍ତୁ ଆଶ୍ଚର୍ଯ୍ୟ କଥା ଯଦିଓ ଚିହ୍ନିପାରି ନଥିଲା ମୋ ନାଆଁଟା କ'ଣ ସତରେ ତୁମେ ଜାଣି ନଥିଲ ? ସେଇ ଅଦ୍ଭୁତ ରାତ୍ରିରେ ମନ୍ତ୍ର ଉଚ୍ଚାରଣ ସଙ୍ଗରେ ଥରେ ବି ମୋ ନାଆଁଟା ତୁମ କାନରେ ବାଜିଲା ନାହିଁ ?

ତାପସୀ ମୁଣ୍ଡ ହଲେଇଲା । ମୁହୂର୍ତ୍ତକ ଭିତରେ ଛବିପରି ତାପସୀର ମାନସ ଚକ୍ଷୁରେ ଭାସି ଉଠିଲା ସେହି ଅଦ୍ଭୁତ ରାତ୍ରିର ଦୃଶ୍ୟ ।

ହାୟ, ତାପସୀର କ'ଣ ଜ୍ଞାନ ଚୈତନ୍ୟ ସେଦିନ କିଛି ନଥିଲା ।

— ତାପସୀ, ଆଜିର ଏହି ଘଟଣାକୁ ଦେବତାର ଦାନ ବୋଲି କ'ଣ ତୁମର ମନେ ହୁଏନା ? ଆଜି ମୋର ଇଆଡ଼େ ଆସିବାର କୌଣସି ଠିକଣା ନଥିଲା, ସାମାନ୍ୟ ଆଗରୁ ମଧ୍ୟ ନୁହେଁ । ପିଉସୀମା'ର ଅନୁରୋଧରେ ଏହି କଣ୍ଢେଇଗୁଡ଼ାର ଅବସ୍ଥା ଦେଖିବାପାଇଁ ଆସିଥିଲି । କିନ୍ତୁ ମୁଁ କ'ଣ ସ୍ୱପ୍ନରେ ସୁଦ୍ଧା ଭାବିଥିଲି ମାଟି କଣ୍ଢେଇ ଘରେ ସୁନା କଣ୍ଢେଇକି ଦେଖିବି ବୋଲି । ଏଇ ବଲ୍ଲଭଜୀଙ୍କ ମନ୍ଦିରରେ ପ୍ରଥମେ ଦେଖିଥିଲି ତୁମକୁ । ସେଇଥିପାଇଁ ବୋଧହୁଏ ନିଜେ ବଲ୍ଲଭଜୀ ଷଡ଼ଯନ୍ତ୍ରକରି ଦୁଇଜଣଙ୍କୁ ଟାଣି ଆଣିଲେ ତାଙ୍କ ଇଲାକାକୁ । ଏ ସୌଭାଗ୍ୟକୁ ଅବହେଳା କରନା ତାପସୀ ।

କିନ୍ତୁ ତାପସୀ କେଉଁପରି ଭାବରେ କହିବ— ''ନା ଅବହେଳା କରିବି ନାହିଁ ।''

ମାନ ସମ୍ଭ୍ରମ ଚୂଲୀକୁ ଯାଉ କିନ୍ତୁ ଲଜ୍ଜ୍ୟା ? ଦୁର୍ନିର୍ବାର ଲଜ୍ଜ୍ୟା ଯେ କଣ୍ଠ ଚିପି ଧରିଛି ତାହାର । ମୁହଁ ଖୋଲି କହିପାରିଲେ ତ ସେ ଅନେକ କଥା କହି ପାରିଥା'ନ୍ତା । ତା' ଜୀବନରେ କ'ଣ ସ୍କୁଲ, କଲେଜ, ହଷ୍ଟେଲ ଆଉରି କେତେ ସମ୍ଭବ ଅସମ୍ଭବ ସ୍ଥାନ ନାହିଁ ? କିନ୍ତୁ ଏସବୁକୁ ସୁନ୍ଦରଭାବେ ସଜେଇ କହିବାର ଶକ୍ତି ତା'ର କାହିଁ ?

— ଉତ୍ତର ଦେବ ନାହିଁ, ଚୁପ୍ କରି ରହିବ ? କୁହ କ'ଣ କରିବ ତୁମେ ? ଦ୍ୱିଧା କାଟି ସହସା ମୁହଁ ଖୋଲି ଯେଉଁ ଉତ୍ତର ଦେଲା ତାପସୀ ସେଟା କେବଳ କିରୀଟୀକୁ ଆହତ କଲାନାହିଁ, ଆଘାତ କଲା ତାପସୀର କାନକୁ । ଇମିତି କଥା କହିବାକୁ ତ ସେ ଚାହିଁ ନଥିଲା, ତଥାପି କହିଛି ।

— ମତେ ଆପଣମାନେ ସମସ୍ତେ ଦୟାକରି ଛାଡ଼ି ଦିଅନ୍ତୁ, ଯେମିତି ହେଉ ପଛେ ମୁଁ ଗୋଟାଏ କାମ ଯୋଗାଡ଼ କରି ନେବି ।

— କାମ ! କାମ କରିବ ତୁମେ ? କି କାମ ? ଚାକିରି ?

—କ୍ଷତି କ'ଣ ?

—ଲାଭ କ୍ଷତିର ହିସାବ ସମସ୍ତଙ୍କ ପାଖରେ ସମାନ ନୁହେଁ ତାପସୀ, କିନ୍ତୁ ଆଉ ଅନୁରୋଧ ଉପରୋଧର ଚାପରେ ଆଉ ବିବ୍ରତ କରିବି ନାହିଁ ତୁମକୁ । ମୋ ପାଇଁ ତୁମର ମନ ପ୍ରସ୍ତୁତ ହୋଇନାହିଁ, ଏଇ କଥାଟା ବୁଝିବାକୁ ଟିକିଏ ଡେରି ହେଲା ବୋଲି ଅନେକ ଜ୍ୱାଳା ଯନ୍ତ୍ରଣା ସହିବାକୁ ହେଲା ତୁମକୁ । କ୍ଷମା ଚାହୁଁଛି । ଜାଣିଛ ତ ପୃଥିବୀରେ ନିର୍ବୋଧ ଲୋକଙ୍କ ସଂଖ୍ୟା ବେଶୀ ।

ଅଜନ୍ତା ଛାଞ୍ଚରେ ଗଢ଼ା ରେଖାୟିତ ଅଧରରେ ଟିକିଏ ହସ ଫୁଟି ଉଠିଲା ।

— ଆଚ୍ଛା ଯାଉଛି । ଆଜିର ଏହି ଅପ୍ରତ୍ୟାଶିତ ସାକ୍ଷାତଟା ମନେ ରହିବ, କ'ଣ କହୁଛ ? ମୁଁ ଅବଶ୍ୟ ମୋର କଥା ହିଁ କହୁଛି । ନାନୀ ସାଙ୍ଗରେ ଆସିଛ ବୋଧହୁଏ ଅନେକ ସମୟ ହେଲା ଏଠାରେ ଅଛ ଖୋଜୁଥିବେ । କେବେ କଲିକତା ଫେରିବ ?

—କାଲି ।

ଅସ୍ପଷ୍ଟ ଗୋଟାଏ ଶବ୍ଦ ମଧ୍ୟରୁ ଆନ୍ଦାଜରୁ ଧରି ନେବାକୁ ହେଲା ଉତ୍ତରଟା ।

— ବେଶୀ ଲାଭ କରିବାକୁ ଯାଇ ସବୁ କିଛି ହରେଇବାକୁ ହେଲା ନୁହେଁ ତାପସୀ ? ଏହାପରେ ଦୈବାତ କୌଣସି ଦିନ ଦେଖା କରିବାକୁ ଗଲେ ହୁଏତ ଧୃଷ୍ଟତା ହେବ । ମାଟିରେ ଲୋଟିପଡ଼ିଥିବା ଉତ୍ତରୀୟଟାକୁ ଉଠାଇ ନେଇ ଧୀରେ ଧୀରେ ଫେରିଗଲା କିରୀଟୀ ।

ଅବାକ୍ ଆଖିରେ ଚାହିଁଥାଏ ତାପସୀ । ଚାଲିଗଲା । ତାପସୀ ଜୀବନରେ ଆଉ କୌଣସିଦିନ ଦେଖାହେବ ନାହିଁ ତା' ସଙ୍ଗେ । ଧୂ ଧୂ ମରୁଭୂମି ପରି ଶୁଷ୍କ ଶ୍ରୀହୀନ ଜୀବନ ନେଇ ତାପସୀ କ'ଣ କରିବ ? ନା- ନା ଛୁଟିଯାଇ ସେ ଫେରାଇ ଆଣିବ, କିନ୍ତୁ କେମିତି କରି ଫେରାଇବ ? ଛୁଟି ଯାଇ କ'ଣ ପାଦତଳେ ପଡ଼ିବ ? ନିତାନ୍ତ ନିର୍ଲଜ୍ଜ ପରି ଦୁଇ ହାତରେ କୁଣ୍ଢାଇଧରି ଆଶ୍ରୟ ନେବ ସ୍ୱର୍ଗଦ୍ୱାରରେ । ସମସ୍ତ ଜ୍ୱାଳା ଯେଉଁଠି ଉପଶମ ହୋଇଯାଏ ସେହି ଶାନ୍ତି ସ୍ୱର୍ଗରେ ? କ୍ଷଣକ ପୂର୍ବରୁ ମୁହୂର୍ତ୍ତକ ପାଇଁ ଯେ ସ୍ୱର୍ଗର ଆସ୍ୱାଦ ପାଇ ନିଜକୁ ହରେଇ ବସିଥିଲା ତାପସୀ !

— ନା କିଛି ପାରିବ ନାହିଁ ତାପସୀ । ଛିଡ଼ା ହେବାର କ୍ଷମତା ହରାଇ ଦୁଇ ହାତ ମୁହଁରେ ଢାଙ୍କି ମାଟି ଉପରେ ବସି ପଡ଼ିଲା ତାପସୀ ।

କେତେ ସମୟ ବସିଥିଲା କେଜାଣି ତାପସୀ ?

ଶୋଇ ପଡ଼ିଥିଲା ନା କ'ଣ ? ଚେତନା ଥିଲା ତ ? ସମୟର ଜ୍ଞାନ ହରେଇ ଦେଇଛି କାହିଁକି ? ପିଠି ଉପରେ କାହା ହାତର କୋମଳ ସ୍ପର୍ଶ ?

— ତାପସୀ ଚାଲ, ତମକୁ ଘରେ ପହଞ୍ଚେଇଦେଇ ଆସିବି । କି ମମତା-ସ୍ନିଗ୍ଧ କଣ୍ଠସ୍ୱର !

ତୁମକୁ ଏଠାରେ ଏକା ଛାଡ଼ିଦେଇ ଯାଇପାରିଲି ନାହିଁ ତାପସୀ, ପୁଣି ଆସିଲି ନିର୍ଲଜ୍ଜଙ୍କ ପରି । ଚାଲ ତୁମକୁ ଘରେ ପହଞ୍ଚାଇ ଦେବାର ଅନୁମତି ଟିକକ ଚାହୁଁଛି ।

କିନ୍ତୁ ଅନୁମତି ଦେବ କିଏ ? ଭିତରେ ଯାହାର ଭୂମିକମ୍ପର ଆଲୋଡ଼ନ ! କଣ୍ଠ ସ୍ୱରରେ ଏତେ ମମତା ଥାଇପାରେ ? ଯେଉଁ ଝିଅ ଆବାଲ୍ୟ ହସର ଆଢୁଆଳରେ

ସବୁକିଛି ଗୋପନକରି ଆସିଛି, ସେ ପୁଣି କାଳେ କାନ୍ଦି ଭସେଇଦେଲା କଣ୍ଠସ୍ୱରର ସାମାନ୍ୟ ଟିକିଏ ସ୍ନେହ ସ୍ପର୍ଶରେ ।

ହାୟ, ହାୟ ! ଲଜ୍ୟା ରଖିବାର ସ୍ଥାନ ରହିଲା କେଉଁଠି ? ଲଜ୍ୟା ସମ୍ଭ୍ରମ ସବୁ ଯେ ଗଲା ।

ଅଶ୍ରୁ କିଣିବାକୁ ଗୋପନ କରିହେବ କିନ୍ତୁ ଅଶ୍ରୁ ସାଗରକୁ ?

—ତାପସୀ ଉଠ । ଚାଲ ଲକ୍ଷ୍ମୀଟା ପରା । କେତେ ଲୋକ ବୁଲାବୁଲି କରୁଛନ୍ତି, ହଠାତ୍ କେହି ଇଆଡ଼େ ଆସିଲେ କ'ଣ ନା କ'ଣ ଭାବିବେ !

—କାହିଁକି ଭାବିବେ ? କିଛି ଭାବିବେ ନାହିଁ କେହି । ଯିବି ନାହିଁ ମୁଁ । ଏତେବେଳକେ ତାପସୀ ମୁହଁରୁ କଥା ବାହାରିଲା ।

— ଯିବ ନାହିଁ ? ମୃଦୁ ହସ ହସିଲା କିରୀଟୀ— ଅଭିଶାପ ହିଁ ମୋର ବରଦାନ । ତା'ହେଲେ ଏହିପରି ବସାଯାଉ, କ'ଣ କହୁଛ ? ଏତକ କହି କିରୀଟୀ ସେହି ବନାରସୀ ଯୋଡ଼ପିନ୍ଧା ଅବସ୍ଥାରେ ବସି ପଡ଼ିଲା ଧୂଳି ଉପରେ । କିଛିଟା ଦୂରତ୍ୱ ରକ୍ଷାକରି ଅବଶ୍ୟ ।

— ତାପସୀ, ସତରେ ଯଦି ଏମିତି ବସି ହୁଅନ୍ତା ଚିରଦିନ, ଚିରକାଳ !

ମାଟିର ଭଙ୍ଗା କଣ୍ଢେଇଗୁଡ଼ାକ ଉପରକୁ ନିର୍ନିମେଷ ଆଖିରେ ଚାହିଁ ରହିଥିଲା ତାପସୀ, କ'ଣ ଦେଖୁଥିଲା କେଜାଣି ? ବୁଲୁର କଥା ଶୁଣି ଗୋଟିଏ ମୁହୂର୍ତ୍ତ ପାଇଁ ଆଖି ଉଠେଇ ଚାହିଁଲା ।

ପୁଣି କିଛିକ୍ଷଣ କଟିଗଲା । ସାମାନ୍ୟ ଟିକିଏ ହସି ବୁଲୁ କହିଲା— ସତରେ ମୁଁ ବଡ଼ ନିର୍ଲଜ୍ଜ ତାପସୀ, ତୁମେ ମତେ ସହ୍ୟ କରିପାରୁନା, ତଥାପି ଜବରଦସ୍ତ କରି ପାଖରେ ବସିଛି । କୌଣସି ପ୍ରକାରେ ଉଠିଯିବାକୁ ଇଚ୍ଛା ହେଉନାହିଁ । ଏଇ ଯେ ଅତୀତ ହୋଇଗଲା ମଝିରେ କେତୋଟି ବର୍ଷ ତାକୁ କ'ଣ ଭୁଲିହବ ? ଯେଉଁଦିନ ନୂତନ ଦୃଷ୍ଟିଦେଇ ଚାହିଁଲି ପୃଥିବୀକୁ ସେଦିନ ଜୀବନରେ କୌଣସି ଜଟିଳତା ଥିଲା ନାହିଁ, କୌଣସି ସମସ୍ୟା ଥିଲା ନାହିଁ— ଯେତେବେଳେ ମାନ ଅପମାନର ପ୍ରଶ୍ନ ନେଇ ସବୁକଥାକୁ ବିଚାର କରିବାକୁ ବସିଲି ଆଉ ହେଲା ନାହିଁ ।

ହାୟ, ତାପସୀ କାହିଁକି କିଛି କହିପାରୁନାହିଁ ? ସମସ୍ତ ଭଲ ଭଲ କଥାଗୁଡ଼ାକୁ କେବଳ ବୁଲୁ କହିବ ? ସେ କଥା କ'ଣ ତାପସୀ ଭାବୁ ନାହିଁ ?

ତେବେ ନିଜକୁ ଧରା ଦେବାର ଏକାନ୍ତ ବାସନାକୁ ଗଳାଚିପି ମାରି, ନିଜର ମନକୁ ଯଚାଇ କରିବାକୁ ହୋଇଛି ତାକୁ— ଏ ବ୍ୟକ୍ତି ଯଦି କିରୀଟୀ ନ ହୋଇ କେବଳ ମାତ୍ର 'ବୁଲୁ' ହୋଇଥା'ନ୍ତା କ'ଣ କରନ୍ତା ସେ ? 'ସ୍ୱାମୀ' ବୋଲି ବିନା ଦ୍ୱିଧାରେ ସମର୍ପଣର ମନ୍ତ୍ର ପଢ଼ି ପାରନ୍ତା ।

ବୁଲୁ ବୋଧହୁଏ କୌଣସି ଗୋଟିଏ ଉତ୍ତର ଆଶାରେ ମିନିଟିଏ ଖଣ୍ଡ ଚୁପ ରହି କହିଲା– ମୁଁ ତୁମକୁ ବୁଝିପାରିଛି ତାପସୀ, ମନକୁ ପ୍ରସ୍ତୁତ କରିନେବାର ଅବସର ତୁମେ ପାଇ ପାରିନା, ଅପେକ୍ଷା କରିବି ସେହି ଆଶାରେ । କିନ୍ତୁ ଚାଲ ତୁମକୁ ପହଁଞ୍ଚେଇ ଦେଇ ଆସିବି । ନାନୀ ହୁଏତ ଖୋଜୁଥିବେ, ନାଟ ମନ୍ଦିରରେ ବସି ରହିଛନ୍ତି । ଆରେ ସତେତ ! ତାପସୀ ତ ଏଠାରେ ହଠାତ୍ ଆକାଶରୁ ଖସି ପଡ଼ିନାହିଁ ! ଆଶ୍ଚର୍ଯ୍ୟ, କିଛି ତ ମନେ ନଥିଲା । ବୁଲୁ ଉଠିବାକୁ କହିଲେ କ'ଣ ହେବ, ତାପସୀର କ'ଣ ଉଠିବାର କ୍ଷମତା ଅଛି ?

ଉଠି ପଡ଼ିବା ସଙ୍ଗେ ସଙ୍ଗେ ଯେ ଏଇ ସ୍ୱର୍ଗସୁଖ ଚିରଦିନ ପାଇଁ ଚାଲିଯିବ । ସତରେ ଯଦି ଏମିତି ବସି ଯାଇ ହୁଅନ୍ତା ଅନନ୍ତ ଦିନ– ଅନନ୍ତ ରାତ୍ରି !

ବୁଲୁ ପୁଣି ହସିଉଠି କହିଲା– ହଠାତ୍ ଯଦି କେହି ଦେଖି ପକାଏ କ'ଣ ଭାବିବେ କହିଲା ଦେଖି ? କହି ନପାରିଲେ ମଧ୍ୟ ଭାବିବେ ସଦ୍ୟ ବିବାହିତ ବର-କନ୍ୟା । ତୁମର ଶାଢ଼ୀଟି ଠିକ୍ ନୂଆପରି- ଆଉ ମୁଁ ତ ବଲ୍ଲଭଜୀଙ୍କ ବେଠୀ ଖଟିବା ପାଇଁ ବରବେଶ ସାଜି ବସିଛି । ଲୋକେ ହୁଏତ ଭାବିବେ ଦୁଇଜଣଯାକ ବାସର ଛାଡ଼ି ପଳେଇ ଆସିଛନ୍ତି ଟିକିଏ ନିର୍ଜନ ଅବସର ଆଶାରେ । ସେଇଆ ନୁହେଁ ? ମୋର ମନେ ପଡୁଛି ଅବିକଳ ଏଇମିତି ଶାଢ଼ୀ ପିନ୍ଧା ଅବସ୍ଥାରେ ତମକୁ ପ୍ରଥମେ ଦେଖିଥିଲି । କଲିକତା ଘରେ ତୁମେ ଏଇ ଅପୂର୍ବ ବେଶରେ କେବେ ତ କାହିଁ ଦେଖା ହୁଅନି । ଏ ଯେପରି ଏଇ ସ୍ଥାନ ପାଇଁ ଏଇ ବେଶ ।

ଏତେ କଥାର ଉତ୍ତରରେ ତାପସୀ କେବଳ କହିଲା– ସେହି ଶାଢ଼ୀଟା, – ସତେ ? ଆଶ୍ଚର୍ଯ୍ୟ କଥା ତ ! ସେହ ଶାଢ଼ୀଟା ଆଜି ପର୍ଯ୍ୟନ୍ତ ରହିଛି । ଏତେଦିନ ପରେ ତୁମର ପୁଣି ଇଛା ହେଲା ସେହି ଶାଢ଼ୀଟାକୁ ପିନ୍ଧିବାକୁ ! ସବୁଟା ତ ଆଶ୍ଚର୍ଯ୍ୟପରି ଲାଗୁଛି !

ଏଥର ତାପସୀ ମୁହଁ ଉଠେଇ ବଡ଼ ସ୍ପଷ୍ଟ ଭାବରେ ଚାହିଁଲା, ମ୍ଳାନ ହସଟିଏ ହସି କହିଲା– ମୋ ଜୀବନରେ ସବୁଟା ଆଶ୍ଚର୍ଯ୍ୟ ! ଚାଲନ୍ତୁ ! କେବେ ଫେରିବେ କଲିକତାକୁ ?

–ଫେରିବାର ପ୍ରୋଗ୍ରାମ ଯାହା କିଛି ଥିଲା ସବୁତ ବାତିଲ ହୋଇଗଲା । ପରେ ଭାବିଥିଲି ଆଜି ଚାଲିଯିବି ବୋଲି କିନ୍ତୁ ଇଚ୍ଛା ହେଉନାହିଁ ।

ଟିକିଏ ଅଟକି ଯାଇ ସାମାନ୍ୟ ହସି କହିଲା– ଫେରିବା ସମୟରେ ଜଣକର ଛବି ସମ୍ବନ୍ଧରେ କେତେ ଯେ କଳ୍ପନା କରିଛି ବୋକାଙ୍କ ପରି ।

ସହସା ଗୋଟିଏ ଆକସ୍ମିକ ଭୂମିକମ୍ପର ପ୍ରବଳ ଆଲୋଡ଼ନରେ ବହୁ ଯତ୍ନରେ ଗଠିତ ଅଭିଜାତ ପ୍ରାସାଦ ବିବର୍ଣ୍ଣ ହୋଇଗଲା ନା କ'ଣ ? ନା ସ୍ୱର୍ଗଚ୍ୟୁତ ହେବା ଆଶଙ୍କାରେ ଏତେ ସମୟ ପରେ ହୋସ୍ ହେଲା ତାପସୀର । ସେଇଥିପାଇଁ ପାତାଳ ପ୍ରବେଶ ପରିବର୍ତ୍ତେ ସ୍ୱର୍ଗକୁ ଦୁଇ ହାତରେ ଜାବୁଡ଼ି ଧରିବାକୁ ଚାହେଁ ।

—କାହିଁକି ତେବେ ସେ କଳ୍ପନାର ଛବିକୁ ଛିଡ଼େଇ ପକେଇବି ? କାଢ଼ିନେଇ ଯାଇ ପାରୁନାହିଁ, ଜୋର କରି ନେଇ ପାରୁନାହିଁ ସବୁ ଦାୟିତ୍ୱ ମୋ ଉପରେ ଲଦିଦେଇ ନିଶ୍ଚିନ୍ତ ହୋଇ ଫେରିଯିବ ?

—ତାପସୀ ! ତାପସୀ !

ଅଜନ୍ତାର ଶିଳ୍ପଛନ୍ଦରେ ଗଠିତ ଅଧର ଯୁଗଳ ନଇଁ ଆସିଲା ଅର୍ଦ୍ଧଚନ୍ଦ୍ରରେ ଗଢ଼ା ଶୁଭ୍ର ଗୋଟିଏ ଲଲାଟ ପାଖକୁ ।

—ତାପସୀ, ଏ ସୌଭାଗ୍ୟକୁ ତୁମେ ବିଶ୍ୱାସ କରି ପାରିବ ତ ? ଏ ମୋର କଳ୍ପନା, ଛଳନା ନୁହେଁ ।

ଅଶ୍ରୁ ଛଳ ଛଳ ଆଖିରେ ହସି ଉଠିଲା ତାପସୀ । ହସି ହସି କହିଲା– ଉଃ ଏତେ ବେଶି ଜୋର କରିବାକୁ ତ ମୁଁ କେବେ କହିନାହିଁ । ଆଚ୍ଛା ହେଉ ଛାଡ଼ିଦେଲି, ଦେଖି ଚାହିଁଲ ମତେ । ଶୁଭଦୃଷ୍ଟି ସମୟରେ ତୁମକୁ ଦେଖିନାହିଁ ବୋଲି ଏତେ ସବୁ ବିପତ୍ତି । କ'ଣ ହେଲା ପୁଣି ? ମୁହଁ ଉପରକୁ ବର୍ଷଣ ମେଘ ଆସୁଛି କାହିଁକି ?

—ନା, ଭାବୁଛି ତୁମେ ଯଦି ତୁମେ ନ ହୋଇ କେବଳ ମାତ୍ର ବୁଲୁ ହୁଅନ୍ତ କ'ଣ ହୁଅନ୍ତା ?

କିରୀଟୀ ଗଭୀର କଣ୍ଠରେ କହିଲା ପ୍ରାୟ ଏଇ ରକମ ହୋଇଥା'ନ୍ତି ତାପସୀ । ହୁଏତ କେବଳ ମାତ୍ର 'ବୁଲୁ' ମୋଠାରୁ ଟିକିଏ କମ୍ ବେହିଆ ହୁଅନ୍ତା । କିନ୍ତୁ ମୋର କାପାସିଟି ତ ବାରମ୍ବାର ପ୍ରମାଣ ହୋଇଯାଇଛି, ଯାହା କିଛି ଗୌରବ ବୁଲୁର । ମୋ ଭାଗ୍ୟକୁ, ବିବାହ ଭୟରେ ବୋହୂ ପଳେଇଯାଇ ପ୍ରାଣ ବଞ୍ଚାଏ ! ସତରେ ତାପସୀ ସେହି ଉତ୍ସବଦିନ ରାତିରେ ହଠାତ୍ ତମେ ନିରୁଦ୍ଦିଷ୍ଟ ହୋଇଗଲ । ସେଦିନ ଯେ କି ଅଦ୍ଭୁତ ଅବସ୍ଥା ମୋର । ତେବେ ଭାବି ଭାବି ମନକୁ ବୁଝେଇ ଦେଲି– ମୋର ପ୍ରତିଦ୍ୱନ୍ଦ୍ୱୀପକ୍ଷ ନିଶ୍ଚିତ ଭାବେ ପ୍ରବଳ । ତୁମର ମାନସିକ ଦ୍ୱନ୍ଦ୍ୱର ଛବି ଆଖି ଏଡ଼େଇ ପାରିନି । ସେଦିନ ଭଗବାନଙ୍କୁ ଧନ୍ୟବାଦ ଦେଇଥିଲି ଯେ ତେବେ ଯାହାହେଉ ଛଦ୍ମବେଶରେ, ଆଡୁଆଳରେ ତୁମେ ଅଛ । କେବଳ ପ୍ରାର୍ଥୀପକ୍ଷରେ ପ୍ରତ୍ୟାଖ୍ୟାନ ବରଂ ସହନୀୟ କିନ୍ତୁ ଦାବିଦାର ପକ୍ଷେ ଘୋର ଅପମାନ । ହାୟ ହାୟ ସେତେବେଳେ କ'ଣ

ଜାଣିଥିଲି ମୋର ପ୍ରବଳ ପ୍ରତିଦ୍ୱନ୍ଦୀ ଆଉ କେହି ନୁହେଁ– ଦୁଗ୍ଧପୋଷ୍ୟ ବୁଲୁ ! ସେଦିନ ହଠାତ୍ କଲିକତା ଘରେ ପିଉସୀମା'ର ଚିଠି ପାଇବା ସଙ୍ଗେ ସଙ୍ଗେ ଅମିତାଭ ଯାଇ କହିଲା ଜେଜେମା ତମ ପାଇଁ ଗାଆଁକୁ ଯାଇଛନ୍ତି । କାହିଁକି କେଜାଣି ଆନନ୍ଦରେ ଅଧୀର ହୋଇଉଠିଲି । ମନେହେଲା ତୁମକୁ ଯେପରି ମୁଁ ପାଇଗଲି । ଶେଷରେ ଯେ ପୁଣି ଏମିତି ହେବ....

ତାପସୀ ମୃଦୁହସ ହସି କହିଲା– ଦୁର୍ଲଭବସ୍ତୁ ଏତେ ସହଜରେ ମିଳେନା ।

–ଠିକ୍ କହିଛ ତାପସୀ, ନିରାଟ ସତ୍ୟ । ସେଇଥିପାଇଁ ଏତେ କଷ୍ଟ ଏତେ ଆୟୋଜନର ଦରକାର ହେଲା । ଚାଲ ଦୁଇଜଣଯାକ ଯାଇ ତାଙ୍କୁ ପ୍ରଣାମ କରିବା, ଯିଏ ଅନେକ ବୁଦ୍ଧି ଖଟେଇ ଏଭଳି ନିଖୁଣ ଆୟୋଜନ ସମ୍ଭବ କରିଛନ୍ତି ।

ସଦ୍ୟଲବ୍ଧ ସୌଭାଗ୍ୟରେ ବିଭୋର ତାପସୀ ଚକିତ ହୋଇ ପ୍ରଶ୍ନକଲା କାହାକୁ ? କିଏ ସେ ?

–କାହିଁକି ଆମର ବଲ୍ଲଭଜୀ । ପକ୍କା ଖେଳୁଆଡ଼ ହୋଇ ହଠାତ୍ ଗୋଟାଏ ଭୁଲ 'ଚାଲ୍' ଦେଇ ଭାରି ବେକାୟଦାରେ ପଡ଼ି ଯାଇଛନ୍ତି ଭଦ୍ରଲୋକ । ସୁଧାରିବାକୁ ଗୋଟାଏ ଯୁଗ ଲାଗିଗଲା ତାଙ୍କୁ । କଥାର ମଝିରେ ହଠାତ୍ ସଚକିତ ବୁଲୁ କାହାକୁ ଦେଖି ଯେପରି ସାମାନ୍ୟ ଅପ୍ରତିଭ ହୋଇପଡ଼ିଲା । ଦଲାଣର ଧାଡ଼ି ଧାଡ଼ି ଖୁଲାଣର ଗୋଟାଏ ଖମ୍ବ ପାଖରେ ହେମପ୍ରଭା ଛିଡ଼ା ହୋଇଛନ୍ତି । କେତେବେଳୁ ଯେ ଆସିଛନ୍ତି ସେ ଟେର୍ ପାଇନାହିଁ ବୁଲୁ । ପାଇବାର କଥା ଅବଶ୍ୟ ନୁହେଁ ।

ବୁଲୁ ଟିକିଏ ସରେଇ ଛିଡ଼ା ହେଲା । ଆଉ ଲାଜୁଆ ମୁହଁରେ ଅପ୍ରତିଭ ହସ ଖେଳେଇ ମୁହଁ ରକ୍ଷା କଲା– କିନ୍ତୁ ତାପସୀ ?

ନାନୀର ସାମନାରେ ଧରା ପଡ଼ିଯିବାର ଲଜ୍ୟାରେ ଆରକ୍ତିମ ମୁହଁଟି ଲୁଚାଇବାପରି ସ୍ଥାନ ନ ପାଇ ନାନୀର କାନ୍ଧ ଉପରେ ଥୋଇଦେଲା । ମୁହଁ ଚାପି କହିଲା– ଆବେଗ ବିହ୍ବଳ ଅର୍ଥହୀନ ଅସ୍ପଷ୍ଟ ପଦିଏ କଥା– ନାନୀ, ନାନୀ ତୁମେ କାହିଁକି....

ହେମପ୍ରଭାଙ୍କର କ'ଣ କଥା କହିବାର ଅବସ୍ଥା ଅଛି ? କିମ୍ବା ହେମପ୍ରଭା କହିଦେଇଛନ୍ତି, ସେଇଥିପାଇଁ କଣ୍ଠ ପରିଷ୍କାର କରି ପ୍ରାୟ ହସ ହସ ମୁହଁରେ କହିଲେ– କ'ଣ ମୁଁ, କାହିଁକି ?

–ଧେତ୍ ଯାଆ ।

—ହଁ ଯିବି । ଏଇଥର ଯିବି । ଏତେ ଦିନରେ ଛୁଟିଦେଲେ ପ୍ରଭୁ ବିଶ୍ୱନାଥ । ଏଇଥର ବଡ଼ଶାନ୍ତି ନେଇ ତା' ରାଜ୍ୟକୁ ଫେରଯିବି । ମୁହଁ ଉଠା ତାପସୀ- ଆ ବୁଲୁ ମୋ ପାଖକୁ ଆ ! ଆଖିପୂର୍ଣ୍ଣକରି ତୁମ ଦୁଇଜଣଙ୍କୁ ଥରେ ଦେଖେ । ବୃଥା ଅଭିମାନରେ ଏତେଦିନ ହେଲା ତା' ନାଆଁରେ କେତେ କଳଙ୍କ ଦେଇ ଆସିଛି, ଆଜି ବୁଝିଲି ଏଇଟାହିଁ ଦରକାର ଥିଲା । ଯେଉଁ ବସ୍ତୁ ସହଜରେ ମିଳେ ତା'ର ମୂଲ୍ୟ ବୁଝାଯାଏନା । ଢଣାପଡ଼େ ନାହିଁ ଖାଣ୍ଟି ଆଉ ନକଲି । କି ଜ୍ୱଳା ! ଏ ଝିଅଟା ମୁହଁ ଉଠାଉ ନାହିଁ କାହିଁକି ? ମୋ କାନ୍ଧ ବଥା ହୋଇଗଲା ଯେ । ଠାକୁର ମନ୍ଦିରରେ ବସି ଭାବିଲି ନାତୁଣୀ ମୋର ଗଲା କୁଆଡ଼େ ? କାଠର ଘୋଡ଼ା ପକ୍ଷୀରାଜ ହୋଇ ଉଡ଼େଇ ନେଇଗଲା ନା କ'ଣ ? ଅଧୈର୍ଯ୍ୟ ହୋଇ ଉଠି ଆସିଲି । ବର୍ତ୍ତମାନ ଦି'ଜଣଯାକ ମନେ ମନେ ଖୁସି ହୋଇ ଯେତେ ଗାଳିଦେବ ଦିଅ ବୁଢ଼ୀକୁ ।

